ସ୍ମୃତିରେ ସ୍ମୃତିରେ ଶିବରାମ

ସଂପାଦନା
ଚିତ୍ରାଙ୍ଗଦା ପାତ୍ର
**ରମାକାନ୍ତ ସାମନ୍ତରାୟ**

ପ୍ରଥମ ସଂସ୍କରଣ-୨୦୦୬
ପ୍ରକାଶକ : ସରସ୍ୱତୀ,ଗୌରୀନଗର,ଭୁବନେଶ୍ୱର-୨
ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ
ଟାଇପ୍ ଓ ମୁଦ୍ରଣ : ସରସ୍ୱତୀ

Edited by
Chitrangada Patro
Ramakanta Samantaray

1st Edition : 2006
Published by Saraswati,Gouri Nagar,Bhubaneswar
DTP & Printed at : Saraswati
Cover Design : Ramakanta Samantray

## ଶିବରାମର ସାଇକେଲ୍

ସୌରୀନ୍ଦ୍ର ବାରିକ

ମୁଁ ସିନା ସାଇକେଲ୍‌କୁ ନେଇ
କବିତା ଲେଖୁଥିଲି । ସେ କିଂତୁ
ଶେଷ ପର୍ଯ୍ୟନ୍ତ ସାଇକେଲ୍ ଚଢ଼ି
ସାରା କ୍ୟାପିଟାଲ୍ ପଇାସି ଯାଉଥିଲା ।
ଗପର ନେଉଳିଆ ଭାଇପରି
ଠିକ୍ ବେଳାରେ, ଠିକ୍ ଜାଗାରେ ପହଞ୍ଚି
ଯାଉଥିଲା । ଯେଉଁଠି ସାହିତ୍ୟ, କଳା
ସେଇଠି ସେ ଆଉ ତା' ସାଇକେଲ୍ ।

ଆମେ ସିନା ପ୍ରକୃତିକୁ ନେଇ
କବିତା ଲେଖୁ, ସେ କିଂତୁ ପ୍ରକୃତିରେ
ବଞ୍ଚୁଥିଲା । ହଜିଯାଉଥିବା ପ୍ରକୃତି ସହ
ଆମ ସମ୍ପର୍କ ସ୍ଥାପୁଥିଲା । ଗଛ ଚାରା ଧରି
କଂକ୍ରିଟ୍ ଜଙ୍ଗଲ ଭିତରେ ସବୁଜ ସ୍ୱପ୍ନ ବୁଣୁଥିଲା ।
ସେ ଥିଲା ଯେମିତି ସାଇକେଲ୍ ଚଢ଼ାଳି
ପ୍ରକୃତି ପୁରୋହିତ । ତା' ସାଇକେଲ୍‌ର କେଁ କଟର
ପ୍ରକୃତିର ସବୁଜ ନିରବତା ।

ଥଟ୍ଟାରେ ତାକୁ ଜଙ୍ଗଲି କହୁଥିଲି ।
ତାକୁ ମାଲୁମ ନଥିଲା ସହରୀ କାଇଦା
ଜଣାନଥିଲା ବି ମୁଖା ପିନ୍ଧା, ମାପିଚୁପି
କଥା କହିବା । ବେଳ ଅବେଳ ନମାନି, ତଥାକଥିତ
ଏପଏଣ୍ଟମେଣ୍ଟ୍ ନନେଇ ସେ ଘରେ ପହଞ୍ଚେ
ନିରଳସ ଆନ୍ତରିକତାରେ ମନ ଭରି ଦିଏ ।
କ୍ୟାପିଟାଲ୍‌ରେ ସେ ଅଣକ୍ୟାପିଟାଲ୍‌ଟେ
ନହେଲେ ଫାଇଲ୍ ସମ୍ପର୍କ, ଫାଇଲ୍ ବାଗ
ପୁଣି ଫାଇଲ୍ ମାୟାକୁ ଶିଖି ନଥା'ନ୍ତା !

ସେ କିଛି ଶିଖିଲାନି ।
ଏଠି ଯେ ସମ୍ପର୍କର ଭିନେ ବ୍ୟାକରଣ ।
ସେ କିନ୍ତୁ ଅରଣ୍ୟ ପରି ଆଦିମ ସମ୍ପର୍କର ଲାବଣ୍ୟକୁ
ବାଣ୍ଟି ଯାଉଥିଲା । ସେ ଥିଲା ସାଇକେଲ୍ ଚଢ଼ାଳି
ଅନ୍ତରଙ୍ଗତା, ବିରଳ ବନ୍ଧୁତ୍ୱର ରହସ୍ୟ ।
ସାହିତ୍ୟର ମଣିଷ ନୁହେଁ ; ମଣିଷରୂପୀ ସାହିତ୍ୟ ସେ ।
ଦାଢ଼ି ପାଚି ଆସିଥିଲା ମାତ୍ର ଶିଶୁର ଆଖି ପରି
ଚକ୍ ଚକ୍ ଡାକୁଥିଲା ତା' ଆଖି ।

ଖବର ନଦେଇ, ବେଳ ଅବେଳ ନମାନି
ଘରକୁ ବନ୍ଧୁ ଆସେ ଅତିଥି ଆସେ ।
ଭରିଦିଏ ନିକଟତାର ଆନନ୍ଦ । କିନ୍ତୁ କିଛି
ନକହି ବନ୍ଧୁ ଚାଲିଗଲେ କେମିତି ଲାଗିବ କହ ତ ?
ମନରେ ଖାଲି ହଜିଯିବ ସିନା/ ଅପହଞ୍ଚ ଦୂରର ଶୂନ୍ୟତା ।

ଭେଟ ହେଲେ ତାକୁ ଖୁବ୍ ଗାଳି ଦେବି ।
କହିବି ଏମିତି କେବେ କେହି ଯାଏ ? କେତେ
ସାହିତ୍ୟ ସଭା ହେବାର ଅଛି ଅଥଚ ଶିବରାମ ନାହିଁ ।
ସଭା ସଭା ପରି ଲାଗିବ ତ ! ତା ନଥିବାରେ !

କହିବି ସବୁଦିନ ରହିଗଲୁ ତୁ
ଶିବରାମ ହେଇ । ସାଇକେଲି ଦମ୍ଭ
ସାଇକେଲି ଉଷ୍ଣତା, ସେଇ ବିରଳ
ସାଇକେଲି ମଣିଷଟାଏ ହୋଇ ।

ଦେଖା ହେଲେ ତାକୁ ଖୁବ୍ ଗାଳିଦେବି ।

ପୁନାମା ଗେଟ୍ ପାଖ
ପୁରୁଣା ଭୁବନେଶ୍ୱର

# ଶିବରାମ

ହରିହର ମିଶ୍ର

ଯେତେବେଳେ କିଛି କହି ହୁଏ ନାହିଁ
ସେତେବେଳେ କବିତାରେ କହିହୁଏ,
ଯେତେବେଳେ କେହି ନାହିଁ ବୋଲି ଭାବୁଥାଏ ସେ
ଚାରିପାଖେ ଥିଲା ଭଳି ମନେହୁଏ
କିଏ ନା କିଏ !

କେଉଁ ନିଛାଟିଆ ତେନ୍ତୁଳି ଗଛ ତଳେ
ଅଳ୍ପ ଅଳ୍ପ ଦାଢ଼ୀ ଥିବା ଯୁବକଟିଏ
ବସି ବସି ଭାବୁଥାଏ ଯେ, ସେ ତା'ଗଳାରେ
ରସି ଲଗେଇ ଝୁଲିପଡ଼ିବ ସେଥିରେ ।

ନଚେତ୍ କୋରାପୁଟ ସୀମା ଡେଇଁ ଚାଲିଯିବ
ଆଂଧ୍ର ସୀମାକୁ, ନକ୍ସଲମାନଙ୍କୁ ଶୁଣାଇବ
ତା' ଅସହାୟତାର କାହାଣୀ । ବୁଝିବେ ତ କେହି ।
ଯିଏ ଦୁନିଆ ବୁଝୁଛି ସେ ପଛେ ନ ବୁଝିଲେ ନାହିଁ ।

ଏମିତି ଭାବୁ ଭାବୁ କିଏ ଜଣେ ଜିପ୍ ରଖି
ତାକୁ ପଛରେ ବସିବାକୁ କହିଲା
ଓ ସେ ତାଂକୁ ଦେଖି ଭୋ ଭୋ କାଂଦି ଉଠିଲା ।
ସେ ତାକୁ ଶିଖାଇଲେ କେହି ଅଛି ବୋଲି ।

ଦୁନିଆରେ ଆପଣାର କରିନେବାକୁ ନିଜ
ପରିବାରରେ, ମିଶେଇଦେବାକୁ ଆସିବେ
କେହି ନା କେହି, ଆତ୍ମୀୟତାର ଦୀକ୍ଷା ଦେବାପାଇଁ ।
ଯେଉଁ ମଂତ୍ରର ଭାଷା ସେ ବାଂଟିଦେବ -
କବିତାରେ ନୁହେଁ ଜୀବନଚର୍ଯାରେ ।

ଏତିକି ବିଶ୍ୱାସକୁ ନେଇ ସେ ଗଢ଼ିଦେଲା
ସାମ୍ୟ, ମୈତ୍ରୀ ଏବଂ ମୁକ୍ତି ଚେତନାର ଆଶ୍ରମଟିଏ ।
ଗୋଟିକ ପରେ ଗୋଟିଏ, କେବେ ଗୁଣପୁରରେ
ତ କେବେ ମାଲ୍‌କାନଗିରିରେ କେବେ ବ୍ରହ୍ମପୁରରେ
ତ କେବେ ପୁରୀ ଅବା ଭୁବନେଶ୍ୱରରେ ।

ସେ ସଂଗ୍ରହ କଲା ତାର ଝୁଲାମୁଣିରେ
ଓଡ଼ିଆ ଐତିହ୍ୟକୁ ବଂଚିବାର ସୂକ୍ତି କେତେ,
କେତେ ଭାଷା ଚୁପ୍‌ଚାପ୍ ବୁଲିବୁଲି
ଘର ଘର ଦୁଆର ଦୁଆର ।
ସବୁରି ସୃଜନକଳା ପ୍ରତି ତା'ର ଯତ୍ନ ଓ ଆଦର
ଶିଖାଇଲା ନିରବ ସାଧନାର ଅର୍ଥ କେତେ
ଏବଂ କେତେ ସିଏ ମୌନ ମୁଖର !

[ଯିଏ କାର୍ତ୍ତିକ ମାସ ହବିଷରେ ତା' ମାଆଙ୍କ ପାଇଁ ବିଧବା ଶାଢ଼ୀଟିଏ ଆଣିଲେ ମୋ ବୋଉ ପାଇଁ ଆଉ ଗୋଟିଏ ସେମିତି କିଣି ଦେଉଥାଏ, ସେହି ଶିବରାମର ସ୍ମୃତିରେ]

ମାର୍କଣ୍ଡେଶ୍ୱର ସାହି

(ଷଣ୍ଢଭାଗ)ପୁରୀ-୭୫୨୦୦୧

## ସେହି ଦାଢ଼ି ସାଲୁ ସାଲୁ ମୁହଁ

ଡକ୍ଟର ପ୍ରସନ୍ନ କୁମାର ମିଶ୍ର

ସେଇ ଦାଢ଼ି ସାଲୁ ସାଲୁ ମୁହଁଟା
ଲୁଚିଗଲା । ଦାଉ ଦାଉ ଜଳି ଏମିତି
ପାଉଁଶ ହେଇଗଲା ଯେ କୋଇଲାର
ଚିହ୍ନବର୍ଣ୍ଣ ରହିଲାନି ।
ଆଖିରେ ଆଖିଏ ପୂରା ଦମ୍ ହସ
ଛାତିରେ ଛାତିଏ ପୂରା ଦମ୍ ପ୍ରେମ
ଧରି ଯିଏ ଗଞ୍ଜାମରୁ ବାଲେଶ୍ୱର
କୋରାପୁଟରୁ କେଉଁଝର ଯାଏଁ
ବାଉଳା ବଉଦ ଭଳି ବର୍ଷୁଥିଲା
ସୁବିଶାଳ କଳିଙ୍ଗକୁ ଭାବୁଥିଲା ନିଜ ଗାଁ
ସେ ଯେ ବିନା ସମ୍ବର୍ଦ୍ଧନାରେ
ବିଦାୟ ନେଇଯିବ ଅଚାନକ
ମୁଁ ଭାବି ନଥିଲି କେବେ ।

କବି ଶିବରାମ !
କଳ୍ପନାର କାରିଗର
ତୁମେ ସବୁକଥାରେ ପାରଙ୍ଗମ
ବଚନରେ ଦାରିଦ୍ର୍ୟ ନଥିଲା
ତୁମ ଖଦଡ଼ଭଙ୍କା ଛାତି ତଳେ
ସବୁଦିନ ସାହିତ୍ୟର ଉତ୍ସବ ଚାଲିଥିଲା ।
ମନେଅଛି କହିଥିଲ ଥରେ
ମୋତେ ଚିଡ଼େଇବାକୁ ଏକାନ୍ତରେ
ଯେ ତୁମେ ପଡ଼ିଯାଇଚ ମନିକାର ପ୍ରେମରେ ।
କହିଥିଲି - ବନ୍ଧୁ ! ପଡ଼ିଚ ତ ପଡ଼ିଚ,
ଖରାପ କ'ଣ,
ବରଂ ମନିକାକୁ ଧନ୍ୟ କରିଚ,
କେବଳ ସତର୍କ ରହିବ
ଯେମିତିକି ଚପଳ ଆଲିଙ୍ଗନର ଦୃଶ୍ୟ
ଈର୍ଷୁକ ମନିକାର ପ୍ରିୟର ଆଖିରେ
କେବେ ନ ପଡ଼େ, କେବେ ନ ପଡ଼େ ।
ତୁମପରି ରସିକ୍ ସହିତ ଦୋସ୍ତି ଲାଗି
ମନିକାର ପ୍ରିୟ କେତେ ଆକୁଳ ତା' ତୁମେ
ଜାଣି ନଥିଲ । କାରଣ ବିଶ୍ୱାସ ଥିଲା
ତୁମେ କେବେ ବିଭସ ବାସନାର
ସୌଦାଗରଙ୍କ ପରି କୁତ୍ସିତ ପ୍ରସ୍ତାବ
ଆଣି ଥୋଇବନି ମନିକା ସାମ୍ନାରେ ।
ଶିବରାମ ! ତୁମେ ଗୋଟା ବସୁନ୍ଧରାର ପ୍ରିୟ
ଏଠି ସେଠି ବିକ୍ଷିପ୍ତ ବ୍ରହ୍ମମାନଙ୍କୁ
ଚିହ୍ନିପାରିବା ଭଳି ତୁମେ ଜଣେ ବ୍ରାହ୍ମଣ ।
ତୁମେ କେବେ ବି ଜଣାଇ ନାହଁ ନିଜର ଦୁଃଖ,
କେବେ ବି କହି ନଥିଲ ଛାତିରେ କେଉଁଠି
ତୁମେ ଅନୁଭବ କରୁଥିଲ ପୀଡ଼ା ।
ମୃତ୍ୟୁ କପଟ କଲା, ଅଚାନକ ଗ୍ରେପ୍‌ତାର କଲା ।
ସୂଚନା ମିଳିଥିଲେ ଆଗରୁ
ମୋର ବିଶ୍ୱାସ ତୁମେ ହସରେ ଉଡ଼େଇ ଦେଇଥା'ନ୍ତ ମୃତ୍ୟୁକୁ
ଭାଇ ଶିବରାମ ! ଓଡ଼ିଆ ସାହିତ୍ୟରେ
ତୁମେ ପୃଷ୍ଠାଏ ପୌରୁଷ-ଦୀପ୍ତ କାବ୍ୟଲେଖ
ପରି ଶାଶ୍ୱତ ।
ତୁମ ଉଦ୍ଦେଶ୍ୟରେ ମୋର ପ୍ରଣାମ ॥

ସି.ଡ଼ି.ଏ., ବିଡ଼ାନାସୀ,କଟକ-୧୪

# ଗୁଣପୁରର ଶିବରାମ

ଦିନନାଥ ପାଠୀ

ବର୍ଷେ ହେଲାଣି
ଗୁଣପୁର ଯାଇଛି ଯେ, ଆଉ ଫେରୁନି
ଶିବରାମ !
ଏଥର କ'ଣ ହେଇଛି
ତା'ର କେଜାଣି ?
କ'ଣ ଘାରିଛି ତାକୁ
ଜଙ୍ଗଲର ନିଶା ନା ଉପାନ୍ତ ସାହିତ୍ୟଚର୍ଚ୍ଚା ?

ଯାଇ ଯାଇ
କୁଆଡ଼େ ଯିବ ବା ସେ
ପାଠାଗାର ସଜାଉଥିବ,
ଅବା ସଭାଟିଏ ଡାକିଥିବ ଯେ
ଅନେଇ ବସିଥିବ ଅତିଥି ଆସିବେ ।
ବଡ଼ ଗାଦିକା ପାଇଟି ସବୁ
ନା ସରୁଛି ନା ଛାଡ଼ି ହେଉଛି ଏତା ।
ଏଇମିତି ଷାଠିଏ ବର୍ଷର ଜୀବନ
ଆଜିକାଲିର କ'ଣ କଥା ହେଇଛି !

ଏଠି କିନ୍ତୁ ତା' ସାଇକେଲ
ସାଇତା ବହିଥାକ, ଗ୍ରନ୍ଥାବଳୀ
ସକାଳର ପାଇଟା ଚାଦର
ଏଇଠି ତ ସଭିଏଁ ତା'ର
ବାଲ୍ୟ ସ୍ମୃତି ବଂଚିବାର ସବୁ ମୋହ
ସବୁଠି ଗନ୍ଧ ଭଳି ଭୁରୁ ଭୁରୁ ସ୍ୱପ୍ନ ।

ଖରାରେ ନାଲି ମରିଚର ଡାଟ,
ଫୁଲବଡ଼ି, କନାବନ୍ଧା ଅଡ଼ଙ୍ଗା ବୋତଲ
ଶିବଲକ୍ଷ୍ମୀ, ଶୋଭନା, ରମାକାନ୍ତ
ଗୁଗୁଲୁ ଆଉ ମୁଁ
ତା' ହାତପାଳନ୍ତା ଗଛ, ବୃକ୍ଷ ।
ପଣସ, କରବୀର, ଭୁରୁସୁଙ୍ଗା, ନରକୋଳି, ବେଲ, ମନିପ୍ଲାଣ୍ଟ
ଫୁଲକୁଣ୍ଡ, ଯେତେକ ଦରବ

ସେମିତି ଆଗଭଳି ଜଳ ଜଳ
ଡହଳ ବିକଳ ।

ଗୁଣପୁର,
କୁଆଡ଼େ କେଜାଣି ?
ଏଠି, ନା ଏ ପୃଥିବୀ ବାହାରେ
ଅନ୍ୟ କେଉଁ ଦେଶ
ଶୁଣିଛି ସେଠି ସବୁ ଶୂନ୍ୟ
ମାଟି, ପାହାଡ଼, ଆକାଶ
ଚୁପ୍‌ଚାପ୍ ଶୀତଳ ଝରଣା
ଦିନ ନାହିଁ ରାତି ନାହିଁ
ମାଡିଥାଏ ସବୁଜ, ନତୁବା ଅନ୍ଧାର ।

ସେଠି କାଳେ ଅସଂଖ୍ୟ ବେଙ୍କୁଣୀ
ହାତରେ ମଣିଷ ଖପୁରୀ
ଭର୍ତ୍ତିଥାଏ ନୀଳ ରକ୍ତ
ଅଶରୀରୀ ବୁଲୁଥାନ୍ତି ବନସ୍ତ ପାହାଡ଼
ଦିନରେ ମଣିଷତ
ରାତିରେ ପିଶାଚ
ଫରୁଆରେ କାଳିଆ ଭଅଁର
ଚୋଟେ ଦେଲେ ଉଡ଼ିଯିବ ପ୍ରାଣ !
ଗୁଣପୁର, ଏକ ଅଦ୍ଭୁତ ଅପର ଦେଶ ।

ହୁଏତ ପ୍ରେତକୁ ମଣିଷ ମଣି
ସେ ଗପୁଥିବ ଠିଆ ଠିଆ ଓଡ଼ିଆ ସାହିତ୍ୟ ।
ଫକୀର ମୋହନଠାରୁ
ସୁରେନ୍ଦ୍ର ମହାନ୍ତି ଯାଏଁ
ମଂଜୁଷାର ଯେତେକ ନିର୍ଯ୍ୟାସ ।
ପ୍ରେତ ତାକୁ ଆପଣେଇ ଥିବ
ଆଉ ସିଏ ଶ୍ରୋତାଟିଏ ପାଇସାରି
ସାଜିଥିବ ଭୂତ, ଭୂତଙ୍କ ମେଳରେ ।
ପଛଦିନ ଅନ୍ତରଙ୍ଗ ସ୍ମୃତି
ଶିବରାମ ।
ସଂପର୍କର ଚିର ସେତୁ ଶିବରାମ ।
ସିଏ କିନ୍ତୁ ବଂଶଧାରା ବନ୍ୟା ଭଳି
ବହି ଯାଇଥିବ ମହାସମୁଦ୍ରକୁ ।

ଭୀମଟାଙ୍ଗୀ, ପୁରୁଣା ଭୁବନେଶ୍ୱର

# ବଜ୍ରପାତ ପରେ

ଚନ୍ଦ୍ରଶେଖର ରଥ

ଉଡ଼ାଣ ଭରିବାବେଳେ
ଖସିପଡ଼େ ପକ୍ଷୀ,
ଆକାଶରୁ ଅଧେ ଖସିପଡ଼େ
ଅକସ୍ମାତ୍ କେଉଁ ବିଧାନରେ ?

କିଏ ନ ଜାଣିଛି ଭଲା
ଆସିବା ଓ ଯିବା ଏଠି
ନୂଆ କଥା ନୁହେଁ !

ତଥାପି ତ' ଆକାଶର
ଏ ପାରିରୁ ସେ ପାରିକୁ ଯିବାପାଇଁ
ବିଧି ଅଛି ସୂର୍ଯ୍ୟକୁ ଚନ୍ଦ୍ରକୁ,
ବିଧି ଅଛି ମୁକୁଳୁଥିବା ଫୁଲକୁ
ଫୁଟି ସାରି ମଉଳିବା ପାଇଁ !
ମଝି ଉଡ଼ାଣରେ କେବେ
ବାତୁଳି ମାଡ଼ରେ ଯଦି ଖସିପଡ଼େ ପକ୍ଷୀ
ଖୋଜାପଡ଼େ ନିଷାଦକୁ,
ସେଇ ସିନା ବଧି ପାରେ
କାମ ମୋହିତ ପକ୍ଷୀକୁ
ଅକାତରେ ବଜ୍ରାଘାତ କରି ।
ସେଇ ସିନା ଭାଙ୍ଗିପାରେ,
ଲଘିପାରେ ସକଳ ବିଧାନ ।

ଶିବରାମ ଚାଲିଗଲା
ଅକାଳରେ ଅକସ୍ମାତ୍ !
ସବୁଡାଳେ ସବୁପକ୍ଷୀ
ହଠାତ୍ ନିରବି ଗଲେ,
ପତ୍ର ବି ହଲିଲା ନାହିଁ
ନିସ୍ତବ୍ଧ ଅଶ୍ୱତ୍ଥ ଡାଳରେ
ବଜ୍ରପାତ ପରେ ସବୁ
ଆଖି ବୁଜି ଦେଲେ
ପଚାରିଲେ ନାହିଁ କେବେ କେମିତି କାହିଁକି

ଅସହାୟେ ଚାହିଁ ରହିଥିଲେ
କିଏ ଗଲା, କିଏ ସେ ରହିଲା ।
ଭାଙ୍ଗିଗଲା ସବୁ ଟାଣପଣ
ଦୋହଲିଗଲା ଭରସା
ଏଠୁ ସେଠୁ ସବୁରି ସବୁଠୁ !

ଏନ୍/୧,ଏ-୩୨,
ନୟାପଲ୍ଲୀ,ଭୁବନେଶ୍ୱର

## ସେ ଥିଲେ ଅଛନ୍ତି ରହିବେ

ଅମରେଶ ପଟ୍ଟନାୟକ

'ଟାଇମ୍ସ୍ ଇଣ୍ଡିଆ'ରୁ
ସକାଳୁ
ବାରମ୍ବାର ପଢ଼ି
ଅବିଶ୍ୱାସକୁ ବିଶ୍ୱାସ ପରିସରକୁ..
ଲାଗିଲା
ବହୁତ ମୁହୂର୍ତ୍ତ..
ଲାଗୁଚି
ଫାଙ୍କାଫାଙ୍କା..
ହତଚକିତ.. !

ହାଃ, ଆମ ଓଡ଼ିଆ ଭାଷା ସାହିତ୍ୟ ସଂସ୍କୃତି
ଅତୀତ ବର୍ତ୍ତମାନ ଭବିଷ୍ୟତ ହିଁ ତ
ଚିନ୍ତାରେ ଚେତନାରେ ତାଙ୍କର .... !
ଆଃ ! କେଡ଼େ ଆପଣାର !

ଶବ୍ଦରେ ଆମେ କିଏ କାହାର
ଅଭାବବୋଧ ନା ଦୁଃଖ....

ସେ ଥିଲେ ଅଛନ୍ତି ରହିବେ
ଯେପରି
ଅବ୍ୟଭାନି..

ତଥାପି
ଗଭୀର ମର୍ମବେଦନା..
ସମବେଦନା....

ଅନନ୍ତାଲୋକ
ଶଙ୍କରପୁର,କଟକ-୭୫୩୦୧୨

# ସାର୍ ଅଛନ୍ତି

ଦେବେନ୍ଦ୍ର କୁମାର ବାଉରୀ

ମୋ ଆଗରେ
ପଡ଼ିଥିବା ପଥ କହୁଛି
ସାର୍ ଅଛନ୍ତି ପଥଟିଏ ହେଇ

ମୋ ବହି ଆଲମାରି କହୁଛି
ସାର୍ ଅଛନ୍ତି
ମୋ ବହିଥାକ ଭିତରେ
ବହିଟିଏ ହେଇ

ମୋ ଅଗଣାର ବଗିଚାରେ
ପ୍ରକୃତି ପରି
ଖିଲିଖିଲି ହସି ଉଠୁଛନ୍ତି ସାର୍

ସାର୍ ଅଛନ୍ତି
ମୋ ଆଦ୍ୟ ସ୍ଫୁରଣର
ଓଁ କାର ହେଇ
ମୋତେ ଦେଇଥିବା ଚିଠି ଭିତରେ
ଚିଠିଟିଏ ହେଇ

ସାର୍ ଅଛନ୍ତି
ମୋ ସ୍ମୃତିରେ
ମୋତେ ଦେଇଥିବା
ତାଙ୍କ ଭଲ ପାଇବାର
ଛୋଟ ଛୋଟ ନମୁନା ଭିତରେ

ସାର୍ ଅଛନ୍ତି
ମୋ ସ୍ୱପ୍ନରେ
ମୋ ଘର କରଣାରେ
ସାହିତ୍ୟ ଓ ସଂସ୍କୃତି ଭିତରେ

ବନ୍ଧୁ ଶିଖିବାର
କଳା ଓ କାରିଗରୀରେ

ମେଘ ଭାଙ୍ଗିଗଲେ କ'ଣ ହେବ
ପଥର ତରଳିଗଲେ କ'ଣ ହେବ
ସାର୍ ସବୁବେଳେ ସାର୍
ହୋଇକି ଥିବେ
ମୋ ଭକ୍ତି ଓ ଭଲପାଇବାର
ମନ୍ଦିରରେ ଠାକୁର ପରି
ପୂଜା ପାଉଥିବେ ।

ଭାରତୀୟ ଷ୍ଟେଟ୍ ବ୍ୟାଙ୍କ,ବାଲୁଗାଁ

## ତମ ସ୍ନେହ ଝରରୁ ଯେ ପିଇଚି ପାଣି ଗିଲାସେ

ଶ୍ରୀ ଭଗବତ୍ ପ୍ରସାଦ ରଥ

ତମକୁ କିଏ ଝାମ୍ପିନେଲା, ଶିବରାମ
ଓଡ଼ିଆ ସାହିତ୍ୟର ମଶାଲ ତଳେ ପଡ଼ିଚି
ହୀନିମାନ ହୋଇ
ତମକୁ ସମୟ ମିଳିଲାନି
ମଶାଲଟା କାହାକୁ ଧରାଇଦବାକୁ

ତମର ସପନମାନେ ଆକାଶରେ ଉଡୁଚନ୍ତି
ଛିଣ୍ଡା ଘୁଡ଼ି ପରି
କ୍ଳାନ୍ତି ତମକୁ ଡରୁଥିଲା
ତମ କଲମ ଖୋଜିବୁଲୁଥିଲା
ଠିକ୍ ତମ ଆତ୍ମଅଖୋଜା ଆଖି ଭଳି
କୋଉଠି ମଣି ମୁକ୍ତା ବହିମାନଙ୍କରେ ଲୁଚି ରହିଚି

ତମ ଚାରିପଟେ ଅନୁଷ୍ଠାନମାନେ କ୍ୟୁରେ ଥିଲେ
ଏବେ ସେମାନେ ବିସ୍ଥାପିତ

ତମ ସ୍ନେହ ଝରରୁ ଯେ ପିଇଚି

ପାଣି ଗିଳାସେ
ସେ କେମିତି ଭୁଲିପାରିବ ତମକୁ
ବାଟଘାଟରେ ଦେଖା ହୋଇଗଲେ
କିଏ ଆମକୁ କହିବ ବୁକୁଭରା କଥା
ଯୋଉ କଥା ଭ୍ରାତୃତ୍ୱର ଭେରୀ ବଜାଏ
ଏବେ ପାଣିଚିଆ ମନେହୁଏ ସକାଳ ସବୁ
ସଂଜଯାକ ରଙ୍ଗହରା
ପକ୍ଷୀମାନେ ଗୀତ ଗାଉ ନାହାନ୍ତି
ତମେ ପୁଣି ଥରେ ଯଦି ଆସିପାରନ୍ତ
ସାନ୍ଦୀପନିଙ୍କ ପୁଅମାନଙ୍କ ପରି ।

ରାୟଗଡ଼ା

## ଶିବରାମ ବିଚାର ମଞ୍ଜୁଷା

ସୁରେଶ ବଳବନ୍ତରାୟ

ହୃଦୟ !
ଏକ ଚଉମୁହାଣୀ ରାସ୍ତାରେ
ବାଗୁଡ଼ି ଖେଳୁଥିବା ପିଲାମାନଙ୍କର
କା' ପରି ।
ଖେଳର ହାର୍ ଜିତ୍‌ରେ କା'ର କିଛି
ଯାଏ ଆସେ ନାହିଁ
ଯଦିଓ ଚୁକ୍ତି ହୋଇଥାଏ
ଏହି ଖେଳ ଚାଲିବ ସୂର୍ଯ୍ୟ ବୁଡିବା ଯାଏଁ ।
କିନ୍ତୁ ବେଳେ ବେଳେ
ସାରିବାକୁ ହୁଏ ଖେଳ
ସଂଜ ପୂର୍ବରୁ ।।
ସେଇଠି ବାଟୋଇଟି ଆଉ
ମଠ ମଠ ନୁହଁ ।
ତାକୁ ଆଉ କହିବାକୁ ହୋଇନାହିଁ
ବାଟୋଇରେ ବେଗେ ସଉଦା ସାର ।
ସେ ବାଟବଣା ବାଟୋଇ ନୁହଁ...
କିନ୍ତୁ ହାଟ ସରିବାର ବହୁତ ଆଗରୁ
ସିଏ ସାରିଦେଇଛି ତା'ର କିଣାବିକା ।

ଶେଷ କରିଚି ତା'ର ହାଟବାହୁଡ଼ା ।
ଆମେ ଯେତେ ଯିଏ ଖୋଜିଲେ ବି
ସିଏ ଆଉ କୋଉ ଅଛିଯେ'
ଧାଇଁ ଆସିବ ଆଖିରେ ଆଖିଏ
ସ୍ନେହ ନେଇ ।

କାନ୍ଧରେ ପଡ଼ିଥିବ ଝୁଲାମୁଣି
ମୁହଁରେ ଦାଢ଼ି
ସୌରୀନ୍ଦ୍ରଙ୍କ ସାଇକେଲ୍ କବିତା ପରି
ଗଡ଼ି ଯାଉଥିବ ସାଇକେଲ
ତେବେବି ଝୁଲାମୁଣିରେ ଭର୍ତ୍ତି ସ୍ନେହ
ମୁହଁରେ ଉଚ୍ଚାରିତ
ଆତ୍ମୀୟ ସଂଳାପ ।
ସବୁ ଶବ୍ଦ ଏବେ
ପୁଣି ଫୁଲପରି ତୋଳା ଯାଉଚି
ଇଥର ତରଙ୍ଗ ବଗିଚାରୁ
ଏବେ ଲେଖା ଯାଉଚି
ଶିବରାମ ବିଚାର ମଞ୍ଜୁଷା...

୦୨, ଫ୍ଲାଟସ୍, ଶ୍ରାବଣୀ ଏନ୍‌କ୍ଲେଭ
(ସୁନ୍ଦରପଦା), ଭୁବନେଶ୍ୱର-୨

## ସ୍ୱୟଂପୂର୍ଣ୍ଣ ଶିବରାମ

ଶ୍ରୀମତୀ ଉର୍ମିଳା ମହାପାତ୍ର

ହେ ଶିବରାମ !
ତୁମକୁ ଝୁରୁଛି ଆଜି ଏଇ ଗୁଣପୁର ମାଟି
ପ୍ରତିଧୂଳି କଣାରେ ତୁମ ରଂଗ ଯାଇଛି ଛାଟି ।
ଅଳସ ପବନ ବୋହି ଆଣେ ତୁମରି ମହକ
କି କଲ କିମିଆଁ ଅବା ଭରିଥିଲ କୁହୁକ ।
ଗୁଣୁପୁର ପରି ଏକ ଉପାନ୍ତ ଅଂଚଳେ
ସାହିତ୍ୟ ରୂପକ ବୀଜ ବୁଣିଥିଲ ଚଂଚଳେ ।
ଆନ୍ଧ୍ରସୀମାର ପାଚେରୀ ସେ ପାଖୁ ଡେଇଁ
ଚାପି ହୋଇଯାଏ ଓଡ଼ିଆ ଭାଷା, କାନେ ଶୁଭେ କଇଁ କଇଁ ।

ଭାଷା କମଳିନୀ ଫୁଟି ଉଠିଥିଲା ତୁମରି ପରଶ ପାଇ
ବଂଶଧାରା ସାହିତ୍ୟ ସମାଜ ରହିଅଛି ସାକ୍ଷୀ ହୋଇ ।

ତୁମରି ପ୍ରେରଣା ତୁମ ଉପଦେଶେ ଜାଗିଲା ନବଚେତନା
ସରଜିଲା କେତେ ଓଡ଼ିଆ ପ୍ରେମୀ, ପୋଛିଦେଇ ବେଦନା ।
ଅଣୀ ମସିହାର ବନ୍ୟାବେଳେ ସାଜିଥିଲ ଗୋପବଂଧୁ
ତଣ୍ଡୁଳ ଦେଇ ବ୍ୟଥାକୁ ଦୂରେଇ, ଦୁଃଖୀଜନଙ୍କର ବଂଧୁ ।
କର୍ମୀ ହେ ତୁମେ, କର୍ମ ହୋଇଥିଲା ଜୀବନର ମୁଖ୍ୟ ଧେୟ
ସ୍ମୃତି ରଖିଗଇ ବିସ୍ମୃତ ନୋହିବ କାଳକୁ କରିଲ ଜୟ ।

ତୁମ ଆଶିଷରୁ ତୁମ ପ୍ରେରଣାରୁ ଲେଖିଗଲି ଦୁଇଧାଡ଼ି
ଶିବଲକ୍ଷ୍ମୀଙ୍କର ସହଯୋଗ ପାଇ ଜୀବନ ଗଲା ସଜାଡ଼ି
କେତେ ବାହୁନିବି ଗୁଣକୁ ତୁମର ନିଜ ଗୁଣେ ଗରୀୟାନ
ସରଗ ଦୂତ କି ଆସିଥିଲ ବାରେ କରିବାକୁ ସ୍ନେହଦାନ ।

ହେ ମହାତ୍ମା !
ଅକିଞ୍ଚନ ମୁହିଁ ପାରିବିକି କହି ତୁମରି ଅମର ଗାଥା
ତୁମରି କରମ ତୁମରି ଧରମ ଭାବିଲେ ଘୂରୁଛି ମଥା ।
ସ୍ନେହଭରା ଶୁଭ୍ର ଗଂଭୀରତାମୟ ତୁମର ସ୍ମିତକାୟ
ତୁମରି ନାମିତ ଶେଫାଳି ପାହାଡ଼ ଦିଏ ତୁମ ପରିଚୟ
ଆତ୍ମା ତୁମର ସଦ୍‌ଗତି ପାଉ ଏତିକି କାମନା କରେ
କୋଟି ପ୍ରଣିପାତ ତୁମ୍ଭ ଶ୍ରୀ ଚରଣେ ଆଜୀବନ ତାହା ଝୁରେ ।

ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ,ଗୁଣପୁର,ରାୟଗଡ଼ା

# ସେ ବିଚିତ୍ର ଏଜେଣ୍ଟ୍

ମନୋଜ ଦାସ

କଲ୍ୟାଣମୟୀ ପ୍ରିୟମ୍ବଦା ଏବଂ କଲ୍ୟାଣମୟ ରମାକାନ୍ତ,

ମୋର ପ୍ରିୟ ବଂଧୁ ଶିବରାମ ବାବୁଙ୍କ ସଂପର୍କରେ ଭାବପ୍ରବଣ ଭାବରେ କିଛି ଲେଖିବାର ଯଥେଷ୍ଟ ସମ୍ଭାବନା ରହିଛି । କିନ୍ତୁ ମୁଁ ନିଜର ଆବେଗ ସଂଯତ କରି ଖାଲି ଯୋଡ଼ିଏ ଛୁଳ ଦୃଷ୍ଟାନ୍ତର ସଂକ୍ଷିପ୍ତ ବିବରଣୀ ଦେଉଛି ।

ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ମୁଁ ସଂପାଦନା ଓ ପ୍ରକାଶ କରୁଥିବା 'ଦିଗନ୍ତ' ସ୍ୱଭାବତଃ କେତୋଟି ସଂଖ୍ୟା ପରେ ବନ୍ଦ ହୋଇଯାଇଥିଲା । ୧୯୫୯ରେ ତା'ର ପୁନଃପ୍ରକାଶ ସମ୍ଭବ ହେଲା । ସେ ଘୋଷଣା ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇବା ମାତ୍ରେ ଯିଏ ଦକ୍ଷିଣ ଓଡ଼ିଶାର କୌଣସି ସହରରୁ ପ୍ରଥମେ ଦଶ ବା ପନ୍ଦର କପି ମଗାଇଥିଲେ, ସିଏ ହେଲେ ସେତେବେଳେ ଛାତ୍ରଟିଏ ଥିବା ଶ୍ରୀ ବି. ଶିବରାମ ପାତ୍ର ।

କଥାଟି ମନେ ରହିବାର କାରଣ, ମାସ ଶେଷ ହେବା ପୂର୍ବରୁ ମନିଅର୍ଡ଼ର ଯୋଗେ ପ୍ରାପ୍ୟ ଆସିଗଲା କିନ୍ତୁ ସ୍ମରଣଯୋଗ୍ୟ କଥା ସେଇଟା ନୁହେଁ । ସେ ବିଚିତ୍ର ଏଜେଣ୍ଟ୍ ଜଣକ ତାଙ୍କ କମିସନି ନ କାଟି ସମୁଦାୟ ପଇସା ପଠାଇଥିଲେ । ଭୁଲବଶତଃ ସେ ତାହା କରିଥାଇ ପାରନ୍ତି ଭାବି 'ଦିଗନ୍ତ' କାର୍ଯ୍ୟାଳୟରୁ ଚିଠି ଗଲା ଏହି ମର୍ମରେ କି ପରବର୍ତ୍ତୀ ସଂଖ୍ୟାର ଦେୟ ପଠାଇବା ବେଳେ  ସେ ଯେମିତି ତାଙ୍କ ପ୍ରାପ୍ୟ ରଖିଦେଇ ବାକିତକ ପଠାଇବେ । ଉତ୍ତର ଆସିଲା : ସେ ଯାହା କରିଛନ୍ତି, ତାହା ସଚେତନ ଭାବରେ କରିଛନ୍ତି । ଅନ୍ୟ କାଗଜ କଥା ଅଲଗା, କିନ୍ତୁ 'ଦିଗନ୍ତ' ପ୍ରତି ସେବା ମନୋଭାବ ପୋଷଣ କରି ସେ ପତ୍ରିକାଟି ବିକ୍ରୟ କରୁଛନ୍ତି ।

ମୁଁ 'ଦିଗନ୍ତ' ସଂପାଦନାରୁ ଅବ୍ୟାହତି ନେଇ ପଣ୍ଡିଚେରୀ ଚାଲିଆସିବା ପର୍ଯ୍ୟନ୍ତ ଶିବରାମ ବାବୁ ଏହି ସେବାରୁ ବିରତ ହୋଇନଥିଲେ । ସେତେବେଳେ ସେ ଥିଲେ ଜୀବନ-ସଂଗ୍ରାମରତ । ତଥାପି ଏହି ସେବା, ଏହି ତ୍ୟାଗ ଥିଲା ତାଙ୍କ ଆଭିମୁଖ୍ୟ ।

ଏମନ୍ତ ଦ୍ୱିତୀୟ ଏକ ଦୃଷ୍ଟାନ୍ତ ଅକଳ୍ପନୀୟ ନ ହେଲେ ବି ଆଜିର ପଟ୍ଟଭୂମିରେ ପରୀଗଳ୍ପ !

ଗତ ଶତାବ୍ଦୀର ସପ୍ତମ ଦଶକରେ ବଂଶଧାରାର ପ୍ରଚଣ୍ଡ ବନ୍ୟା ବିପ୍ଲାତରେ ଗୁଣପୁର ସହର ଜଳମଗ୍ନ ହୋଇଥିଲା । ପରେ ପରେ ପାଇଲି ଏକ ପାର୍ସଲ । ଷଷ୍ଠ ଦଶକରେ 'ଧରିତ୍ରୀ'ରେ ପ୍ରକାଶିତ ମୋର 'କେତେ ଦିଗନ୍ତ' ସ୍ତମ୍ଭର ସଂଗ୍ରହ । ପ୍ରେରକ ଶିବରାମ ବାବୁ । ତାଙ୍କ ବକ୍ତବ୍ୟ : ବନ୍ୟାବେଳେ ସେ ଏହାକୁ ନିଜ ହାତରେ ଉଠାଇ ଧରି ରକ୍ଷା କରିଥିଲେ । ଏବେ ମୋ ପାଖକୁ ପଠାଇଦେଲେ ।

ସୌହାର୍ଦ୍ଦ୍ୟର ଏଭଳି ଦୃଷ୍ଟାନ୍ତ ଯେ ବିରଳ, ଏକଥା କହିବା ବାହୁଲ୍ୟ ମାତ୍ର ।

ଶିବରାମ ବାବୁଙ୍କ ମହତ୍ତ୍ୱ ପ୍ରତିପାଦନ କରିବା ଦିଗରେ ଆଉ ଅଧିକ କିଛି ଲେଖିବା ଅନାବଶ୍ୟକ । ତାଙ୍କ ସାହିତ୍ୟ ପ୍ରୀତି, ସୁଗଭୀର ତଥା ସୁଗମ୍ଭୀର ସମାଲୋଚନାଧର୍ମୀ ମନ୍ତବ୍ୟ ଏସବୁ ମୋ ମନରେ ଗଭୀର ରେଖାପାତ କରୁଥାଏ - ମଧୁର ଭାବରେ । ତାଙ୍କ ଆକସ୍ମିକ ବିଳୟ ବିଷଣ୍ଣତାର ଯେଉଁ ରେଖାପାତ କରିଗଲା, ତାହା ଏଯାଏ ଲିଭିନାହିଁ ।

ତୁହେଁ ମୋର ଶୁଭେଚ୍ଛା ଗ୍ରହଣ କରିବ ।

ଭୁବନେଶ୍ୱର
୪-୨-୨୦୦୬

॥ ଇତି ॥
ମନୋଜ ଦାସ

## ନବରଂଗପୁରର ଓଡ଼ିଆ ଅଧାପକ

**ମହମ୍ମଦ ବାଙ୍ଗୀ**

ନବରଂଗପୁରକୁ ଓଡ଼ିଆ ଅଧାପକ ହୋଇ ଆସିଲେ ଶିବରାମ ବାବୁ । ସ୍ୱାଧୀନତା ସଂଗ୍ରାମୀ ଆଉ ଗାଁ ଲୋକଙ୍କ ସାଥିରେ ପରିଚିତ ହେଲେ । ଏହି ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଭେଟି, ଜୀବନୀ ଲେଖି ଜିଲ୍ଲାର ଖବର କାଗଜରେ ପ୍ରକାଶ କରୁଥିଲେ । ସଦାଶିବ ତ୍ରିପାଠୀ, ରବିସିଂ ମାଝୀ, ଲକ୍ଷ୍ମୀଚନ୍ଦ୍ର ଦାସ, ସଦାନନ୍ଦ ମହାନ୍ତି, ସୀମାଞ୍ଚଳ ବେହେରା, ଶ୍ରୀ ଜଗନ୍ନାଥ ତ୍ରିପାଠୀ ଓ ମୋ ବିଷୟରେ ଜୀବନୀ ଲେଖାଲେଖି କରୁଥିଲେ । ଗାଁ ଗହଳର ହାଇସ୍କୁଲକୁ ଯାଇ ଉପଦେଶ ଦେଉଥିଲେ । ଏହି ଅଞ୍ଚଳର କାରୁକାର୍ଯ୍ୟ ବିଷୟରେ ଅନୁସନ୍ଧାନ କରୁଥିଲେ । ଏହି ଅଞ୍ଚଳର ଲାଖ ତିଆରି ଜିନିଷ ସବୁ ନେଇ ସେ ଘରେ ସଜାଉଥିଲେ, ଲହୁରା ବା କମାର ପାଖକୁ ଯାଇ ଏଠାର ଦେବାଦେବୀମାନଙ୍କର ଅଳଙ୍କାର କିଣି ଆଣି ନିଜ ଘରେ ରଖୁଥିଲେ ଓ ପ୍ରଚାର କରୁଥିଲେ ।

ଗାଁ ଗହଳକୁ ଯାଇ ସେମାନଙ୍କ ଇତିହାସ ବିଷୟରେ ପଚରାପଚୁରି କରୁଥିଲେ ।

ଉମରକୋଟର ପଡ଼ାଗଡ଼ରେ ଭୈରବ ମୂର୍ତ୍ତୀ ଅଛି, ପଡ଼ାଗଡ଼ରେ ଯାଇ ଇତିହାସ ସଂଗ୍ରହ କରିଥିଲେ । ଏହି ଅଞ୍ଚଳରେ ଅନେକ ପୁରାତନ ଦେବାଳୟ ବା ଆଦିବାସୀ ଭାଷାରେ 'ଗୁଡ଼ି' ଅଛି । କେଲିଆର ପର୍ବତ ଗୁମ୍ଫାରେ ଈଶ୍ୱର ମନ୍ଦିର, ବିଜାପୁରର ପୁରାତନ ଶିବ ମନ୍ଦିର ଏବଂ ଉମରକୋଟ ଅଞ୍ଚଳର କାରଗାଁଠାରେ ଈଶ୍ୱର ମନ୍ଦିରକୁ ଯାଇ ପୁରାତନ କାରୁକାର୍ଯ୍ୟ ଉପରେ ବହୁତ ଲେଖାଲେଖି କରିଥିଲେ ।

ତାଙ୍କର ଏହିସବୁ ଅଭୁଲା ସମାଜସେବା କର୍ମ, ସବୁଦିନ ଲାଗି ନବରଙ୍ଗପୁର ନିମନ୍ତେ ସ୍ମରଣୀୟ ହେଇ ରହିବ । ତାଙ୍କର ଶ୍ରାଦ୍ଧବାର୍ଷିକୀରେ ମୋର ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସୁନାରୀ ସାହି,ନବରଙ୍ଗପୁର

## ଅଧ୍ୟାପକ ଶିବରାମ ପାତ୍ରଙ୍କ ସ୍ମରଣେ

ବିଶ୍ୱନାଥ ପଟ୍ଟନାୟକ

ଶିବରାମ ବାବୁଙ୍କ ସହ ମୋର ଘନିଷ୍ଠ ସମ୍ପର୍କ ଥିଲା । ସେ ନବରଂଗପୁର କଲେଜରେ ଥିବାବେଳେ ତାଙ୍କୁ ମୁଁ ଅନୁରୋଧ କଲି ଜଣେ ମୁସଲମାନ୍ ଝିଅକୁ ଆର୍ଟସ୍ ପଢ଼ିବାର ବ୍ୟବସ୍ଥା କରିଦେବାପାଇଁ । ସେ କହିଲେ, ଆର୍ଟସ୍‌ରେ ଯାଗା ନାହିଁ । ସାଇନ୍‌ସ୍‌ରେ ଯାଗା ଅଛି । ସେ ପ୍ରଥମେ ସାଇନ୍‌ସ୍‌ରେ ଜଏନ୍ ହୋଇଯାଉ । ଯଦି ନ ପାରିବତ ଆର୍ଟସ୍‌କୁ ବଦଳାଇଦେବା, କହି ସେ ଝିଅକୁ ସାଇନ୍‌ସ୍‌ରେ ଜଏନ୍ କରିଦେଲେ ।

ସେ ଜଣେ ସ୍ୱାଧୀନଚେତା ଲେଖକ ହୋଇଥିବାରୁ ମନମୋହନ ଚୌଧୁରୀଙ୍କ ସହ ତାଙ୍କର ସୁସମ୍ପର୍କ ଥିଲା । ମନମୋହନ ଯେତେବେଳେ ନବରଙ୍ଗପୁର ଯାଆନ୍ତି ଶିବରାମଙ୍କ ଘରକୁ ଯାଇ ଆଲୋଚନା କରନ୍ତି । ବୋଲଗଡ଼ ଯିବା ପରେ ମଧ୍ୟ ସେ ମୋ'ଠାକୁ ବରାବର ଆସୁଥାନ୍ତି । ଅବହେଳିତଙ୍କ ବିକାଶ ପାଇଁ ଚର୍ଚ୍ଚା କରନ୍ତି । ତାଙ୍କର ଦେହତ୍ୟାଗ ମାସେ ଆଗରୁ ଏଠାକୁ ଆସିଥିଲେ । ଠିକ୍ ମାସେ ପରେ ସେ ଚାଲିଗଲେ । ଶୁଣି ଦୁଃଖ ହେଲା । ଈଶ୍ୱରଙ୍କ ଇଚ୍ଛା ଯାହା ସେ ପୂରଣ କରିବେ । ଆମେ ତ ମନୁଷ୍ୟ । ପ୍ରାର୍ଥନା ଛଡ଼ା ଆଉ କ'ଣ କରିପାରିବା ?

ସେ ସ୍ମରଣୀୟ ବ୍ୟକ୍ତି, ସ୍ମରଣୀୟ ହୋଇ ରହିଗଲେ । ଈଶ୍ୱର ତାଙ୍କ ଆତ୍ମାକୁ ଶାନ୍ତି ଦିଅନ୍ତୁ ।

ବନବାସୀ ସେବା ସମିତି
ବାଲିଗୁଡ଼ା

## ସେ ଥିଲେ ଏକ ଦୁର୍ଲଭ ଉଦାହରଣ

ମହାପାତ୍ର ନୀଳମଣି ସାହୁ

ଅଧ୍ୟାପକ ଶିବରାମ ପାତ୍ରଙ୍କୁ ମୁଁ ବହୁ ପୂର୍ବରୁ ଜାଣିଥିଲି । ଯଦିଓ ତାଙ୍କର ମୋ ସହିତ ଏତେ ଘନିଷ୍ଠ ସଂପର୍କ ହୋଇପାରିବାର ସୁଯୋଗ ନଥିଲା-ତଥାପି ଆଜିକୁ ପଚିଶି ତିରିଶ ବର୍ଷ ତଳୁ ତାଙ୍କୁ ଜାଣିଥିଲି ଓ ତାଙ୍କର ଅନେକ ସୁଗୁଣ ସହିତ ମୋର ପରିଚୟ ଥିଲା । ମୂଳରୁ ସେ ଅନ୍ୟ ଚାକିରୀ କରୁ ଥିଲେ ମାତ୍ର ଜ୍ଞାନସାଧନା ପାଇଁ ଥିଲା ତାଙ୍କର ପ୍ରବଳ ସ୍ପୃହା । ତେଣୁ ସେ ମୂଳ ଚାକିରୀ ଛାଡ଼ି ଦେଇ ଅଧ୍ୟାପକ ପଦ ଗ୍ରହଣ କଲେ । ଏବଂ ସେ ଦିନଠାରୁ ପଠନ ଓ ଅଧ୍ୟାପକ ବୃତ୍ତିରେ ପ୍ରଗାଢ଼ ପରିଶ୍ରମ କରୁଥିଲେ ।

ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ତାଙ୍କର ସମାନ ପ୍ରବେଶ ଥିଲା । ଆମ ସମୟର ବିଖ୍ୟାତ ଲେଖକ ସ୍ୱର୍ଗତଃ ସୁରେନ୍ଦ୍ର ମହାନ୍ତିଙ୍କ ସାହିତ୍ୟ ଉପରେ ସେ ଗଭୀର ଭାବେ ଗବେଷଣା କରିଥିଲେ । ସୁରେନ୍ଦ୍ର ମହାନ୍ତିଙ୍କର ସମସ୍ତ ଗ୍ରନ୍ଥ ଅଧ୍ୟୟନ କରି, ଶିବରାମ ତାଙ୍କର ଜୀବନ-ଦର୍ଶନ ଉପରେ ଏକ ଗ୍ରନ୍ଥ ସଂକଳିତ କରିଛନ୍ତି । ସେ ମୋ ଉପରେ ମଧ ସେପରି ଏକ ଗ୍ରନ୍ଥ

ସଂକଳନ କରିବାକୁ ଆଶା ରଖିଥିଲେ । ତା'ଛଡ଼ା-ମୁଁ ତାଙ୍କର ସାହିତ୍ୟରେ ବିଦଗ୍ଧ ରୁଚିର ତୀକ୍ଷ୍ଣ ଦୃଷ୍ଟିକୋଣ ଓ ବିଚାର ଶକ୍ତିର ପରିଚୟ ପାଇଛି ।

ଏସବୁ ଛଡ଼ା ଶିବରାମ ଥିଲେ ଜଣେ ଖୁବ୍ ଭଲ ମଣିଷ । ଏ ଯୁଗରେ ଶିବରାମ ପରି ଭଦ୍ର, ଭବ୍ୟ, ବିନୀତ ମଣିଷଟିଏ ପାଇବା ଖୁବ୍ ଦୁର୍ଲଭ । ସର୍ବଦା ହସହସ ମୁହଁ ବିନୀତଭଙ୍ଗୀ-କୋମଳ ମଧୁର କଥା-ସ୍ନେହଶୀଳ ହୃଦୟ-ସଂଯତ ବ୍ୟବହାର-ସବୁଥିରେ ସେ ଥିଲେ ଏକ ଦୁର୍ଲଭ ଉଦାହରଣ । ମୁଁ ତାଙ୍କର ଗୁଣରେ ଖୁବ୍ ମୁଗ୍ଧ ଥିଲି ।

ତାଙ୍କର ପତ୍ନୀ ଥିଲେ ଏକଦା ମୋର ଛାତ୍ରୀ । ଶିବରାମଙ୍କ ସଂସାରକୁ ସେ ଜଣେ ଆଦର୍ଶ ଗୃହିଣୀ ରୂପେ ଆଜି ପର୍ଯ୍ୟନ୍ତ ଚଳାଇ ଆଣିଛନ୍ତି । ତାଙ୍କର କନ୍ୟା ପ୍ରିୟମ୍ବଦା ଭାରି ଚମତ୍କାର ଝିଅ । ପ୍ରିୟ ଓ ମଧୁରଭାଷିଣୀ ସେହି କନ୍ୟାଟିକୁ ଦେଖିଲେ ମୋର ଶିବରାମର ବ୍ୟକ୍ତିତ୍ୱ ମନେପଡ଼େ । ଉପଯୁକ୍ତ ପିତାର ଉପଯୁକ୍ତ କନ୍ୟା । ଶିବରାମର ଜାମାତା ରମାକାନ୍ତ ଜଣେ ପ୍ରତିଭାଶାଳୀ ଆର୍ଟିଷ୍ଟ ଓ କବି । ସେ ମଧ ମୋତେ ତା'ର ଗୁଣ ଦ୍ୱାରା ମୁଗ୍ଧ କରିଛି । ମୋଟ ଉପରେ ସ୍ୱର୍ଗତ ଶିବରାମ ତାଙ୍କର ପରିବାର ମୋତେ ମୁଗ୍ଧ କରି ରଖି ଆସିଛନ୍ତି ।

ଶିବରାମଙ୍କ ଜୀବନ ଥିଲା ତାଙ୍କର ନାମ ଅନୁରୂପ ଓ ଅନୁସୃତ ଏକ ସୁନ୍ଦର ଜୀବନ । ମଙ୍ଗଳମୟ ଶିବଙ୍କଠାରୁ ସେ ସମସ୍ତଙ୍କ ପ୍ରତି ମଙ୍ଗଳକାମନା କରିବା ଗୁଣ ନେଇ ଜନ୍ମିଥିଲେ । ଏବଂ ମର୍ଯାଦା-ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ଠାରୁ ସେ ଆତ୍ମ-ମର୍ଯାଦାବୋଧ ଓ ଅନ୍ୟକୁ ମର୍ଯାଦା ଦେବା ଗୁଣ ନେଇ ଜନ୍ମିଥିଲେ ।

ମୁଁ ଏଇ ଅବସରରେ ତାଙ୍କର ଗୁଣ ସ୍ମରଣ କରି ଆନନ୍ଦିତ ହେଉଛି ଓ ତାଙ୍କର ପରିବାରର ସମସ୍ତଙ୍କର ଶୁଭ କାମନା କରୁଛି ।

ଆକାଶ ପାତାଳ, ଶହୀଦ ନଗର
ଭୁବନେଶ୍ୱର

## ଶିବରାମ ଓ ସାହିତ୍ୟବ୍ରତ

ସୀତାକାନ୍ତ ମହାପାତ୍ର

ଯେତେଥର ଶିବରାମ ମୋ ଘରକୁ ଆସିଛନ୍ତି ତା'ଭିତରୁ ଏଇଟି ଗୋଟିଏ ଦିନର କଥା । ଘର ଭିତରୁ ମୁଁ ତାଙ୍କୁ ଭେଟିବାକୁ ଆସିଲି । ସେତେବେଳକୁ ସେ ମୋ ବଗିଚାର ଫୁଲଗଛ ଗୋଟି ଗୋଟି କରି ଦେଖିବାରେ ବ୍ୟସ୍ତ ଥିଲେ । ଯେତେବେଳେ ସେ ଆସନ୍ତି ସାହିତ୍ୟ କଥା ସାଙ୍ଗରେ ବିଭିନ୍ନ ଫୁଲଗଛଙ୍କ କଥା ଆଲୋଚନା ଭିତରକୁ ଆସେ । ପ୍ରଥମ ବିଷୟଟି ମୋ ସାଙ୍ଗରେ ଆଉ ଫୁଲଗଛ କଥା ମୋ ସ୍ତ୍ରୀଙ୍କ ସାଙ୍ଗରେ । ତାଙ୍କର ଫୁଲଗଛରେ ବଡ଼ ଝୁଙ୍କ । ନୂଆ କିଛି ଫୁଲଗଛ ଆଣି ଦେବାର ପ୍ରତିଶ୍ରୁତି ମିଳେ ।

ବହୁ ଦିନ ତଳେ ସେ ସଂପାଦନା କରୁଥିବା 'ବଂଶଧାରା' ମୋତେ ଦେଇଥିଲେ, ସେଥିରେ ସଂକଳିତ ସଉରାମାନଙ୍କ ମୌଖିକ କବିତା ବିଷୟରେ ଆମେ ଆଲୋଚନା କରିଥିଲୁ । ଆଦିବାସୀ ଲୋକଗୀତ ସଂଗ୍ରହଣ, ସଂପାଦନ ସଂପର୍କରେ ମୋର ଆଗ୍ରହ ସେ ଜାଣିଥିଲେ, ଭଲ ପାଉଥିଲେ । ଲକ୍ଷ୍ୟ କରିଥିଲି ଯେ ବଂଶଧାରା ନଦୀ ପ୍ରତି ତାଙ୍କର ଥିଲା ଅହେତୁକ ମମତା । ଗୁଣୁପୁର, ବଂଶଧାରା ନଦୀ, ବଂଶଧାରା ସାହିତ୍ୟ ସମାଜ ଏସବୁ ତାଙ୍କ ସ୍ୱପ୍ନରେ

ଖୋଦିତ ହୋଇ ରହିଥିଲା । ବହୁ ସାହିତ୍ୟ ପତ୍ରିକା ନିଜେ ସଂପାଦନ କରିବା ବ୍ୟତୀତ ଆଜିର ଓଡ଼ିଆ ସାହିତ୍ୟ ଓ ତା'ର ବିଭିନ୍ନଧାରା ଜଣେ ସୁସାହିତ୍ୟିକ ଭାବେ ନିଜର ସମୀକ୍ଷକ ଦୃଷ୍ଟିକୁ ସେ ଆଣିଥିଲେ ଓ ନିଷ୍ଠାପର ଭାବେ ପ୍ରତ୍ୟେକ ବିଷୟରେ କିଛି କାର୍ଯ୍ୟ କରିଥିଲେ । ସଂଗଠନ ଜରିଆରେ ସାହିତ୍ୟ ବିକାଶ ଥିଲା ତାଙ୍କ ବ୍ୟକ୍ତିତ୍ୱର ଆଉ ଏକ ବିଭାବ । ବ୍ରହ୍ମପୁରର କଳିଙ୍ଗ ସାହିତ୍ୟ ସମାଜ ଓ ଗୁଣପୁରର ବଂଶଧାରା ସାହିତ୍ୟ ସମାଜ ତା'ର ନିଖୁଣ ନିଦର୍ଶନ । 'ସୁରେନ୍ଦ୍ର ବିଚାର ମଞ୍ଜୁଷା' ପ୍ରକାଶନ ପରେ ସେଇଟି ନିଜେ ଆଣି ମୋତେ ଦେଇ ମୋର ମନ୍ତବ୍ୟ ଚାହିଁଥିଲେ : ପଢ଼ିସାରି ମୁଁ ତାଙ୍କୁ ମୋର ଧାରଣା ସ୍ପଷ୍ଟ କରିଥିଲି । 'ବିଚାର ମଞ୍ଜୁଷା' ଓଡ଼ିଆ ସାହିତ୍ୟ ସମୀକ୍ଷା କ୍ଷେତ୍ରରେ ଏକ ନୂତନ ଧାରା ଓ ବିଦଗ୍ଧ ପାଠକ, ସାହିତ୍ୟିକକୁ ଚିହ୍ନିବା ପାଇଁ ଆଉ ଏକ ଦିଗ । ସୁରେନ୍ଦ୍ରବାବୁଙ୍କ ସାହିତ୍ୟ ଉପରେ ସେ ଯାହା କରିଥିଲେ ସେ ଭଲ ପାଉଥିବା ଫକୀରମୋହନ ସେନାପତିଙ୍କ ସାହିତ୍ୟକୁ ନେଇ ସେଇ ଧାରାରେ 'ଫକୀରମୋହନ ବିଚାର ମଞ୍ଜୁଷା' ସଂପାଦନା କରିଥିଲେ । ଉଭୟ ପୁସ୍ତକରେ ତାଙ୍କର ଅଧ୍ୟବସାୟ, ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ଓ ସୁସଙ୍ଗତ ସଂପାଦନା କ୍ଷମତା ସହଜରେ ଲକ୍ଷଣୀୟ ।

ଆମ ଘରେ ଓଡ଼ିଆ ସାହିତ୍ୟ, ସାମସମୟିକ ସାହିତ୍ୟର ବିଭିନ୍ନ ବିଷୟ ସେ ଆଲୋଚନା କରନ୍ତି ଓ ତା' ମାଧ୍ୟମରେ ମୁଁ ତାଙ୍କର ସାହିତ୍ୟପ୍ରୀତି ଓ ଅଧ୍ୟୟନ ସଂପର୍କରେ ବେଶ୍ ଜାଣିପାରିଥିଲି । 'ଫକୀରମୋହନ ବିଚାର ମଞ୍ଜୁଷା' ନିଜ ଗାଁ ଗୁଣ୍ଡପଡ଼ାର ସୁପ୍ରସିଦ୍ଧ ପଣ୍ଡିତ କବିରାଜ ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମାଙ୍କୁ ଉତ୍ସର୍ଗ କରିଥିଲେ । ପଣ୍ଡିତଙ୍କର ତାଙ୍କୁ ନିର୍ଦ୍ଦେଶ ଥିଲା 'କୋ' ଗହଳିରେ ପଶ ନା । ଭଲ ପାଇଟି କରିବୁ । ଭଲରେ ରହିବୁ ।' ଶିବରାମଙ୍କ ନିଜ ଭାଷାରେ- ''ତମାମ ଜୀବନ ସାହିତ୍ୟ ସେବାକୁ ବ୍ରତ ରୂପେ ନେଇଛି, ଶକ୍ତି ଅନୁସାରେ କିଛି କରୁଛି । ସାହିତ୍ୟସେବା ଏକ ଭଲ ପାଇଟି ବୋଲି ମୋର ହୃଦ୍‌ବୋଧ ହୋଇଛି ।''

ଶେଷଥର ଶିବରାମଙ୍କ ସହିତ ଭେଟ ଚିନ୍ତାମଣି ବେହେରାଙ୍କ ପୁଅ ବିଭାଘର ରିସେପ୍‌ସନ୍‌ରେ । ସେଇଦିନ ସକାଳୁ ଚିନ୍ତାମଣିବାବୁଙ୍କ ସ୍ୱାସ୍ଥ୍ୟରେ ଅବନତି ହୋଇଥିବାରୁ ତାଙ୍କୁ ସଂଜୀବନୀ ହସ୍‌ପିଟାଲରେ ଭର୍ତ୍ତି କରାଯାଇଥିଲା । ସ୍ୱାଭାବିକ୍ ଭାବେ ତେଣୁ ରିସେପ୍‌ସନ୍‌ଟି ମହଲଣ ପଡ଼ିଥିଲା । କିଛି ସମୟ ଗପ ସପ ପରେ ମୁଁ ଚିନ୍ତାମଣିବାବୁଙ୍କ ଭେଟିବା ପାଇଁ କ୍ଲିନିକ୍ ଆଡ଼େ ବାହାରିଲି, ସେ ତାଙ୍କୁ ଦେଖି ଆସି ସାରିଥିଲେ । କ୍ଲିନିକ୍‌ରେ ଚିନ୍ତାମଣିବାବୁଙ୍କୁ ଦେଖିବା ଥିଲା ଚିନ୍ତାମଣି ସହିତ ମୋର ଶେଷ ଦେଖା । ଜାଣିନଥିଲି ଯେ ସେଦିନର ଦେଖା ଚାହାଁ ଶିବରାମଙ୍କ ସହିତ ହେବ ମୋର ଶେଷ ସାକ୍ଷାତ ।

ଫକୀରମୋହନ ଲେଖିଥିଲେ : ଯେ ସୃଷ୍ଟି ସ୍ଥିତିର କାରଣ
ସକଳେ ଯହିଁ ହେବେ ଲୀନ ।
ସେ ପ୍ରଭୁ ପରମ ଈଶ୍ୱର
ତା' ପାଦେ ଚିତ୍ତ ରହୁ ମୋର ।

ଭଗବତ ବିଶ୍ୱାସୀ ଶିବରାମ ସେଇଠି ହିଁ ଚିତ୍ତ ରଖିଥିଲେ; ଅବଶେଷରେ ସେଇଠି ଲୀନ ହେଲେ । ସ୍ୱଳ୍ପଭାଷୀ, ସାହିତ୍ୟପ୍ରେମୀ ଶିବରାମଙ୍କ ବିୟୋଗ ଓଡ଼ିଆ ସାହିତ୍ୟର ଅପୂରଣୀୟ କ୍ଷତି ।

'ଶ୍ରଦ୍ଧା', ୨୧, ସତ୍ୟନଗର, ଭୁବନେଶ୍ୱର-୭

# ସୁଖ ଦୁଃଖର ସାଥି

ଡ. ଅରବିନ୍ଦ ପଟ୍ଟନାୟକ

କଥାରେ ଅଛି - 'ବନ୍ଧୁ ପରିମଳ କେମନ୍ତେ ଜାଣିବ ଦେଖିଲେ ଯେବେ ହସେ ।' କ'ଣ ଖାଲି ଏତିକି ? ଇଏ ଉଣା କଥାଟିଏ ନୁହେଁ । ସାଙ୍ଗଟିକୁ ଦେଖିଦେଲା ମାତ୍ରେ, ମନ ଭିତରୁ ଆନନ୍ଦଟା ଉଚ୍ଛୁଳି ନ ଆସିଲେ ଓଠରେ ମନ ଟଣା ହସ ଫୁଟିବ ନାହିଁ । ଏବେ ଯୋଉ 'ପ୍ଲାଷ୍ଟିକ୍ ହସ'ଟା ସୌଜନ୍ୟର ମଲାଟ ହୋଇଛି, ସେଥିରେ ବନ୍ଧୁତାର ମହକ ଠାରୁ ଔପଚାରିକତାର ଝଟକ ଅଧିକ । ଶିବରାମବାବୁଙ୍କ ସହିତ ମୋର ବନ୍ଧୁତା ପଚିଶ କି ତିରିଶ ବର୍ଷର ପୁରୁଣା, କିନ୍ତୁ ଶେଷ ପର୍ଯ୍ୟନ୍ତ ତାହା ଝାଉଁଳି ନଥିଲା କି ତହିଁରେ ମଳିଧୂଳି ଜମି ନଥିଲା, ତାହା ସମ୍ଭବ ହୋଇଥିଲା ତାଙ୍କର ସଦା ନିର୍ମଳ ହୃଦୟଟିଏ ପାଇଁ ।

ରାମାୟଣର କିଷ୍କିନ୍ଧ୍ୟା କାଣ୍ଡର ଘଟଣାଟିଏ, ବାଳୀ ସାନଭାଇ ସୁଗ୍ରୀବକୁ ବୁଝାଇଛନ୍ତି- "ବାବୁରେ, ମିତ ବସିବା ହୁଏତ ସହଜ । କିନ୍ତୁ ବନ୍ଧୁତାକୁ ବାନ୍ଧି ରଖିବା ଭାରି କଷ୍ଟ । ମଣିଷର ମନ ଏମିତି ପତଳା ଯେ, ଅଳ୍ପକେ ପ୍ରୀତି ତୁଟିଯାଏ । ତେଣୁ ହୁସିଆର ।" ସେ ଅବଶ୍ୟ ଭିନ୍ନ ପରିସ୍ଥିତିରେ ଏକଥା କହିଥିଲେ । କିନ୍ତୁ ମନୁଷ୍ୟର ସ୍ୱଭାବ ଓ ସେଥିରେ ମିତ୍ରତାର ସ୍ଥିତି ପରିଣତି ସମ୍ପର୍କରେ, ଏଇଟି ମଞ୍ଜି କଥା । ଜଣଙ୍କର ମନ ଚିହ୍ନି, ପରିସ୍ଥିତିକୁ କଳନା କରି ସବୁ ସମ୍ଭାଳି ଝଡ଼ଝଞ୍ଜା ଏଡ଼ାଇ ବାଟ କାଟି ଚାଲି ଜାଣୁଥିବା ମଣିଷ କଥା ନିଆରା । ସେ ସବୁ ପରିସ୍ଥିତିରେ ଥରେ ବାନ୍ଧିଥିବା ବନ୍ଧୁତାକୁ ଅତୁଟ ରଖିପାରେ । ଶିବରାମବାବୁଙ୍କ ସ୍ୱଭାବରେ ସେଇ ଟାଣ ଥିଲା, ପୁଣି ସେଥିରେ ଆଉ ଗୋଟିଏ ବୈଶିଷ୍ଟ୍ୟ ଥିଲା, ଯାହା ବଳରେ ସେ ବୟସ ବୃତ୍ତି, ସ୍ଥିତି, ମାନସିକତା ଆଦି ନାନା ଭେଦ, ଭେଦି ଯାହା ସହିତ ଯେମିତି ଚଳିବାକୁ ହୁଏ - ଚଳି ସମ୍ପର୍କର ଖିଅ ଯୋଡ଼ି ତାକୁ ଅକ୍ଷୁଣ୍ଣ ରଖି ପାରୁଥିଲେ ।

ଶିବରାମବାବୁ ମୋଠାରୁ ବୟସରେ କନିଷ୍ଠ । ପୁଣି ଆମେ କେବେ କୌଣସି ସ୍କୁଲ ବା କଲେଜରେ ଏକ ସମୟରେ ପଢ଼ିନାହୁଁ । ଏକା କର୍ମ କ୍ଷେତ୍ରରେ ମଧ କାମ କରି ନାହୁଁ । କିନ୍ତୁ ଗୋଟିଏ ଲାଇବ୍ରେରୀରେ ଆମେ ପାଖାପାଖି ଦୁଇ ତିନି ବର୍ଷ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ଏକାଠି ହେଉଥିଲୁ, ମୁଁ କେବେ କୌଣସି ସଭାରେ ଭାଷଣ ଦେବାର ଥିଲେ, ସେ ସେଠାକୁ ଯାଆନ୍ତି । କୋଉଠି କେବେ କିଛି ଲେଖା ବାହାରିଥିଲେ, ସେ ପଢ଼ନ୍ତି । ତା ପରଦିନ ଭେଟ ହେଲେ ତାଙ୍କ ମତାମତ କହନ୍ତି, ବେଳେବେଳେ ଗୋଟିଏ ଗୋଟିଏ ବିଷୟରେ ମଧ ଆମର ଆଳାପ ଆଲୋଚନା, କେବେ କେବେ ଘମାଘୋଟ ଯୁକ୍ତିତର୍କ ହୁଏ । ସେଇ ସମୟରେ ଆମର ପରିଚୟ ଓ କେତେବେଳେ ଭିତରେ ଭିତରେ ବନ୍ଧୁତା ଜମିଯାଇଥିଲା । କିନ୍ତୁ ଏହାପରେ ସେ ଭୁବନେଶ୍ୱର ଛାଡ଼ିଲେ, ମୁଁ ମଧ ଚାରି ପାଞ୍ଚ ବର୍ଷ ଭୁବନେଶ୍ୱର ବାହାରେ ଥିଲି, ତେଣୁ ମିଶିବାର ନିରନ୍ତରତା ରହିପାରିଲା ନାହିଁ । ଚିଠି ପତ୍ରରେ ବି ଯୋଗାଯୋଗ ନଥିଲା । ତଥାପି ଆନ୍ତରିକତା ଅତୁଟ ଥିଲା । କୋଉଠି ବାଟରେ ଘାଟରେ କି ସଭା ସ୍ଥଳରେ ମତେ ଦେଖି ପକାଇଲେ, ସେ ଭିଡ଼ ଆଡ଼େଇ ଦ୍ରୁତ ବେଗରେ ମାଡ଼ି ଆସୁଥିଲେ । ବନ୍ଧୁତାର ବାହୁ ପ୍ରସାରିତ କରିଦେଉଥିଲେ । ମୁଁ କାହିଁକି ନିୟମିତ ଲେଖୁ ନାହିଁ ବୋଲି ଅଭିଯୋଗ କରୁଥିଲେ । ସ୍ୱାସ୍ଥ୍ୟଗତ କାରଣ ଏଥିପାଇଁ ଦାୟୀ କି ବୋଲି ପଚାରି, ସେଥିପ୍ରତି ଦୃଷ୍ଟିଦେବାକୁ, ଯତ୍ନ ନେବାକୁ ଆନ୍ତରିକତାର

ସମସ୍ତ ଅଧିକାର ଖଟାଇ ତାଗିଦ୍ କରୁଥିଲେ । ଜଣକ ପ୍ରତି ଜଣକର ସେମିତି ମନ ନଥିଲେ, ଏପରି କହି ହେବ ନାହିଁ । କହିଲେ ବି କଥାର ଟାଣ, ଉଚ୍ଚାରଣରେ ଆନ୍ତରିକତା ଏତେ ସ୍ୱାଭାବିକ ଓ ପ୍ରାଣବନ୍ତ ହେବ ନାହିଁ ।

ଏକଦା ଜଣେ ବନ୍ଧୁଙ୍କର କେତୋଟି ଉପନ୍ୟାସ ଉପରେ ଆଲୋଚନା ଆସର ଆୟୋଜିତ ହୋଇଥିଲା । ମୁଁ ସେଥିରେ ସଭାପତିତ୍ୱ କରିବାକୁ ସମ୍ମତି ଦେଇଥିଲେ । ମୋତେ ତାରିଖଟି କୁହାଯାଇଥିଲା । କିନ୍ତୁ ସମୟ କୁହାଯାଇନଥିଲା । ଚିଠି ଓ ନିମନ୍ତ୍ରଣ ପତ୍ର ଯଥା ସମୟରେ ଆସିବ ବୋଲି କହି ଦିଆ ଯାଇଥିଲା । ଆୟୋଜକମାନେ ମତେ ସଭା ସମୟ ଓ କାର୍ଯ୍ୟକ୍ରମ ବିଷୟରେ ଅବଗତ କରାଇଲେ ନାହିଁ । କହିବା ଅନୁସାରେ, ଏପରିକି ସୌଜନ୍ୟ ଦୃଷ୍ଟିରୁ ଚିଠି ବା ନିମନ୍ତ୍ରଣ ପତ୍ରଟିଏ ଦେଲେ ନାହିଁ । ତଥାପି ସଭା ସ୍ଥଳକୁ ଆସିଲି ଓ ସଭା ଆରମ୍ଭ ହେବାର ବେଶ୍ କିଛି ବିଳମ୍ବରେ ପହଞ୍ଚିଲି । ଶ୍ରୋତା ଭାବରେ ସଭାକୁ ଆସିଥିବା, କେହି ଜଣେ ମୋ ଅନୁପସ୍ଥିତିରେ ସଭାକାର୍ଯ୍ୟ ଚଳାଇଥିଲେ । ମୋ ଉପରେ କେତେ ଜଣ ଉଦ୍ୟୋକ୍ତାଙ୍କର ଦୃଷ୍ଟି ପଡ଼ିଲା । ସଭା ମଞ୍ଚକୁ ମତେ ଯିବାକୁ କୁହାଗଲେ ମଧ ତାହା ମୋତେ ସମୀଚୀନ ବୋଧ ହେଲାନାହିଁ । ତଥାପି ଆଲୋଚନାରେ ଅଂଶ ଗ୍ରହଣର ଅନୁରୋଧକୁ ଉପେକ୍ଷା କରିପାରିଲିନି ତାହା ଆଲୋଚନା ଆରମ୍ଭରେ ମୋର ଅସନ୍ତୋଷକୁ ସଂଯତ ଭାବରେ ପ୍ରକାଶ କଲି । କିନ୍ତୁ ଶିବରାମ ବାବୁ ଏହି ଘଟଣାରେ ଯିଏ ଯୋଗାଯୋଗର ଦାୟିତ୍ୱ ନେଇଥିଲେ, ତାଙ୍କର ଅଭଦ୍ରତା ପ୍ରତି ପ୍ରଚଣ୍ଡ ପ୍ରତିକ୍ରିୟା ପ୍ରକାଶ କରିଥିଲେ । ସଭା ସରିବା ପରେ ମୋତେ ତାଙ୍କ ଘରକୁ ବଡ଼ ଆଦର ଓ ଆନ୍ତରିକତା ସହିତ ନେଇଥିଲେ । ସେଦିନର ଆନ୍ତରିକତା ପାସୋରି ହେବ ନାହିଁ ।

ମୋ ପାଇଁ ପିଆଜ ଚକୁଳି ଓ ସ୍ୱତନ୍ତ୍ର ତରକାରୀ ବରାଦ ହେଲା । ଶ୍ରୀମତୀ ପାତ୍ର ଯତ୍ନରେ ପିଠା ତରକାରୀ ନାନା ପ୍ରକାରର ଆଚାର ବାଢ଼ିଲେ । ଶିବରାମ ବାବୁ ତାଙ୍କର ସଯତ୍ନ ପାଳିତ ବଗିଚାକୁ ଡାକି ନେଇ, ପ୍ରତିଟି ଗଛ ବୁଲି ଦେଖାଇଲେ । କିଛି ପିସ୍ତଳି, ଅନ୍ୟାନ୍ୟ ଫଳ ଓ ସୁନ୍ଦର ସୁବାସିତ ଫୁଲ ମୋ ପାଇଁ ତୋଳିଲେ । ତାଙ୍କ ଘରେ ସଜାଡ଼ି ରଖିଥିବା ତାଙ୍କର ବହିପତ୍ରମାନ ଦେଖାଇଲେ । ସୁରେନ୍ଦ୍ର ବିଚାର ମଞ୍ଜୁଷା, ଫକୀରମୋହନ ବିଚାର ମଞ୍ଜୁଷା ନାମରେ ତାଙ୍କର ସୁସଂପାଦିତ ଗ୍ରନ୍ଥ ଦୁଇଟି ଓ ତାଙ୍କ ସଂପାଦିତ ଏକାମ୍ର ମହାବିଦ୍ୟାଳୟର ପତ୍ରିକା ଉପହାର ଦେଲେ । ଭୁରି ଭୋଜନରେ ଆପ୍ୟାୟିତ କରି ମୋତେ ମୋ ଘରେ ଛାଡ଼ି ଦେଇଗଲେ । ମୋ ଜୀବନର ଗୋଟିଏ ଦୁର୍ଦ୍ଦିନର ଘଟଣା । ସେଦିନ ସମ୍ବାଦପତ୍ରରେ ମୋ ପତ୍ନୀଙ୍କ ବିୟୋଗବାର୍ତ୍ତା ପଢ଼ି, ଯେଉଁ ସମବେଦନା ଓ ବ୍ୟଗ୍ରତାରେ ଶିବରାମବାବୁ ଆସି ମୋ ପାଖରେ ପହଞ୍ଚିଥିଲେ, ତାହା କାଲି ପରି ଲାଗୁଛି । ସେଇ ସମୟରେ ଶୁଦ୍ଧିକ୍ରିୟା ସରିବା ପର୍ଯ୍ୟନ୍ତ ସେ ପ୍ରତିଦିନ ଆସୁଥିଲେ । କିପରି କେଉଁ କାମରେ ସାହାଯ୍ୟ କରିପାରିବେ ପଚାରୁଥିଲେ । ତାପରେ ମଧ ମତେ ଦମ୍ଭ ଦେବାକୁ କେତେ ଥର ଆସିଛନ୍ତି । ପରିଣତ ବୟସରେ ପତ୍ନୀ ବିୟୋଗ ଜନିତ ଦୁଃଖରେ ଭାଙ୍ଗିପଡ଼ି, ଲେଖାପଢ଼ାରେ କାଳେ ମନଯୋଗ ନ ଦେବି, ସେଥିପାଇଁ ଉତ୍ସାହର ସହ ନାନା ପ୍ରସଙ୍ଗ ପକାଉଥିଲେ । ମୋର ପଢ଼ାପଢ଼ି ତୁଳନାରେ ଯେ ଲେଖାଲେଖି ଅତି ଅଳ୍ପ ହେଉଛି, ସେ ବିଷୟରେ ମତେ ସଚେତନ କରି ଦେଉଥିଲେ । ତାଙ୍କର ଅବର୍ତ୍ତମାନରେ ଆଜି ଏପରି ଅନେକ ସ୍ମୃତି ମନ ମନ୍ଥନ କରୁଛି । ସେ ଥିଲେ ସୁଖଦୁଃଖର ଜଣେ ସାଥି ।

# ସ୍ମୃତିରେ ସ୍ମୃତିରେ ଅର୍ଦ୍ଧଶତାବ୍ଦୀ :
# ମୋର ଅନ୍ତର୍ମାନସର ଶିବରାମ

ଡକ୍ଟର ରମେଶ ପ୍ରସାଦ ପାଣିଗ୍ରାହୀ

୧୯୫୪ କି' ୫୫ ଠିକ୍ ମନେ ପଡୁନି । 'ଶ୍ରୀ ରାଜାଙ୍କ ହାଇସ୍କୁଲ' ଧରାକୋଟରେ ମୁଁ ସପ୍ତମ ଶ୍ରେଣୀର ଛାତ୍ର । ମୋ' ବୋଉର ସଂଗାତ ପୁଅ ଅର୍ଥାତ୍ ମୋ' ସଂଗାତ ଭାଇ ଚି. ଶ୍ରୀନିବାସ ପାତ୍ରଙ୍କର ବାହାଘର ହେଲା ଗୁଣ୍ଡୁପଡ଼ାରେ । ବାହାଘରଟା ଏବେବି ମନେଅଛି ଦୁଇଟି କାରଣରୁ । କନ୍ୟାକୁ ଛାଡ଼ିବା ପାଇଁ ଅନେକ ସ୍ତ୍ରୀ ଲୋକ ଆସିଥିଲେ ଗୁଣ୍ଡୁପଡ଼ାରୁ ଏବଂ ଗୋଟେ ଗୋଟେ ସୁନାହାର ପିନ୍ଧିଥିଲେ ଯାହାର ଓଜନ ୨ କିଲୋଗ୍ରାମ୍ ହେବ । ମନେରଖିବାର ଦ୍ୱିତୀୟ କାରଣ ହେଲା ସେଇଠି ମୁଁ ହାଫ୍ ପେଣ୍ଟ୍ ପିନ୍ଧା ଗୋଟିଏ ପିଲାକୁ ଦେଖିଥିଲି ମୋ' ବଅସର । ତା' ନାଁ ଶିବରାମ ପାତ୍ର । ଚିନି ଆନା (ଶ୍ରୀନିବାସ ପାତ୍ର)ଙ୍କୁ ଡରିଡରି ପଚାରିବାରୁ କହିଥିଲେ : ସିଏ ମୋର ଶଳା ହବ ଗାଁ ହିସାବରେ ।

ମାଟ୍ରିକ୍‌ରେ ମୋର ୨ୟ ଶ୍ରେଣୀ ହେଇଯିବାରୁ ଓ ମୁଁ ପାଠ ଢଙ୍ଗାରୁ ଘୋଷି ପାରୁନଥିବାରୁ ମତେ କଲେଜରେ ପଢ଼ାଗଲା ନାହିଁ । ୬୦ଟଙ୍କାରେ ମୁଁ ଚାକିରୀ କଲି ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ, ଆସ୍କାରେ । ଦିନେ ଆସିକା ଟାଉନ୍ ହଲ୍‌ରେ କୃଷ୍ଣସିଂହ ଜୟନ୍ତୀ ଉତ୍ସବ ହେଲା, ୧୯୬୧ ମସିହା । ସେଇଠି ମୁଁ, ହାଫ୍ ପ୍ୟାଣ୍ଟ୍ ପିନ୍ଧା ରମେଶ ପାଣିଗ୍ରାହୀ, କୃଷ୍ଣସିଂହଙ୍କ ଉପରେ ଭାଷଣ ଦେଲାବେଳେ ସେଇଠି ଆଉ ଗୋଟେ ପିଲା ହାଫ୍ ପେଣ୍ଟ୍ ପିନ୍ଧି ଭାଷଣ ଦଉଥିଲା ।

ସଭା ସରିଲା ପରେ ତାଂକ ପାଖକୁ ଯାଇ ମୁଁ ପଚାରିଲି, 'ତମକୁ କୋଉଠି ଦେଖିଲା ପରି ଲାଗୁଚି ।'

-ତମ ଗାଁରେ.. ତମକୁ ସେଦିନ ସେ ବିଭାଘରେ ଦେଖିଥିଲି, ମୋ ନାଁ ଶିବରାମ ପାତ୍ର । ''

- 'ତମେ ଏଇଠେ କିସ କରୁଚ ?''

- ହରିହର ହାଇସ୍କୁଲରେ ପଢୁଛି ।

- ଆରେ ହଁ ହଁ ତମର ଗୁଣ୍ଡୁପଡ଼ାଟି !''

ଶିବରାମ ହସିଲେ । ମୁଁ ଭାବିଲି, ଗୁଣ୍ଡୁପଡ଼ା ଲୋକ ବଢ଼ିଆ ଭାଷଣ ଦଉଛନ୍ତିତ ! ତାପରେ ଲାଗିଲା, ଆସ୍କା ଭଳି ସହରରେ ମଧ୍ୟ ମୋର ଚିହ୍ନା ଲୋକ ଅଛନ୍ତି । ଭଲ ଲାଗିଲା ।

ତାପରେ ଅନେକ ଦିନ । ମସିହା ୧୯୬୮ । ମୁଁ ଆସ୍କା ଛାଡ଼ି ଭାରତୀୟ ଡାକ ଓ ତାର ବିଭାଗରେ ଚାକିରୀ କରିଛି । ରେଭେନ୍ସାରୁ ବି.ଏ.ପାଶ୍ କରି ଖଲ୍ଲିକୋଟ କଲେଜରେ ଇଂରାଜୀରେ ଏମ୍.ଏ. କରୁଛି ।

ମୋର ବଂଧୁ ଶ୍ରୀନିବାସ ମହାନ୍ତି (ବର୍ତ୍ତମାନ ସ୍ୱର୍ଗତଃ) 'କଳାଶ୍ରୀ ଥିଏଟର' ଗଢ଼ିଛି । ଏବଂ ବ୍ରହ୍ମପୁରରେ ଆସି ଆମେ ଗଂଜାମ କଳା ପରିଷଦରେ ନାଟକ କରିଛୁ । ଆମ ଧରାକୋଟର ଚିତ୍ରଶିଳ୍ପୀ ୰ବିପିନ୍ ବିହାରୀ ସାହୁ ମତେ ଆଣି 'ଗଂଜାମ କଳା ପରିଷଦ'ରେ ପୁରେଇଛଂତି ।

ସେଇଠି ଗୋଟେ ଚିତ୍ର ପ୍ରଦର୍ଶନୀର ଆୟୋଜନ କରାଗଲା, ସେଇଠିକି ଆସିଥିଲେ ଦିଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ ଦିନନାଥ ପାଠୀ ଓ ତାଂକ ସାଂଗରେ ଶିବରାମ । ମତେ ପରିଚୟ କରେଇଦେଲେ ଦିନନାଥ ପାଠୀଙ୍କ ସହ । ସେଇଠୁ ମୁଁ ଜାଣିଲି ତୁହେଁ ଭୁବନେଶ୍ୱରରେ ବି.ଏ. ପଢୁଛନ୍ତି ।

ସତୁରି ଦଶକରେ ମୁଁ ବିକ୍ରମଦେବ ମହାବିଦ୍ୟାଳୟ, ଜୟପୁରରେ ଇଂରାଜୀ ଅଧ୍ୟାପକ ଥାଏ । ହଠାତ୍ ଖଣ୍ଡେ ଚିଠି ପାଇଲି ଗୁଣପୁରରୁ । ଶିବରାମ ପାତ୍ର ଗୁଣପୁରରେ ଓଡ଼ିଆ ଅଧ୍ୟାପକ । ସେଇଠି ସେ ଏକ ସାହିତ୍ୟ ସଂସଦ ତିଆରି କରିଛଂତି । ଇନ୍‌ଲ୍ୟାଣ୍ଡ ଚିଠିରେ, ଖଣ୍ଡିଏ ପତ୍ର-ମାଗାଜିନ୍,'ବସୁଂଧରା' ।

୧୯୭୦ ମସିହାରେ ମୋ' ବାହାଘର ପରେ ଘଟିଲା ଶିବରାମଙ୍କ ସହ ମୋ' ସଂପର୍କର ଏକ ରୂପାନ୍ତର । ମୋ' ଶ୍ୱଶୁରଙ୍କର ଶ୍ୱଶୁରଘର ଥିଲା ଖଣ୍ଡବନ୍ଧ ଓ ଗୁଣ୍ଡୁପଡ଼ା (ଶିବରାମଙ୍କ ଗାଁ) ଦୁଇଟି ଅଲଗା ଗାଁ ହେଲେ ମଧ୍ୟ ଅତି ପାଖାପାଖି । ମନେହବ ଗୋଟିଏ ଗାଁର ଦୁଇଟି ସାହି ପରି । ଶିବରାମ ମୋ' ଶାଶୁଙ୍କୁ 'ନାନୀ' ବୋଲି ଡାକୁଥିଲେ । ସେଇଦିନଠୁ ଶିବରାମ ହେଇଗଲେ ମୋର ମାମୁଁ ଶ୍ୱଶୁର, ତା'ପରଠୁ ଯେତେ ମୁଁ ତାଂକୁ ଲେଖିଚି- 'ମାମୁଁ ଶ୍ୱଶୁର' ବୋଲି ସମ୍ବୋଧନ କରି ଲେଖିଚି । ୧୯୭୧, ପୂଜା ଛୁଟିରେ ମୁଁ ଜୟପୁରରୁ ବ୍ରହ୍ମପୁର ଆସିଲି । ସକାଳୁ ସକାଳୁ 'ଗଂଜାମ କଳା ପରିଷଦ' ଆସିଲା ବେଳକୁ ଗୋପାଳ ରଥ ଓ ଶିବରାମ ପରିଷଦର ଉପର ଘରେ ନିଜ ନିଜ ଘରୁ ଗୁଡ଼ାଏ ବହି ଓ ମାଗାଜିନ୍ ଆଣି ସଜଉଛନ୍ତି । ସକାଳ ଆଠଟା, ମୁଁ ପଚାରିଲି : ମାମୁ ଶ୍ୱଶୁର, ଘଟଣା କ'ଣ ? ଶିବରାମ କହିଲେ, ଆଜି ନବମୀ । କାଲି ଦଶହରାରେ ଆମେ ଏଇଠି ଆରମ୍ଭ କରିବା 'କଳିଙ୍ଗ ସାହିତ୍ୟ ସମାଜ', ଗୋପାଳ କହିଲା, 'ଯାଅ ତମ ଘରେ ଯାହା ବହି ଆଉ ମାଗାଜିନ୍ ଅଛି ନେଇ ଆସ ।' ମୁଁ ତୁରନ୍ତ ସାଇକଲ ମାରି ଘରକୁ ଯାଇ ଗୋଟେ ଅଖା ବସ୍ତାରେ ମାଗାଜିନ୍ ଆଉ ବହି ଭର୍ତ୍ତିକରି ୯ଟା ବେଳକୁ ପହଂଚିଲି, 'କଳିଙ୍ଗ ସାହିତ୍ୟ ସମାଜ' ପାଇଁ ଏଇଟା ଥିଲା ଗୋଟେ ପାଠାଗାରର ବ୍ୟବସ୍ଥା । 'ଉତ୍କଳ ଆଶ୍ରମ' ଏବେ ଯାଗା ଦେଲା କଳିଙ୍ଗ ସାହିତ୍ୟ ସମାଜକୁ । ଉତ୍କଳ ଆଶ୍ରମର ମୁଖ୍ୟ ବସନ୍ତ ପାଣିଗ୍ରାହୀ ଜାଣିନଥିଲେ ଗୋଟେ ମହାଦ୍ରୁମର ମଂଜି ପୋତାହେଲା ବୋଲି ।

ଗୋପାଳ, ଶିବରାମ ଆଉ ମୁଁ ଦିନ ୨ଟା ପର୍ଯ୍ୟନ୍ତ ବହି ସଜେଇଲୁ । ପୁଣି ସଂଧ୍ୟାବେଳେ ଆସି ବଳକା କାମ କ୍ୟାଟାଲଗ୍ ଓ ଖାତା ଇତ୍ୟାଦି ତିଆରି କଲୁ । 'ପରିଷଦ'ରେ ଆର୍ଟ୍ଟର ହରିଶରଣ ଡ୍ରଇଂ ମାଷ୍ଟ୍ରେ ଗୋଟେ ବଡ଼ ପ୍ଲାଇ କଟ୍-ଆଉଟ୍‌ରେ ସରସ୍ୱତୀ ମୂର୍ତ୍ତିଟିଏ (୬ଫୁଟ ଉଚ୍ଚ) ତିଆରି ଥାନ୍ତି । ସେଇଟା କେବେ ପୂଜା ହୁଏ ନାହିଁ । ନାଚ କ୍ଲାସ ଭିତରେ ସେମିତି ଥାଏ । ଗୋପାଳ ଧୂପକାଠି ଲଗେଇଲା ସେଇଠି । ଓଡ଼ିଆରେ ମଂତ୍ର ଭଳି କବିତାଟେ ପଢ଼ିଲା । ମୁଁ ଗୋଟେ ମହମବତୀ ଲଗେଇଲି । ଶିବରାମ ଗୋଟେ ନଡ଼ିଆ ଆଣିଥିଲେ । ବାଡ଼େଇ ଦେଲେ । ଦଶହରା ଦିନ ଆରମ୍ଭ ହେଇଗଲା 'କଳିଙ୍ଗ ସାହିତ୍ୟ ସମାଜ ।' ବସନ୍ତ ପାଣିଗ୍ରାହୀ ସଂଧ୍ୟାରେ ଆସିଲେ, ଆସିଲା ପ୍ରଦୀପ ମହାପାତ୍ର 'ସଂବିତ୍' ପତ୍ରିକାର ସଂପାଦକ । ବର୍ତ୍ତମାନ ଜର୍ଣ୍ଣାଲିଜମ୍ ଡିପାର୍ଟମେଣ୍ଟରେ ସେ ପ୍ରାଧ୍ୟାପକ ।

ସେତିକିବେଳକୁ ଓଡ଼ିଶାରେ ମିନି ସାହିତ୍ୟ ଆନ୍ଦୋଳନ ଚାଲିଥିଲା । ଆମେ ପ୍ରାୟ ପ୍ରତି ସହରରୁ ଅତି କ୍ଷୁଦ୍ର ପତ୍ରିକାସବୁ ବାହାର କରୁଥିଲୁ । ପ୍ରଦୀପର 'ସଂବିତ'ପରି

'ଚକ୍ର', 'ଶାଶ୍ୱତୀ' ନାମରେ ପତ୍ରପତ୍ରିକା ସବୁ ବ୍ରହ୍ମପୁରରୁ ବାହାରୁଥିଲା, ପରେ ବାହାରିଲା 'ବୈଶାଖୀ ପତ୍ର' ଭାସ୍କର ଗନ୍ତାୟତର । ମୁଁ ଜୟପୁର ଆସି ସେଇଠୁ 'ଇତ୍ୟାଦି' ବୋଲି ଗୋଟିଏ କ୍ଷୁଦ୍ର ପତ୍ରିକା ସଂପାଦନା କରୁଥିଲି । ସବୁଠୁ ଶକ୍ତିଶାଳୀ ଗ୍ରୁପ୍ ଥିଲା କଟକର 'ଡଞ୍ଚଢ' ଗ୍ରୁପ୍ କିଂତୁ ବଲାଙ୍ଗୀରରେ ଖୁବ୍ ଭଲ ସାହିତ୍ୟ ଅଧ୍ୟାପକ ଦଳଟେ ଥାନ୍ତି : ଡ: ପ୍ରସନ୍ନ ମିଶ୍ର, ଚିନ୍ତାମଣି ବେହେରା, ରତ୍ନାକର ଚଇନି, ସନତ୍ ଦାସ ପଟ୍ଟନାୟକ ଇତ୍ୟାଦି । କୋରାପୁଟରେ ଥାଆନ୍ତି ଗାଳ୍ପିକ ନାରାୟଣ ପଣ୍ଡା ଓ ଗୁଣପୁରରୁ 'ବଂଶଧାରା ସାହିତ୍ୟ ସମାଜ'ର ପ୍ରତିଷ୍ଠାତା ଶିବରାମ ପାତ୍ର । ମଝିରେ ମଝିରେ ଜୟପୁର ଆସିଲେ ନାରାୟଣ ପାଟଣାରୁ ଆସନ୍ତି ରାମ ପାଢ଼ୀ । ଜୟପୁରରୁ ଉମାଶଙ୍କର ପଣ୍ଡା, ନବକିଶୋର ରାଜ, କୁମାର ମହାନ୍ତି । ମଝିରେ ମଝିରେ ଆମେ କୋରାପୁଟ ଯାଇ ସେଇଠି ସାହିତ୍ୟ ସଭା କରୁ ।

ଥରେ ନବକିଶୋର ରାଜ (ଇନ୍‌କମ୍ ଟ୍ୟାକ୍ସ ଅଫିସର), କୁମାର ମହାନ୍ତି (ଜୟପୁର ଡ଼ି.ଏସ୍.ପି) ବିପ୍ର ଆଚାର୍ଯ୍ୟ (କୋରାପୁଟ ଏସ୍.ପି.) ଅଧ୍ୟାପକ ନାରାୟଣ ପଣ୍ଡା, ଶିବରାମ ପାତ୍ର ଓ ମୁଁ ଜଗନ୍ନାଥ ମନ୍ଦିର ପାହାଡ଼ରେ ରାତି ବାରଟା ବେଳେ କବିତା ପାଠୋତ୍ସବ କଲୁ । ଭୀଷଣ ଶୀତ ହେଉଥାଏ । ସେଇଠି ପଢ଼ା ହେଇଥିଲା ନାରାୟଣ ପଣ୍ଡାଙ୍କର 'ଶବସ୍ୱପ୍ନ' ଗଳ୍ପ, ତାପରେ ଗଲୁ କୁମାର ମହାନ୍ତି ଘରକୁ ।

୧୯୭୪ ମସିହା । ଶିବରାମ ଥାଆନ୍ତି ଗୁଣୁପୁରରେ, ଏକା ସାଂଗରେ ସେଇଠୁ ଚାଲିଥାଏ 'ବଂଶଧାରା ସାହିତ୍ୟ ସମାଜ ' ଓ କଳିଙ୍ଗ ସାହିତ୍ୟ ସମାଜ'ର କାର୍ଯ୍ୟ, ଶିବରାମ ବ୍ୟସ୍ତ ହୋଇପଡ଼ନ୍ତି ଏବଂ ତାଂକର ଯିବା ଆସିବା ଲାଗି ରହିଥାଏ ।ଗୁଣୁପୁର ଓ ବ୍ରହ୍ମପୁର ଭିତରେ ।

ମୁଁ ଜୟପୁରରୁ ବଦଳି ହୋଇ ଆସିଥାଏ ପୁରୀ । କୁମାର କୋରାପୁଟରୁ ସମ୍ବଲପୁର ଯାଇ ସେଇଠି ଆସି ପୁରୀରେ ଥାଏ । ପୁରୀରେ ଆମେ କରିଛୁ 'ଅନାମ ସାହିତ୍ୟ ଆନ୍ଦୋଳନ' ଏବଂ 'କ୍ଷିତି ମୈତ୍ରୀ' ନାମକ ଏକ ସାଂସ୍କୃତିକ ଅନୁଷ୍ଠାନ । ମଝିରେ ମଝିରେ ଶିବରାମ ପୁରୀ ମଧ୍ୟ ଆସୁଥିଲେ । ୧୯୭୪ ମସିହାରେ 'କଳିଙ୍ଗ ସାହିତ୍ୟ ସମାଜ'ର ୪ର୍ଥ ଜନ୍ମ ବାର୍ଷିକୀ ପାଳିତ ହେଉଥାଏ ୨୮ ଓ ୨୯/୯/୧୯୭୪ ମସିହାରେ ଦୁଇଦିନ ଧରି । ଶିବରାମ ମତେ ୨୯/୮/୧୯୭୪ ଦିନ ଦେଇଥିବା ଏକ ପତ୍ରରୁ 'କଳିଙ୍ଗ ସାହିତ୍ୟ ସମାଜ'ର କାର୍ଯ୍ୟକ୍ରମ ସଂପର୍କରେ ଜାଣିହେବ ।

କିଂତୁ ଚିଠିଟି କହିବ 'କଳିଙ୍ଗ ସାହିତ୍ୟ ସମାଜ'ର 'ସାହିତ୍ୟ ପତ୍ର'ରୁ ପ୍ରକାଶ ପାଉଥିବା ପତ୍ରିକା ଓ ସାହିତ୍ୟ ଅଧିବେଶନ ଗୁଡ଼ିକର କାର୍ଯ୍ୟକ୍ରମ ଗୁଡ଼ିକ ସଂପର୍କରେ । କହିବ 'ଅନୁପମା' ନାମକ ସାହିତ୍ୟ ଅନୁଷ୍ଠାନ ସହିତ ଶିବରାମ କିପରି ଜଡ଼ିତ ଥିଲେ ।

ଶିବରାମପାତ୍ରଙ୍କର ଘନିଷ୍ଠ ସଂପର୍କ ଥିଲା ଡ: ହରେକୃଷ୍ଣ ମହତାବ, ୰ଗୋପୀନାଥ ମହାନ୍ତି, ଶ୍ରୀ ମନୋରଞ୍ଜନ ଦାସ, ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀ ରମାକାନ୍ତ ରଥ, ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଶ୍ରୀ ବଂଶୀଧର ଷଡ଼ଙ୍ଗୀ ଓ ଶ୍ରୀ କମଳାକାନ୍ତ ଲେଙ୍କା ଇତ୍ୟାଦିଙ୍କ ସାଂଗରେ, ସୁରେନ୍ଦ୍ର ମହାନ୍ତିଙ୍କ ସାଂଗରେ ଘନିଷ୍ଠତା- କାରଣ ପୁରୀ ଆସିଲେ ସେ ଆମ ଅନାମ ଶିବିରର ଅତିଥି ହୋଇ ରୁହନ୍ତି ଏବଂ 'ଅନାମ ଶିବିର'ରେ ସୁରେନ୍ଦ୍ର ମହାନ୍ତିଙ୍କ ଶ୍ୱଶୁର ମଧୁ ମହାନ୍ତିଙ୍କୁ ଆମେ ସବୁ 'ବାପା' ବୋଲି ଡାକୁ । ବୁଢ଼ା ୭୫/୭୬ ବର୍ଷ

ବୟସରେ କଟକରୁ ପୁରୀ ଆସନ୍ତି ।

୧୯୮୬ ମସିହାରେ ସାହିତ୍ୟ ଏକାଡ଼େମୀ ପୁରସ୍କାର ମିଳିଲାପରେ ଗଦ୍‌ଗଦ୍ ହୋଇ ଶିବରାମ ଲେଖିଥିଲେ ଚିଠିଟିଏ । ୧୯୯୨ରେ ମୁଁ ଭୁବନେଶ୍ୱରରେ ରହିଲାପରେ ଶିବରାମ ମଝିରେ ମଝିରେ ଘରକୁ ଆସନ୍ତି । କିଂତୁ ନିଶ୍ଚୟ ଆସନ୍ତି ସାବିତ୍ରୀ ଅମାବାସ୍ୟା ପୂର୍ବରୁ । ମୋ' ସ୍ତ୍ରୀ ହିସାବରେ ତାଙ୍କ ଭାଣିଜୀ ହେଉଥିବାରୁ ତାକୁ ପାଞ୍ଚଟଙ୍କା ବେଭାର ଦେଇ ଯାଆନ୍ତି ।

'ବେଭାର' ଗୋଟିଏ କଳିଙ୍ଗର ଶବ୍ଦ । ଏହି ଶବ୍ଦଟି କଳିଙ୍ଗର ସାଂସ୍କୃତିକ ଚଳଣି 'ବ୍ୟବହାର'ର ଏକ ଅବକ୍ଷୟିତ ପ୍ରୟୋଗ, ଭାଣିଜୀକୁ ପାଞ୍ଚଟଙ୍କା ଦିଆଯାଉଥିଲା ସାବିତ୍ରୀର ଚୁଡ଼ିଖର୍ଚ୍ଚ ପାଇଁ ଏକ ପ୍ରତୀକ ରୂପେ, ଶିବରାମଙ୍କୁ ସେ ବୁଝେ ତା' ବୋଉ ଆଡ଼ର ସଂପର୍କୀୟ ମାମୁଁ ବୋଲି । ସିଏ ଜାଣିନଥିଲା ଶିବରାମ ଓ ମୋ ଭିତରେ ଥିବା ଏକ ବ୍ୟକ୍ତିଗତ ସଂପର୍କ କିପରି ଏକ ସାରସ୍ୱତ ସଂପର୍କରେ ରୂପାନ୍ତରିତ ହୋଇଯାଇଛ । ଏବଂ ଭୁବନେଶ୍ୱରରେ ରହିଲା ପରେ ଦୀନନାଥ ପାଠୀ, ଶିବରାମ ଓ ମୋର ସଂପର୍କ କିପରି ଏକ ସାଂସ୍କୃତିକ ସଂପର୍କରେ ପୁଣି ବଦଳୁଛି ।

ଜୀବନ ସାରା ସାହିତ୍ୟ ସଂଗଠନ କରି ସାହିତ୍ୟିକ, ଶିଳ୍ପୀ ଓ କଳାକାରମାନଙ୍କୁ ପ୍ରୋତ୍ସାହନ ଓ ପୃଷ୍ଠପୋଷକତା ଯୋଗାଇଦେବାର ସଂଗଠକ ଥିଲେ ଶିବରାମ ।

ଏବେ ଉତ୍ତୀର୍ଣ୍ଣ ବୟସରେ ମୁଁ ବୁଝୁଛି, ଆମେ ସବୁ ସଂକୀର୍ଣ୍ଣ ସ୍ୱାର୍ଥପରତାର ଉଦ୍ଧ୍ୱ'ରେ ଥିବା ଗୋଟିଏ ଗୋଟିଏ ପରଦେଶୀ ଚଢ଼େଇ । ପରିବାର ଭିତରେ ବାନ୍ଧିହୋଇ ରହିବା 'ଦ୍ୱିପଦ ପ୍ରାଣୀ' ତାଲିକାରେ ରହିବାକୁ ଆମେ ଚାହିଁନାହୁଁ । ସେମିତି ଚାହିଁନଥିଲେ ଶିବରାମ । ଓଡ଼ିଶାର ବିଭିନ୍ନ ସହରର ବିଭିନ୍ନ ସାହିତ୍ୟ ଆନ୍ଦୋଳନର ସେ ଥିଲେ ଜଣେ ସକ୍ରିୟ ସହଯୋଗୀ । ନିଜର ୩ଟି ଅନୁଷ୍ଠାନ (ବଂଶଧାରା ସାହିତ୍ୟ ସମାଜ,କଳିଙ୍ଗ ସାହିତ୍ୟ ସମାଜ ଓ ସାହିତ୍ୟପତ୍ରର ସଂପାଦନା)କୁ ସଂଭାଳିଲାବେଳେ ତାଂକ ପତ୍ନୀଙ୍କୁ ଅନେକ ଦାୟିତ୍ୱର ବୋଝ ମୁଣ୍ଡେଇବାକୁ ପଡ଼ିଥିବ । ଶୋଭନାକୁ ବଡ଼ କରିବାପାଇଁ ଅନେକ ମାନସିକ ଏକାକୀତ୍ୱର ସାମ୍ନା କରିବାକୁ ପଡ଼ିଥିବ । ଶିବରାମଙ୍କ ଆଦର୍ଶ ଓ ଆକାଶ ଖୋଜା ସ୍ୱପ୍ନ-ପ୍ରକଳ୍ପ ଭିତରେ ଶୋଭନା କେମିତି 'ଲାଭା' ଓ 'ପ୍ୟୁପା'ରୁ ପ୍ରଜାପତି ହେଲା ଜାଣିନି । ଖାଲି ଜାଣିଛି ଶିବରାମଙ୍କ ସ୍ୱପ୍ନ-ପ୍ରକଳ୍ପର ସିଏ ଉତ୍ତରାଧିକାରୀ ହେବାର ସାହସ ରଖିଛି । ହେଇପାରେ ତା' ପୂର୍ବରୁ, ଅଂଶୁଘାତର ସମୟ, ହଠାତ୍ ଦିନେ ଖରାବେଳେ ଶିବରାମ ଆସି ପହଂଚିଲେ । ମହାବାତ୍ୟା ବର୍ଷ ବୋଧହୁଏ । ଖରାଦିନର ଉତ୍ତପ୍ତ ଅପରାହ୍ନରେ । ମୁଁ ପଚାରିଲି : 'ମାମୁଁ ଶ୍ୱଶୁର ! ହଠାତ୍ ଏଇ ଅବେଳରେ ?' ଖୁସି ହେଇ କହିଲେ ସୁରେନ୍ଦ୍ର ମହାନ୍ତିଙ୍କର ସ୍ମରଣୀୟ ବାକ୍ୟ ଗୁଡ଼ିକର ଗୋଟିଏ ସଂଚୟନ କରିବା, ଆଇଡ଼ିଆଟା ତମକୁ କେମିତି ଲାଗୁଚି ?' ମୁଁ କହିଲି, 'ଚମତ୍କାର ! କିଂତୁ ବାଛିବ କେମିତି ? ତମେ କଣ ସୁରେନ୍ଦ୍ର ମହାନ୍ତିଙ୍କର ସବୁ ବହିପଢ଼ି ଉଦ୍ଧୃତି ଗୁଡ଼ାକ ଉପରେ ଗାର ମାରିଚ ?' କହିଲେ, 'ହଁ ।'

ରାଜ୍ୟସାରା କବିତାର ସୁଅ ଛୁଟୁଥିଲାବେଳେ ଶିବରାମଙ୍କର ପ୍ରଚୁର ଆଗ୍ରହ ଥିଲା ଓଡ଼ିଆ ଗଦ୍ୟ ସାହିତ୍ୟ ପ୍ରତି । ଚିତ୍ତରଂଜନ ଦାସଙ୍କର 'ଜାତିରେ ମୁଁ ଯବନ' ବହିଟା ପଢ଼ି ପ୍ରଥମେ ସିଏ ହିଁ ମତେ କହିଥିଲେ, ଓଡ଼ିଆ ସାହିତ୍ୟରେ ଇଏ ଜଣେ ପ୍ରଚଣ୍ଡ ପ୍ରତିଭା ତାପରେ

କଟକରେ ମୁଁ ଚିତ୍ତରଂଜନ ଦାସଙ୍କର ନିକଟବର୍ତ୍ତୀ ହେଲି । ସିଏ ହେଇଗଲେ ଚିତ୍ତରଂଜନ ଦାସରୁ ମୋ ପାଇଁ ଚିତ୍ତଭାଇ । ତାଙ୍କର ପ୍ରଚୋଦନାରେ ଉଦ୍‌ବୁଦ୍ଧ ହେଇ ମୁଁ ପରୀକ୍ଷାମୂଳକ ନାଟକରୁ ଗଣାଭିମୁଖୀ ଯାତ୍ରା ନାଟକ ଭିତରକୁ ପଶିଥିଲି । ମୋର ସତ୍ୟପ୍ରକାଶର ନଗ୍ନ ପ୍ରୟାସକୁ ସେ 'ଉଗ୍ରବାଦ' ବୋଲି କହନ୍ତି । କହିଲେ-ମୁଁ ଏୟା କହୁନାହିଁ-ଗୋପୀ ମହାନ୍ତି ତମ ଲେଖାପଢ଼ି ତମକୁ ଉଗ୍ରବାଦୀ ବୋଲି କହିଲେ ।

ଶେଷଥର ଦେଖାହେଇଥିଲା ଦିନେ ଶୀତଦିନ ସକାଳ ନ'ଟା ବେଳେ ଦିନନାଥଙ୍କୁ ନେଇ ସେ ଆମ ଘରକୁ ଆସିଥିଲେ । ସେଦିନ ଶିବରାମ ଟିକିଏ ଗମ୍ଭୀର ଥିଲେ । କଣ ହେଇଚି ବୋଲି ପଚାରିବାରୁ ଶୋଭନାର ରମାକାନ୍ତଙ୍କ ସାଂଗରେ ବାହାଘର ପ୍ରସ୍ତାବ କଥା ଉଠେଇଲେ । ଦିନନାଥ ବାବୁ ଥିଲେ । ରାଉରକେଲାରୁ ଶେରଗଡ଼ ପାଟପୁରର ରାଜେନ୍ଦ୍ର ପଣ୍ଡା ବୋଲି ଜଣେ ନିର୍ଦ୍ଦେଶକ ମଧ୍ୟ ଥିଲେ । ଆମେ ଦେଖିଲୁ ଶିବରାମଙ୍କ ଆକାଶ-ଖୋଜା ପ୍ରକଳ୍ପ ବି ପଶି ଆସିଚି ଜୀବନଚର୍ଯ୍ୟା ଭିତରକୁ । ତାହା ଏକ ସାଂସ୍କୃତିକ ସମନ୍ୱୟର ପ୍ରକଳ୍ପ । ଆମେ ଉଲ୍ଲସିତ ହୋଇ 'ସବୁଜ ସଂକେତ'ଦେଇଥିଲୁ ବିବାହ ପାଇଁ । ସତେ ଯେମିତି ଦିଲ୍ଲୀରୁ ସମନ୍ୱୟର ଟ୍ରେନ୍‌ଟା ଲାହୋର ଯାଉଛି । ଆମେ ସବୁଜ ପତାକା ଉଡ଼େଇଦେଲୁ । ଦିନେ ଯାତ୍ରୀନିବାସରେ ରମାକାନ୍ତଙ୍କ ସାଂଗରେ ଦେଖା ମଧ୍ୟ ହେଲା । କହିଥିଲି 'ଶୋଭନାକୁ ଜାଣିଛି । ତା'ଭିତରେ ଗୋଟେ ସ୍ଫୁଲିଙ୍ଗ ଅଛି ।'

ତା'ପରେ ଆଉ ଶିବରାମ ସାଂଗରେ ସାକ୍ଷାତ୍ ହେଇ ନାହିଁ । ତାଂକ ପାଖକୁ ମୋର ଗୋଟେ ଚିଠି ଲେଖିବାକୁ ଇଚ୍ଛା ହଉଚି । ହେଲେ ଜାଣିନି ତାଙ୍କରି ଠିକଣା । ଯଦି ରମାକାନ୍ତ କି ଶୋଭନା-କିଏ ଜାଣିଥିବେ- ଯଦି ତାଙ୍କରି ପତ୍ନୀ ଜାଣିଥିବେ-ସେଇ ଆକାଶ ଖୋଜୁଥିବା ମଣିଷଟାର ଆକାଶୀ ଠିକଣା-ତା'ହେଲେ-ଅନୁରୋଧ କରିବି ଶୋଭନାକୁ ଏ ଚିଠିଟା ତାଙ୍କ ପାଖକୁ ପଠେଇ ଦେବେ ।

ଶ୍ରଦ୍ଧେୟ ମାମୁଁ ଶ୍ୱଶୁର, ମକର ସଂକ୍ରାନ୍ତିର ସମ୍ମାନ ପଠଉଚି ।

ତମେ ଗଲାଦିନ ମୁଁ ତମଠୁ ବିଦାୟ ନେଇ ପାରିଲି ନାହିଁ । ରାଗିଥିବ ସେଥିପାଇଁ । ସେଦିନ ଖାଡ଼େଙ୍ଗା ମାଷ୍ଟ୍ରଙ୍କର ପ୍ରହ୍ଲାଦ ନାଟକ ଦଳକୁ ନେଇ ମୁଁ କାଞ୍ଚିପୁରମ୍ ଚାଲିଗଲି । ଗୋଟେ ସର୍ବଭାରତୀୟ ଲୋକନାଟକ ମହୋତ୍ସବରେ ଯୋଗଦବାପାଇଁ । ଆସିଲା ପରେ ଶୁଣିଲି, ତମେ ହଠାତ୍ ତମର ଆକାଶ-ଖୋଜା ପ୍ରକଳ୍ପରେ ଚାଲିଯାଇଛ । ନ ଫେରିବା ଯାଗାକୁ ।

ଦୁଇଦିନ ହେଲା ମନେ ପଡୁଥିଲା । ମନେ ପଡୁଥିଲା, ଶୋଭନା ଫୋନ୍ କଲା ପୂର୍ବରୁ । ମନ୍ମଥ ଶତପଥୀ ଫୋନ୍ କରିଥିଲା । ଦିନନାଥ ବାବୁ, ପ୍ରଶାନ୍ତ ବାବୁ ଇତ୍ୟାଦିଙ୍କୁ ମିଶାଇ ଗୋଟେ ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ସଂଘ ତିଆରି ହେଇଚି । ଏପ୍ରିଲ ୨୬ ତାରିଖ ଦିନ ଏଇଠି କୃଷ୍ଣଚଂଦ୍ର ଗଜପତିଙ୍କର ଜନ୍ମଦିବସ ପାଳନ ଅବସରରେ ତମ ସାଂଗରେ ଭେଟ ହେଇଥିଲେ ତମେ କେଡ଼େ ଖୁସି ହେଇଥାନ୍ତ ! ତମେ ଯୋଉଦିନ ଖରାବେଳେ ସୁରେନ୍ଦ୍ର ମହାନ୍ତିଙ୍କ ଗ୍ରଂଥରୁ ଉଦ୍ଧୃତି ଗୁଡ଼ିଏ ଆଣି ସଂକଳନଟିଏ କରିବ ବୋଲି କହୁଥିଲ, ସେଦିନ ତମକୁ କହୁଥିଲି ଦୁର୍ଗା ପଣ୍ଡାଙ୍କ ସହ ଦେଖା ହେଇଥିଲା । ସନ୍ତୋଷ ଶତପଥୀ କହୁଥିଲା, ଗୋଟେ ଏକାଠି ହେବା କାର୍ଯ୍ୟକ୍ରମ କରିବାକୁ ଯାଉ ଯାଉ ତାର ହଳେ ଚୂଆ ଚପଲ ଘୋରି ହେଇଗଲା । ତମେ କହୁଥିଲ, ପ୍ରଥମେ ଦକ୍ଷିଣ ଓଡ଼ିଶାର ଯୋଉ ଲୋକ

ଏଇଠି ଅଛଂତି, ତାଙ୍କର ଗୋଟେ ଠିକଣା ବହି କରିବାପାଇଁ । ତମେ ଚାଲିଗଲାପରେ ମୁଁ ମନ୍ମଥକୁ କହିଥିଲି । ମନ୍ମଥ କହୁଚି ହେଇଗଲା ବୋଲି । ଯଦି ହେଇ ନ ପାରୁଚି, ତମେ ଯୋଉଠି ଅଛ ସେଇଠି କରିବା, ଯାଗା ରଖିଥିବ । ଆମେ ଯାଉଛୁ । ଆଜି ମକର ସଂକ୍ରାନ୍ତି । ମୁଁ ଜାଣିନି, ଶୋଭନା ତମ ପାଇଁ 'ଚଂଦ୍ରକାନ୍ତି' କି 'ଅବାଟ୍ଲୁ' କିଛି ପଠେଇଲା କି ନାହିଁ !

ଭୁବନେଶ୍ୱର
ମକର ସଂକ୍ରାନ୍ତି : ୨୦୦୬

ଇତି ତମର
ରମେଶ

୧୦୫,ରସୁଲଗଡ଼,ଭୁବନେଶ୍ୱର-୧୦

## ଗଲେ ଯେ ଆଉ ବାହୁଡ଼ିବାର ନାଁ ଗନ୍ଧ ନାହିଁ

ସୌଭାଗ୍ୟ କୁମାର ମିଶ୍ର

ଦିନେ ଏଗାରଟା ସରିକି ହେବ ବନ୍ଧୁ ପ୍ରମୋଦ ମିଶ୍ର ଆମ ଘରେ ଆସି ପହଞ୍ଚିଲେ । ହାତରେ ଧରିଥିଲେ ଚାରିଖଣ୍ଡ କୁନ୍ଦୁରି ଡଙ୍କ । କହିଲେ, ଶିବରାମବାବୁ ପଠାଇଛନ୍ତି, ଆପଣ ଦି'ଖଣ୍ଡ ରଖନ୍ତୁ, ମୁଁ ଦି ଖଣ୍ଡ ନେଉଛି । ମୁଁ ସେଇଦିନ ଉପରଓଳି ସେ ଡଙ୍କ ବାଡ଼ିରେ ପୋତି ପାଣି ଢାଳିଦେଲି । ଏବେ କୁନ୍ଦୁରି ଲଟା ମଞ୍ଚା ଉପରେ ଗହଳିଆ ହୋଇ ମାଡ଼ିଛି । ତା'ଉପରେ ଆଖି ପଡ଼ିଗଲେ ମୋତେ ଶିବରାମବାବୁଙ୍କ ହସ ହସ ମୁହଁ ଦିଶିଯାଏ । ସାଧାରଣ, ନଗଣ୍ୟ ଲଟାଟି ତାଙ୍କର ଅସାଧାରଣ ଶ୍ରଦ୍ଧା ଓ ଘରୁଆପଣର ପ୍ରତୀକ ହୋଇଯାଇଛି ଆମ ଲାଗି ।

ଏମିତି ଅତି ଆନ୍ତରିକ ସ୍ତରରେ ହିଁ ଆମ ସମ୍ପର୍କ ଗଢ଼ି ଉଠିଥିଲା । ଆଉ ସେ ସମ୍ପର୍କ ଅନେକ ଦିନର, ପ୍ରାୟ ତିରିଶ ପଇଁତିରିଶ ବର୍ଷର । ୧୯୬୫ରୁ ୧୯୭୫ ଯାଏଁ ମୁଁ ରେଭେନ୍ସା ଓ ବି.ଜେ.ବି କଲେଜ୍‌ରେ ଅଧ୍ୟାପକ ଥିଲି । ସେଇ ସମୟରେ ମୋର ଯେତେ କବିତା, ପତ୍ରପତ୍ରିକା ଓ ବହିରେ ବାହାରୁଥିଲା ଶିବରାମବାବୁ ସେସବୁ ପଢ଼ି ମୋତେ ଚିଠି ଲେଖୁଥିଲେ । ସେ ଆମ କଟକ ଘରକୁ ଅନେକ ଥର ଆସିଛନ୍ତି । ସାହିତ୍ୟ, ବିଶେଷ କରି କବିତା ସମ୍ବନ୍ଧରେ ଆଲୋଚନା ହୋଇଛି ।

ମୁଁ ଭଞ୍ଜବିହାର ଯିବା ପରେ ଆମର ଭୌଗୋଳିକ ଦୂରତା ବହୁତ କମିଗଲା । ଘରେ, ବାହାରେ ସଭା ସମିତିରେ ଅନେକଥର ତାଙ୍କ ସାଙ୍ଗରେ କଥାବାର୍ତ୍ତା । ସାହିତ୍ୟ ପ୍ରତି ତାଙ୍କର ଆଗ୍ରହ ଖାଲି ଅଧ୍ୟାପନାର ଔପଚାରିକତା ଭିତରେ ସୀମିତ ନଥିଲା । ସେ ସାହିତ୍ୟର ଭବିଷ୍ୟତ ଆଡ଼କୁ ଦୃଷ୍ଟି ଦେଉଥିଲେ । ନୂଆ କିଛି ଦେଖିଲେ ସେ ପ୍ରଶଂସା କରୁଥିଲେ । ନୂଆ ରୀତି ଓ ଢଙ୍ଗକୁ ଉତ୍ସାହିତ କରୁଥିଲେ । ତେଣୁ ସେ ଯେଉଁ ସଭା ସମିତିର ଆୟୋଜନ କରୁଥିଲେ ସେଥିରେ ଏକ ଭିନ୍ନ ଉଦ୍ଦୀପନା ଥିଲା ।

ତେବେ ସବୁଠୁଁ ବେଶୀ ପ୍ରଭାବିତ କରିଛି ମୋତେ ତାଙ୍କ ଚେହେରା ଓ ସମ୍ଭାଷଣ । ସେ ଘରେ ଆସି ପହଞ୍ଚିବେ, ତାଙ୍କ ଝୁଲାମୁଣିକୁ ପାଖ ଚୌକିରେ ରଖିଦେଇ ବସିବେ ।

ସେ ଯାଏଁ ତାଙ୍କ ହାତ ନମସ୍କାର ମୁଦ୍ରାରେ ରହିଥିବ । ହସ କୁଶଳପ୍ରଶ୍ନ କରିବେ । ଏବଂ ଉଦ୍‌ଗ୍ରୀବ ହୋଇ ମୋ ମୁହଁକୁ ଚାହିଁ ରହିଥିବେ ସତେ ଯେମିତି ଉତ୍ତରରେ ମୋଠୁଁ ସେ ବେଦ ବା ଭାଗବତବାଣୀ ଶୁଣିବେ । ବେଳେ ବେଳେ ତାଙ୍କ ମୁହଁରେ ବିସ୍ମୟ ଭାବ ଉକୁଟିବ, ସେ ପିଲାଟିଏ ଭଳି ଦିଶିବେ । କୌଣସି କଥାକୁ ସେ ଯଦି ପସନ୍ଦ କରୁନଥିଲେ, ସେ ଏମିତି ଭାବରେ ତା' ପ୍ରକାଶ କରିବେ ଯେ ଶୁଣିବା ଲୋକକୁ ମୋଟେ ବାଧିବ ନାହିଁ । ତାଙ୍କୁ ନୂଆ କରି ଜାଣିଥିବା ଲୋକକୁ ଏସବୁ ଭାବଭଙ୍ଗୀ କୃତ୍ରିମ ଲାଗିବ । କିନ୍ତୁ ମୁଁ ଆରମ୍ଭରୁ ଶେଷଯାଏଁ ତାଙ୍କୁ ଏମିତି ଦେଖିଛି । ତାଙ୍କ ଦେହ-ଭାଷା body language ଅପୂର୍ବ ଓ ବିଚିତ୍ର ଥିଲା ।

ସେ ପ୍ରକୃତରେ ଭାରି ଘରୁଆ ମଣିଷ ଥିଲେ । ମୋ ପତ୍ନୀଙ୍କ ସାଙ୍ଗରେ ପିଲାଙ୍କ କଥାଠୁ ଆରମ୍ଭ କରି ଘରତୋଳା, ରୋଷେଇ, ପନିପରିବା କଥା ଗପିବେ । ମୋ ଲେଖାଲେଖିର ପ୍ରଶଂସା କରିବେ । ତା'ର ପ୍ରଶଂସା କରିବେ । ଶେଷରେ ସେମିତି ହସହସ ମୁହଁରେ ବିଦାୟ ନେବେ ।

ପ୍ରଥମ ଓ ଶେଷଥର ପାଇଁ ସେ ମୋତେ ବିଭ୍ରାନ୍ତ କରି ଦେଇଥିଲେ - ଆମ ଘରକୁ ଆସିବାର ଅଳ୍ପ କିଛିଦିନ ପରେ ମୋତେ ନଜଣାଇ ଆମ ସମସ୍ତଙ୍କଠୁ ସେ ବିଦାୟ ନେଇଗଲେ, ଗଲେ ଯେ ଆଉ ବାହୁଡ଼ିବାର ନାଁ ଗନ୍ଧ ନାହିଁ ।

ଆମେ ପରସ୍ପରକୁ କ୍ଷମା କରିଦେବା ପାଇଁ ବାଧ୍ୟ ।

## ଶିବରାମ ସ୍ମରଣେ

ସର୍ବେଶ୍ୱର ଦାଶ

ଶିବରାମ ମୋର ଛାତ୍ରନଥିଲେ । କିନ୍ତୁ ମୋ କଥା କିପରି ସେ ଆଗରୁ ଜାଣିଥିଲେ । ଭୁବନେଶ୍ୱରକୁ ଆସିଲାପରେ ହଠାତ୍ ଥରେ ଆସି ସାକ୍ଷାତ୍ କରନ୍ତି । ସେହି ଦିନଠୁ ବହୁବାର ମୋ ଘରକୁ ଆସିଛନ୍ତି । ତାଙ୍କର ସ୍ନେହ, ଶ୍ରଦ୍ଧା, ଭକ୍ତି ପାଇବାର ସୌଭାଗ୍ୟ ମତେ ମିଳିଛି ।

ତାଙ୍କର ରୂପରେ, ବେଶରେ ଥିଲା ଏକ ସ୍ୱାତନ୍ତ୍ର୍ୟ । ଖଦଡ଼ ଧୋତି ପଞ୍ଜାବୀ ପିନ୍ଧିଥାନ୍ତି । କାନ୍ଧରେ ଝୁଲୁଥାଏ ଗୋଟିଏ ଖଦଡ଼ ମୁଣି । ବପୁମାନ୍ ଚେହେରାରେ ଥିଲା ଏକ ବଳିଷ୍ଠ ବ୍ୟକ୍ତିତ୍ୱର ଛାପ । ଗଳାଟି ଥିଲା ପୌରୁଷ ବ୍ୟଞ୍ଜକ । ସାଧାରଣତଃ ତାଙ୍କର ଈଷତ୍ ଉଚ୍ଚକଣ୍ଠସ୍ୱର ମତେ ମନେ ପକାଇଦେଉଥିଲା । ମୋର ସ୍ୱର୍ଗୀୟ ଅଜାଶ୍ୱଶୁର ଗଣେଶ ମହାପାତ୍ର(ବ୍ରହ୍ମପୁରର ଅବସର ପ୍ରାପ୍ତ ସବ୍‌ଜଜ୍)ଙ୍କ ସ୍ୱର । ତାଙ୍କ ବିଷୟରେ ଶିବରାମ ଭଲ ରୂପେ ଜାଣିଥିଲେ । ଜାଣିଥିଲେ ମଧ୍ୟ ମୋର ପିଉସା ଶ୍ୱଶୁର ବିଶିଷ୍ଟ ଐତିହାସିକ ଅଭିଲେଖ ବିଶେଷଜ୍ଞ ସ୍ୱର୍ଗୀୟ ସତ୍ୟନାରାୟଣ ରାଜଗୁରୁଙ୍କୁ ।

ମୂଳରୁ ସେ ଥିଲେ ସାହିତ୍ୟପ୍ରେମୀ, ସେବାଧର୍ମୀ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିଲା । କଳିଙ୍ଗ ସାହିତ୍ୟସମାଜ ପ୍ରତିଷ୍ଠା କରିଥିଲେ ବ୍ରହ୍ମପୁରରେ । 'ଆଲୋକ' ପତ୍ରିକା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ଅନ୍ୟ କେତେକ ସାହିତ୍ୟପତ୍ରିକା ତଥା ଦକ୍ଷିଣାଞ୍ଚଳର ବିଭିନ୍ନ ସାହିତ୍ୟାନୁଷ୍ଠାନ ସହିତ ମଧ୍ୟ ସଂପୃକ୍ତ ଥିଲେ ।

ବିଳମ୍ବରେ ଅଧ୍ୟାପକ ବୃତ୍ତିକୁ ଆସିଲେ । ଯେଉଁ ନିଷ୍ଠା, ଉତ୍ସାହ, ସାଂଗଠନିକ ଦକ୍ଷତା ପ୍ରଥମ ଜୀବନରେ ଥିଲା ସେହି ନିଷ୍ଠା, ସାଂଗଠନିକ ଦକ୍ଷତା ଅଧିକ ପ୍ରକାଶ ପାଇଥିଲା ତାଙ୍କର ଅଧ୍ୟାପକ ଜୀବନରେ । ଶିକ୍ଷକ ରୂପେ ସୁନାମ ଅର୍ଜନ କଲେ । ସାହିତ୍ୟ ଓ ସାହିତ୍ୟିକଙ୍କ ଉପରେ କେତେ ବକ୍ତୃତା ଦେଲେ । ଲେଖକ ହେଲେ, ବଳିଷ୍ଠ ରଚନାରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କଲେ । ସାହିତ୍ୟ ସମୀକ୍ଷକ ରୂପେ ପ୍ରସିଦ୍ଧି ଲାଭ କଲେ । କେଉଁଠି ସାହିତ୍ୟ ସଭା ହେଲେ ଧାଇଁ-ଯାଆନ୍ତି । ଆଲୋଚନାରେ ଭାଗ ନିଅନ୍ତି । ବଳିଷ୍ଠ ଭାବରେ ନିଜର ମତ ଦିଅନ୍ତି, ଛାତ୍ରମାନଙ୍କର ସାହିତ୍ୟିକ ଚେତନାକୁ ଉତ୍ସାହିତ କରନ୍ତି, ଶାଣିତ କରନ୍ତି ।

ଅକସ୍ମାତ୍ ଆସି ପହଞ୍ଚନ୍ତି ମଧ୍ୟେ ମଧ୍ୟେ ମୋ ଘରେ, ବହିଥାକ ଉପରେ ଆଗ୍ରହରେ ଆଖି ବୁଲାନ୍ତି । ତାଙ୍କର ଅପଢ଼ା କିଛି କହିଥିଲେ ଆଗ୍ରହରେ ମାଗିନିଅନ୍ତି ।

ମୋର ସ୍ତ୍ରୀ ସ୍ୱର୍ଗୀୟା ବସନ୍ତକୁମାରୀଙ୍କର ପ୍ରାୟ ସବୁ ବହିରୁ ଗୋଟିଏ ଗୋଟିଏ ସେ ନେଇଥିଲେ । ଭଲ ଲାଗିବାରୁ ତାଙ୍କର ରଚନାବଳୀ ଉପରେ ଗୋଟିଏ ସମୀକ୍ଷା ଗ୍ରନ୍ଥ ପ୍ରକାଶ କରିବାକୁ ଉଦ୍ୟମ ଆରମ୍ଭ କରିଥିଲେ ଓ ସେଥିପାଇଁ କେତେକ ବିଶିଷ୍ଟ ଲେଖକ ଲେଖିକାଙ୍କୁ ବସନ୍ତକୁମାରୀଙ୍କର କୌଣସି କୌଣସି ବହି ଦେଇ ତାହା ବିଷୟରେ ଲେଖିବାକୁ ଅନୁରୋଧ କରିଥିଲେ । ତାଙ୍କର ଅକାଳରେ ଅପ୍ରତ୍ୟାଶିତ ମୃତ୍ୟୁ ହେତୁ ସେହି ଯୋଜନା କାର୍ଯ୍ୟକାରୀ ହୋଇପାରିଲାନାହିଁ । ସେ ନିଜେ ମଧ୍ୟ 'ଦର୍ଶନ' ପତ୍ରିକାରେ ବସନ୍ତକୁମାରୀଙ୍କ ବିଷୟରେ ଗୋଟିଏ ସୁଚିନ୍ତିତ ପ୍ରବନ୍ଧ ଲେଖିଥିଲେ ।

ଯେବେ ତାଙ୍କ ଗାଁ ଆଡ଼କୁ ଯାଆନ୍ତି, ଫେରିଲା ବେଳେ ମୋ ପାଇଁ କିଛି ନା କିଛି ପ୍ରାୟ ଆଣନ୍ତି । ମୋ ପାଇଁ ପାଳୁଅ, ମାଣ୍ଡିଆ ଆଣିଛନ୍ତି । କେବେ କେବେ କିଛି ଫଳ ଆଣନ୍ତି । ମତେ ଆତ୍ମୀୟ ମନେ କରୁଥିଲେ । ତାଙ୍କ ପୁଅ ଆମେରିକା ଯିବା ପୂର୍ବରୁ ତାକୁ ନେଇ ମୋ ପାଖକୁ ଆସିଥିଲେ ତା'ପାଇଁ ଆଶୀର୍ବାଦ କାମନା କରି ।

ବଡ଼ସ୍ୱଚ୍ଛନ୍ଦ, ସାବଲୀଳ, ନମ୍ର ବ୍ୟବହାର ତାଂକର ମତେ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା ।

ଦୁଇ ଥର ତାଙ୍କ ଘରକୁ ଯାଇଛି । ଥରେ ଯାଇଥିଲି ସୁରେନ୍ଦ୍ର ମହାନ୍ତିଙ୍କ ଉପରେ ତାଙ୍କ ଦ୍ୱାରା ରଚିତ ଗୋଟିଏ ସ୍ମରଣୀୟ ପୁସ୍ତକର ଉନ୍ମୋଚନ ଉପଲକ୍ଷ୍ୟେ । ପୁସ୍ତକଟି ଥିଲା ସମ୍ପୂର୍ଣ୍ଣ ନୂତନ ଧରଣର । ସୁରେନ୍ଦ୍ର ମହାନ୍ତିଙ୍କ ବିଭିନ୍ନ ରଚନାରୁ ସେ ସେହି ପୁସ୍ତକରେ ଉଦ୍ଧାର କରିଥିଲେ । ତାଙ୍କର ବିଭିନ୍ନ ପ୍ରସଙ୍ଗ ଉପରେ ଅର୍ଥପୂର୍ଣ୍ଣ ପଂକ୍ତିମାନ । ସେହି ପ୍ରଖ୍ୟାତ ସାହିତ୍ୟିକଙ୍କ ଉପରେ ଗବେଷଣା ପାଇଁ ପୁସ୍ତକଟି ବିଶେଷ ସହାୟକ ହେବ ବୋଲି ମନେ ହେଲା । ସେଦିନ ସୁଧୀ ସାହିତ୍ୟିକଙ୍କ ମଧ୍ୟରେ ତାଙ୍କର ଲୋକପ୍ରିୟତାର ପରିଚୟ ପାଇଛି । ପରିଚୟ ପାଇଲି ତାଙ୍କର ସାଂଗଠନିକ ଦକ୍ଷତାର ।

ତାଙ୍କର ପରିବାରର ଆତିଥ୍ୟ ମଧ୍ୟ ହୃଦୟସ୍ପର୍ଶୀ ହୋଇଥିଲା ଶ୍ରୀମତୀ ପାତ୍ରଙ୍କ ଦ୍ୱାରା ପ୍ରସ୍ତୁତ ପିଠା ଓ ଅନ୍ୟାନ୍ୟ ସୁସ୍ୱାଦୁ ଖାଦ୍ୟ ଖାଇ ଆନନ୍ଦରେ ଫେରିଲି ।

ଆଉଥରେ ଯାଇଥିଲି ତାଙ୍କର ମୃତ୍ୟୁରେ । ଶୋକାକୁଳ ପରିବେଶରେ ମୁଁ ମଧ୍ୟ ଶୋକ ସମ୍ବରଣ କରି ପାରିଲି ନାହିଁ । ବିସ୍ମିତ ହୋଇ ଦେଖୁଥିଲି ତାଙ୍କର ବ୍ୟକ୍ତିଗତ ପାଠାଗାର । ସୁସଜ୍ଜିତ ହୋଇ ରହିଥିଲା ମାଳ ମାଳ ପୁସ୍ତକ । ପ୍ରକାଶ କରୁଥିଲା ପୁସ୍ତକ

ପ୍ରତି, ସାହିତ୍ୟପ୍ରତି ତାଙ୍କର ଆଗ୍ରହ ।

'ସରସ୍ୱତୀ' ନାମକ ଏକ ସାହିତ୍ୟ ପ୍ରକାଶନ ସଂସ୍ଥା ଗଢ଼ିଥିଲେ । ସାହିତ୍ୟର ବିକାଶପାଇଁ ତାଙ୍କର କେତେ ସ୍ୱପ୍ନ ରହିଥିଲା । ନିଷ୍ଠୁର କାଳ ତାହା ପୂର୍ବ କରିବାକୁ ଦେଲାନାହିଁ ।

ଆଜି ସେହି କର୍ମବୀର, ଉଦାରହୃଦୟ ସାହିତ୍ୟସାଧକ ଶିବରାମଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧ ଉତ୍ସବରେ ତାଙ୍କର ସର୍ବତ୍ର ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ବିଭୁ ସାନ୍ନିଧରେ ତାଙ୍କର ଅମର ଆତ୍ମା ଚିର ଶାନ୍ତିରେ ଅବସ୍ଥାନ କରୁ । ଏତିକି ପ୍ରାର୍ଥନା କରୁଛି ।

•

୧୧୪୧/ଏରୋଡ୍ରମ୍ ଏରିଆ

ଭୁବନେଶ୍ୱର-୨୦

## ଆଖିରେ ଆଖିଏ ସ୍ୱପ୍ନ, ଛାତିରେ ଅମାପ ମମତା

ପ୍ରଫେସର୍ ସୁଦର୍ଶନ ଆଚାର୍ଯ୍ୟ

ଯିବା ଯଦି ଏକମାତ୍ର ସତ୍ୟ, ଶିବରାମ ତା'ର ବ୍ୟତିକ୍ରମ ହୁଅନ୍ତେ ବା କିପରି ! କିନ୍ତୁ ଯିବାର ତ ସମୟ ହୋଇନଥିଲା, ପାଚିଲା କିବା ହରଡ଼ଙ୍କିଆ ଉର୍ବାରୁକ ପରି ତ ସେ ହୋଇଯାଇନଥିଲେ, ଦେହରୂପ ଆବରଣରେ ତଗୋଟିଏ ସୁଦ୍ଧା ଡାଳି ପଡ଼ିନଥିଲା ! ହାତକୁ ନେଇଥିବା ପାଇଟି ତ ସରି ନଥିଲା । ସମସ୍ତଙ୍କୁ ଠକି ଦେଇ ଆକସ୍ମିକ ଭାବେ ଚାଲିଗଲେ ଶିବରାମ । କିନ୍ତୁ କାହିଁକି ? ଏ କାହିଁକିର ଉତ୍ତର ଆମ ପାଖରେ ନାହିଁ । ଆମ ପରିବାରକୁ ଏହି ଦାରୁଣ ଦୁଃସମ୍ବାଦ ମଧ୍ୟ ରାତ୍ରରେ ଜଣାଇଥିବା ତାଙ୍କ ଅନ୍ତରଙ୍ଗ ବନ୍ଧୁ ଦିନନାଥ ପାଠୀଙ୍କ ବାଷ୍ପାକୁଳ କଣ୍ଠରୁ ଏ ପ୍ରଶ୍ନର ସଂକ୍ଷିପ୍ତ ଉତ୍ତର ପାଇଥିଲି । 'କୁମୁଟି ପିଲାଟା ତ' । କୁମୁଟି ପିଲାଟିର ଏ ହିସାବୀ ବୁଦ୍ଧି ଯିବା ଅବସ୍ଥାରେ ଥିବା, ଆମ ସମସ୍ତଙ୍କୁ ଭଗବାନ୍ ଦିଅନ୍ତୁ ।

ଶିବରାମ ସ୍ନାତକୋତ୍ତର ଏବଂ ଏମ୍.ଫିଲ୍, ସ୍ତରରେ ମୋର ଛାତ୍ର । ବୟସର ବ୍ୟବଧାନ ମାତ୍ର ପାଞ୍ଚବର୍ଷ । ସେ ମୋତେ ସର୍ବଦା ଶିକ୍ଷକର ସମ୍ମାନ ଦେଇ ଆସିଥିଲେ ସୁଦ୍ଧା ମୁଁ ତାଙ୍କୁ ଆରମ୍ଭରୁ ଜଣେ ସାରସ୍ୱତ ବନ୍ଧୁ ରୂପେ ହିଁ ଗ୍ରହଣ କରିନେଇଥିଲି । ତାଙ୍କ ମୃତ୍ୟୁରେ କେବଳ ମୁଁ ନୁହେଁ, ଓଡ଼ିଶାର ଅଗଣିତ ବର୍ଷୀୟାନ୍ ଓ ତରୁଣ ସାହିତ୍ୟିକ ଜଣେ ସହୃଦୟ ସାରସ୍ୱତ ବନ୍ଧୁଙ୍କୁ ହରାଇଛନ୍ତି । ଗୋଷ୍ଠୀ କନ୍ଦଳ ଓ ସାହିତ୍ୟିକ ରାଜନୀତିର ବହୁ ଊର୍ଦ୍ଧ୍ୱରେ ରହି ସେ ସମସ୍ତଙ୍କୁ ଗୋଟିଏ ପ୍ରଶ୍ନ ପଚାରି ଚାଲିଥିଲେ 'ଏବେ ଆଉ କି ପାଇଟି କରୁଛନ୍ତି', ଏବେ ଆଉ ଏ ପ୍ରଶ୍ନ ଏଡ଼େ ଆନ୍ତରିକ ଭାବେ ପଚାରିବ କିଏ ?

କୈଶୋର ଓ ଆଦ୍ୟ ଯୌବନର ରଙ୍ଗୀନ୍ ସ୍ୱପ୍ନ ଦେଖିବା ସମୟ ଶେଷ ହୋଇଯିବା ପରେ ମଣିଷ ନିଜର ଧନ, ମାନ, ପଦପଦବୀ, ପୁତ୍ରକନ୍ୟାଙ୍କୁ ନେଇ ସ୍ୱପ୍ନ ଦେଖିଥାଏ । କିନ୍ତୁ ଶିବରାମ ଏମାନଙ୍କଠାରୁ ସ୍ୱତନ୍ତ୍ର । ସେ ନିଜପାଇଁ କେବେ ସ୍ୱପ୍ନ ଦେଖିନାହାନ୍ତି, ଓଡ଼ିଆ ଭାଷା, ସାହିତ୍ୟ ଏବଂ ଓଡ଼ିଆ ଜାତିର ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନରେ ହିଁ ସେ ଆଜୀବନ ବିଭୋର । ଏହି ସ୍ୱପ୍ନକୁ ସାକାର କରିବା ପାଇଁ ସେ ଆଲୋକ, ସାହିତ୍ୟ,

ବଂଶଧାରା, ବସୁନ୍ଧରା ପରି ସାହିତ୍ୟ ପତ୍ରିକାର ସଂପାଦନା ଦାୟିତ୍ୱ ନେଇଛନ୍ତି, ବିଭିନ୍ନ ସାହିତ୍ୟ ଅନୁଷ୍ଠାନର ମୂଳଦୁଆ ପକାଇଛନ୍ତି, କଳିଙ୍ଗ ସାହିତ୍ୟ ସମାଜ ତ ତାଙ୍କରି ହିଁ ମାନସ ସନ୍ତାନ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆୟୋଜିତ ପାଠଚକ୍ର, କର୍ମଶାଳା, ସାହିତ୍ୟ ସଭାରେ ଯୋଗଦାନ କରିଛନ୍ତି । ନିଜର ସ୍ୱପ୍ନ ବିତରଣ କରିଚାଲିଛନ୍ତି । ଏହି ସରଳ, ନିଷ୍କପଟ ମଣିଷଟିର ଆଖିରେ ଆଖିଏ ସ୍ୱପ୍ନ ଏବଂ ଅନ୍ୟ ମାଧ୍ୟମରେ ଏହି ସ୍ୱପ୍ନଗୁଡ଼ିକୁ ରୂପାୟନ କରିବା ପାଇଁ ତାଙ୍କ ଛାତିରେ ଥିଲା ଅମାପ ମମତା । ତାଙ୍କ ଶତ୍ରୁ ଥାଇପାରନ୍ତି କିନ୍ତୁ ସେ କାହାରି ଶତ୍ରୁ ନଥିଲେ ।

କର୍ମମୟ ଜୀବନରେ ସାହିତ୍ୟ ସଂଗଠନ ପାଇଁ ନିଜକୁ ଉତ୍ସର୍ଗ କରିଥିବା ଶିବରାମ, ଅବସର ନେବାପରେ ସାହିତ୍ୟ ସାଧନାକୁ ବ୍ରତ ରୂପେ ଗ୍ରହଣ କରିଥିଲେ । ପ୍ରକାଶ ପାଇଛି ତାଙ୍କ ସଂକଳିତ ସୁରେନ୍ଦ୍ର ବିଚାର ମଞ୍ଜୁଷା ଓ ଫକୀରମୋହନ ବିଚାର ମଞ୍ଜୁଷା । ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ଏକ ଅଭିନବ ଉଦ୍ୟମ । 'ନଟବର ସାମନ୍ତରାୟ ବିଚାର ମଞ୍ଜୁଷା' ଅଧାପନ୍ତରିଆ ହୋଇପଡ଼ିଛି । ତାକୁ ପୂର୍ଣ୍ଣାଙ୍ଗ କରିବ କିଏ ?

ଶାସ୍ତ୍ର କହେ, ମୃତ୍ୟୁ ବେଳେ ମଣିଷ ମନରେ ଯେଉଁ ଭାବନା ଥାଏ, ତା' ଆଖିରେ ଯେଉଁ ସ୍ୱପ୍ନ ଥାଏ, ସେ ଅନୁରୂପ ଭାବେ ପୁନର୍ଜନ୍ମ ଗ୍ରହଣ କରେ । ଶିବରାମ ତ ଏକ ସାହିତ୍ୟିକ ପରିବେଶରେ ନିଜର ସ୍ୱପ୍ନ ବିତରଣ କରୁ କରୁ ଶରୀର ଛାଡ଼ିଛନ୍ତି । ତେଣୁ ଆମର ବିଶ୍ୱାସ, ସେ ପୁଣି ନିଜର କର୍ମକୁ ଅବ୍ୟାହତ ରଖିବା ପାଇଁ ନିଶ୍ଚିତ ଭାବେ ଫେରିଆସିବେ । ଆମେ, ଓଡ଼ିଶାର ଅଗଣିତ ପାଠକ ଓ ସାହିତ୍ୟିକ ତାଙ୍କ ଫେରନ୍ତା ବାଟକୁ ଚାହିଁ ରହିଲୁ ।

ଏହି ସାମୟିକ ବିଚ୍ଛେଦ ଦୁଃଖକୁ ସହ୍ୟ କରିବା ପାଇଁ ତାଙ୍କ ପରିବାର, ସ୍ୱଜନ, ବନ୍ଧୁ ଓ ଶୁଭେଚ୍ଛୁମାନଙ୍କୁ ଭଗବାନ୍ ଶକ୍ତି ଦିଅନ୍ତୁ । ତାଙ୍କ ଫେରନ୍ତା ପଥ ପୁଷ୍ପିତ ହେଉ । ତାଙ୍କ ପୁସ୍ତକାଗାରର ସଯତ୍ନ ଲାଳିତ ଦୁର୍ଲ୍ଲଭ ପୁସ୍ତକଗୁଡ଼ିକ କିଛିଦିନ ବିଶ୍ରାମ ନିଅନ୍ତୁ ।

## କେଉଁ ପାଇଟି କଲ ହେ !

ପ୍ରାଧ୍ୟାପକ ନିହାର ପଟ୍ଟନାୟକ

କୁଆଡ଼େ ଗଲ ହେ । ମତେ ନ ପଚାରି କରି ପଳେଇଗଲ । ଆମେ ଦି'ଜଣ ସାଙ୍ଗ ଥିଲେ ପରା ହେ । ଠକି ଦେଲ । ହଉ, କା'କୁ କଇବା । ମନ ମାରି କରି କପାଳକୁ ବାଡ଼େଇବା । ଟାଇମ୍ ଗୁଡ଼ାକ ଦେଖୁ ଦେଖୁ କୁଆଡ଼େ ପଳେଇଯାଉଛି । ଦିନ ରହୁଚି କିହେ ! ମନ ପଡୁଚିନା ! ଭଂଜ ବିହାରରେ ପାଠ ପଢ଼ିଲାବେଳର କଥା । ତମେ ମୋ ଉପର କିଲାସରେ ପଢୁଥିଲ, ନାଇଁ ! ତମେ କଥା ହେଲାବେଳକୁ ବଡ଼ିଆ ଦିଶୁଥିଲ । ଆଖି ମିଟିମିଟି କରି କରି ଧୀରେପି କଥା ହଉଥିଲ । ତମ ରୂପକୁ ଦେଖିକରି ସାଙ୍ଗଗୁଡ଼ାକ ଗମାତ କରୁଥିଲେ । 'ଗାନ୍ଧୀ' ବୋଲି ଡାକୁଥିଲେ । କାଇଁକି ଜାଣିଚନା ! ମୁହଁରେ କଳା, ପାଚିଲା ମିଶାମିଶି ଦାଢ଼ୀ । କାନ୍ଧରେ ବଡ ଝୁଲେଇବା ମୁଣା । ପଞ୍ଜାବୀ ସହିତରେ ପ୍ୟାଣ୍ଟ । ତମକୁ କେବେ ରାଗିବା ଦେଖିନି ହେ ! ସେଇଟା' କା ତମ ପାରିବାର ଗୁଣ ।

ହଇହେ, ଶିବରାମ ! କ'ଣ ମିଳିଲା ହେ ତମକୁ । ଓଡ଼ିଆ ଭାଷା ଓ ସାହିତ୍ୟକୁ ଜଗିବା ପାଇଁ କେତେ କାମ କଲ । ବରଂପୁରରେ 'କଳିଙ୍ଗ ସାହିତ୍ୟ ସମାଜ' ପରିକା ଗୋଟିଏ ଅନୁଷ୍ଠାନ କରି ଗାଁ, ଗାଁ, ଘର ଘର ବୁଲି ପୁସ୍ତକ ଯୋଗାଡ଼ କଲ । ତମ କାମକୁ କେତେକ ବାଧା ଦେଲେ ମିଶେ ବଡ଼ ଆଣ୍ଡ ପାଇଟିଟି କରିଦେଲ । ଉତ୍କଳ ଆଶ୍ରମର ଉପର ଘରେ ପାଠାଗାରଟି କରିପାରିଲ । ସେ ସବୁ କୁଆଡ଼େ ଗଲା ? ତମେ ଗଲ ସବୁ ଗଲା । ଏବେ ରକଦକ ଲାଗୁଛି ହେ ! ଓ.ଆର୍.ଟି ଚାକିରୀ ଛାଡ଼ି ଗୁଣପୁରୁ ଗଲ କଲେଜ ମାଷ୍ଟ୍ରହେବ ବୋଲି । ଏଇଠିର ନିଶା ଛାଡ଼ିଲାନି ଯେ ସେଇଠି ମିଶେ 'ବଂଶଧାରା ସାହିତ୍ୟ ସମାଜ' ଗଢ଼େଇଲ । ତା' ଉତ୍ତାରୁ ତମର ମୋର ଦେଖାଚାହାଁ ଊଣା ହଉଥିଲା । କିଛି ଭଲ କାମ କଲେ ଭଉତ କଥା ଶୁଣିବାକୁ ହେବ, ବୁଝିଲ ! ତମେ ତ କେବେ ନାଁ ନେବାକୁ ଧାଉଁ ନଥିଲ, ଏଇଟା ସମତିକି ଜଣା ।

ଗୀତ ଲେଖି କା' ସହିତରେ ପଡ଼ିଲାନି ବୋଲି ତମକୁ ନବରଙ୍ଗପୁର ପଠେଇଦେଲେ କି ହେ ! କ'ଣଟା ହେଇଗଲା ସେଇଠୁ ଭଲକଲ ଭୁବୁନୁଶର ରାଜଧାନୀକୁ ଆଇଲ । ସେଇଠି ମିଶେ ତମ ବୁଦ୍ଧିଟା ଛାଡ଼ିଲନି ! ନିଜ ଜିଲ୍ଲାରୁ ଭାରୁଥିବା 'ଅନୁପମ ଭାରତ' ପେପରଟି କିଣି ରଖୁଥିଲ । ସତରେ ଶିବରାମ ମୁଁ ତମକୁ ଚେଁକୁନି । ତମ ଭଳିଆ ଲୋକଟେ ମିଳିବା କାଠିକର ପାଠ । ପାଇଟିରୁ ଛୁଟି ନେଲ । ରାଜଧାନୀରେ ଘରଦ୍ୱାର କରି ରହିଲେ ମିଶେ ମଝିରେ ମଝିରେ ତମେ ବରଂପୁର ଆସୁଥିଲ । କହୁଥିଲ, 'ଉତ୍କଳ ଆଶ୍ରମ ଯାଗାକୁ ଦେଖିଲେ କଟିବିଟି ଲାଗୁଚି । ତମେ ସବୁ ଥାଇ କିରି କିଛି ପାଇଟିକି ନାଇଁ । କିଛି ଗୋଟେ କର ହେ ।'

ହଇ ହେ ଶିବରାମ ! ଏ ଯାଗାକୁ କେତେ ପ୍ରେମ କରୁଥିଲ ସତରେ । ପ୍ରାଣ ଦେଇ ଦଉଥିଲ । ଏବର ପିଲାମାନେ କା'କଥା ଶୁଣୁଚନ୍ତି କିହେ ! ଗୁଟେ ଗୀତ ଲେଖିଦେଲେ କବି ହେଇଯାଉଚନ୍ତି । ଗୁଟେ ଗପ ଲେଖିଦେଲେ କଥାକାର ହେଇଯାଉଚନ୍ତି । ଏଇଠି ସମସ୍ତେ ଗୁଟେ ଗୁଟେ ରଜା । ହଉ, ଚାଲିଥାଉ । କଇକି କିଛି ଲାଭ ନାହିଁ । ଶିବରାମ ! ତମେ ବେଗାପି ଆସ । ଏତେଦିନ ହେଲା କୁଠେ ରହି ଯାଇଚ ହେ ! ଟିକେ ସୁଖ ଦୁଃଖ ହେବା ଆସ । ଭାଉଜ, ପିଲାମାନେ କେମିତି ଅଛନ୍ତି ବୁଝିବା । ମୁଁ ତୁମକୁ ଅନେଇ ବସିଚି । ଆସ ।

କମାପଲ୍ଲୀ, ରାମନଗର, ୨ୟ ସରଣୀ

ବ୍ରହ୍ମପୁର-୪

## ବିଦାୟ ଶିବରାମ

ଡଃ. ଗଣେଶ୍ୱର ମିଶ୍ର

୧୯୯୮ରେ ଏକାମ୍ର ମହାବିଦ୍ୟାଳୟରେ ଯୋଗ ଦେବା ପରେ ଶିବରାମ ଭୁବନେଶ୍ୱରରେ ସ୍ଥାୟୀ ଭାବରେ ବସବାସ କଲେ । ଏଣିକି ଆମର ଅଧିକ ଦେଖା ସାକ୍ଷାତ ହେବ ବୋଲି ଆମେ ଉଭୟେ ଆଶା କରିବା ସ୍ୱାଭାବିକ ।

ଅଧ୍ୟାପକ ଭାବରେ ଶିବରାମଙ୍କର ସୁଖ୍ୟାତି ଥିଲା । କିନ୍ତୁ ଅଧ୍ୟାପନା ଜୀବନର

ଅଧିକାଂଶ ସମୟ ଭୁବନେଶ୍ୱର ବାହାରେ ରହୁଥିବାରୁ ତାଙ୍କ ସହିତ ମୋର ବିଶେଷ ଆଳାପ ଆଲୋଚନାର ସୁଯୋଗ ଘଟିନଥିଲା । ସେ ଅବସର ନେବାପରେ ବେଶ୍ କେତେଥର ତାଙ୍କ ସହିତ ଦେଖା ସାକ୍ଷାତ ହେଲା, ସେ ଆମର ଗଜପତି ନଗରସ୍ଥିତ ବାସଭବନକୁ ଆସିଥିଲେ ଦୁଇ ତିନି ଥର । ସାହିତ୍ୟ ସହିତ ଅନ୍ୟ ବିଷୟ ବି ଆଲୋଚନା ହେଉଥିଲା । ଥରେ ସେ ମୋତେ ପିପ୍‌ପଳୀ ଚାରାଟିଏ ଦେଇଥିଲେ ଆମ ବଗିଚାରେ ଲଗାଇବା ପାଇଁ ।

ଶିବରାମଙ୍କୁ ମୁଁ ଅନ୍ତରଙ୍ଗ ଭାବରେ ଜାଣିଥିଲି ବୋଲି କହିପାରିବି ନାହିଁ । କିନ୍ତୁ ସେ ଯେ ଜଣେ ପ୍ରଚଣ୍ଡ ସ୍ୱାଭିମାନୀ ଓଡ଼ିଆ, ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ନିଷ୍ଠାପର ଛାତ୍ର, ଅଧ୍ୟାପକ ଓ ଗବେଷକ ଥିଲେ, ଏହା ତାଙ୍କ ବ୍ୟକ୍ତିତ୍ୱ ଓ କୃତିରୁ ସ୍ପଷ୍ଟ ହେଉଥିଲା । ଯେ କୌଣସି ଆଲୋଚନାରେ ସେ ନିର୍ଭୀକ ଭାବରେ ତାଙ୍କ ବକ୍ତବ୍ୟ ଉପସ୍ଥାପିତ କରୁଥିଲେ । ସେ ଥିଲେ ଜଣେ ଦୃଢ଼ମନା, ସ୍ୱାସ୍ଥ୍ୟବାନ୍ ପୁରୁଷ ।

ତାଙ୍କର ଗୌରୀ ନଗର ଗୃହକୁ ମୋତେ ସେ ନିମନ୍ତ୍ରଣ କରିଥିଲେ କେତେଥର । ଠିକଣା ଟିପି ରଖିଥିଲି, ଯିବି ଯିବି ବୋଲି ସମୟ ଗଡ଼ାଇ ଦେଉଥିଲି । ହଠାତ୍ ଦିନେ ବଂଧୁ ଦିନନାଥ ପାଠୀ ମୋତେ ଫୋନ୍ କଲେ । 'ଶିବରାମ ଘରକୁ ତୁରନ୍ତ ଆସନ୍ତୁ ।'

'ସାର୍, ଆପଣ ଆମ ଘରକୁ ଆସିବେ ବୋଲି କହିଥିଲେ । ଯାହାହେଉ, ଆସିଲେ ତ' । ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ।' ସେ ମୋତେ ଏହିପରି କିଛି କହିଲେ ବୋଲି ମୋର ମନେହେଲା ।

ଶିବରାମ ବରଫ ଶଯ୍ୟାରେ ଶୋଇଛନ୍ତି-ଦେହ ଉପରେ ଗୁଡ଼ାଏ ଫୁଲ ।

ମୁଁ ରୁମାଲ୍‌ରେ ମୋ ଆଖି ପୋଛିଲି ।

ସଭାପତି

ଓଡ଼ିଶା ସାହିତ୍ୟ ଏକାଡେମୀ

## ଅଗ୍ରଦୂତ ଖବର ତମଠାରୁ ପାଇ ଯାଏ

ଶରତ କୁମାର ମହାନ୍ତି

ତମ ସଂପର୍କରେ ଦି ପଦ ଲେଖିବା ଅବସରରେ ଯାହା ଯେମିତି ମନେପଡୁଛି କହୁଛି । ଥରେ ଆମେ ଚିଠି ଲେଖିବା ବିଷୟରେ କଥାବାର୍ତ୍ତା ହେଉଥିଲେ । ମୁଁ କହିଲି, ଚିଠି ଲେଖିବାକୁ ମତେ ଆଦୌ ଭଲ ଲାଗେନା । ଏମିତି ଗପସପ କରିବାରେ ମଜା ଅଛି । ହେଉପଛେ ତାହା ବର୍ଷକୁ ଦୁଇ ତିନିଥର । ଚିଠିରେ ଆରପଟୁ କିଛି ନ ଶୁଣି ଜଣେ କହି ଚାଲିଥିବ । ଉତ୍ତର ଆସିବ ଯାଇ ପନ୍ଦରଦିନ ପରେ । କି ଦିକ୍‌ଦାରିଆ କାମ ! ତମେ ହସିଲ । ବିଶ୍ୱାସ  କଲ ଯେ ମୁଁ ଚିଠି ଲେଖେ ନାହିଁ । ଏବେ କିନ୍ତୁ ମୁଁ ତମ ପାଖକୁ କେତେଥର ଚିଠି ଦେଇଛି । କାଗଜ କଲମର ଚିଠି ନୁହଁ । କଲମ ଧରିବା ଏକ ଝିଜ୍‌ଝଟ୍ ଯାହାକୁ ସାହିତ୍ୟ କରିବା ପାଇଁ ଆମେ ସ୍ୱତଃପ୍ରବୃତ୍ତ ହୋଇ ଆଦରି ନେଇଛେ । ବାକ୍ୟ ଗଠନରେ କ'ଣ

ଅସୁବିଧା ରହିଗଲା, ଶବ୍ଦ ଚୟନ ଠିକ୍ ହେଲା କି ନାହିଁ ଇତ୍ୟାଦି କଥା ଚିନ୍ତା ନ କରି ତମକୁ ମନକଥା କହିହେଉଛି ।

ତମେ ଭୁବନେଶ୍ୱର ଆସିବା ପରେ ତମ ଖାଦ୍ୟରୁଚି କଥା ଜାଣି ନିଜକୁ ଦୋଷୀ ମଣିଲି । ଭୁବନେଶ୍ୱରରେ ଆମେ ଦୁହେଁ ପଡ଼ୋଶୀ ନହେଲେ ମଧ୍ୟ ଆମ ଦୁହିଁଙ୍କ ଘର ମଧ୍ୟରେ ଦୂରତା ଅଧିକ ନୁହଁ । ତମେ ହଠାତ୍ କେବେ କେମିତି ପରିବା କିଣିସାରି ସକାଳଓଳି ଆମ ଘରେ ପହଞ୍ଚିଯାଅ । ବିଡ଼ାଏ ଶାଗ, ଖଣ୍ଡେ ମଞ୍ଜା ଓ କେଇଟା କଞ୍ଚାକଦଳୀ ଆମ ପାଇଁ ରଖିଦିଅ । ତମର କୌଣସି କଥାର ପ୍ରତିରୋଧ କରିବାର ନିର୍ବୋଧତା ମୁଁ କେବେଠାରୁ ଛାଡ଼ି ଦେଇଛି । ଯେବେ ମଞ୍ଜା ଆଣିଥିଲ ଭଲ ମଞ୍ଜା କିପରି ବାଛିବ, ମଞ୍ଜାକୁ କିପରି କାଟିବ ଓ ଦହିପକେଇ ରାନ୍ଧିଲେ ତାହା ସୁଆଦିଆ ହୁଏ ଇତ୍ୟାଦି କଥା କହିଲ । ଆଉ କେତେକଥା ଘଣ୍ଟାଏ ଖଣ୍ଡେ ଗପି ଉଠ । ନୂଆ ନୂଆ ଭୁବନେଶ୍ୱର ଆସି ତମକୁ କିପରି ଅସ୍ୱସ୍ତି ଲାଗିଲା ସେ କଥା କହିଛ । ଏ ସହରରେ କେହି କାହା ଘରକୁ ଯାଆନ୍ତି ନାହିଁ, ମନଖୋଲା ମିଶନ୍ତି ନାହିଁ- ଏଇ ଥିଲା ତୁମର ଅଭିଯୋଗ ।

ଆଗରୁ ଜାଣିଥିଲି ତମେ ପରିଶ୍ରମ କର । ଚାଲିବା, ସାଇକେଲ୍ ଚଲାଇବା ତମର ଦୈନନ୍ଦିନ ଅଭ୍ୟାସ । ତମର ଖାଦ୍ୟରୁଚି, ପରିଶ୍ରମ ଓ ସତେଜ ଚେହେରା ଦେଖି କେହି ଭାବିପାରିବ ନାହିଁ ଯେ ତମର କିଛି ବେମାରି ଥାଇପାରେ । ବସ୍ତୁତଃ କିଛି ବେମାରି ନଥିଲା । ଥରେ ମାମୁଲି ଭାବେ କହିଥିଲ ଯେ ତମର ଟିକିଏ ବ୍ଲଡ୍ ପ୍ରେସର୍ ଅଛି । ମୁଁ ଉତ୍ତର ଦେଲି- ଶିବରାମବାବୁ ! କେଉଁ ଭଦ୍ରଲୋକର ବ୍ଲଡ଼୍‌ପ୍ରେସର ନାହିଁ କହିଲ ? ତମେ ହସିଲ ଓ ପଚାରି ବୁଝିନେଲ ଯେ ମୋର ବି ବ୍ଲଡ଼୍‌ପ୍ରେସର ଅଛି । ପୂର୍ବଦିନ ବ୍ଲଡ଼୍‌ପ୍ରେସର ଦେଖାଇଥିଲ । ସବୁ ଠିକ୍ ଥିଲ । ସେ ଦିନ ବାଣୀବିହାରରେ ଗୋଟିଏ ସଭାକୁ ଯାଇଥିଲ । ଫେରିବା ପରେ ରାତିରେ ଅପ୍ରତ୍ୟାଶିତ ଭାବେ କ'ଣ ହେଲା ? ରାତି ଅଧରେ ଦୂର ଜାଗାରେ ଗୋଟିଏ ସାହିତ୍ୟ ସଭାରେ ଯୋଗଦେବାକୁ ଥିବା ପରି ଝଡ଼ ପରି ବାହାରିଗଲ !

ଚାକିରୀ ସରିବା ବେଳକୁ ତମେ ଭୁବେନଶ୍ୱର ଆସିଲ/ ଯେତେବେଳେ ଗୁଣୁପୁରରେ ଥିଲ, ସେତେବେଳକୁ ତମ ସହିତ ପରିଚୟ । ତମର ପରିଚୟ ଅବଶ୍ୟ ମୋ ବାପାଙ୍କ ସହିତ ଆଗ ହେଲା । କଟକରେ ପ୍ରକାଶକଙ୍କ ଦୋକାନରେ ବହି ଘାଣ୍ଟିବା ଓ ନୂଆ ବାହାରିଥିବା ଭଲ ବହିର ସନ୍ଧାନ ନେବା ତମର ନିଶା । ତମ ଠାରୁ ଭଲ ବହିର ଖବର ମୁଁ ପାଇଥାଏ । କଟକ ଯାଇ ନୂଆ ପ୍ରକାଶକ 'ଅଗ୍ରଦୂତ'ରେ ପହଞ୍ଚିଲ । ସେଇଠି ବାପାଙ୍କ ସହିତ ପରିଚୟ ହେଲା । ବାପା ମତେ ତମ ବିଷୟରେ କହିଲେ ଓଃ ! ବଡ଼ ଗପୁଡ଼ି । ମନେ ମନେ ଭାବିଲି, ତୁମେ କୋଉ କମ୍ କି ! ଦୁଇ ଗପୁଡ଼ିଙ୍କ ସମ୍ପର୍କ ବଢ଼ିଲା । ତମେ ତାଙ୍କୁ ମଉସା ଡାକିଲ । ତମ ଝିଅ, କ୍ୱାଇଁ ତ ମତେ ମଉସା ଡାକନ୍ତି । ମୋ ଝିଅ ସହିତ ଦୁହିଁଙ୍କର ଅନ୍ତରଙ୍ଗ ବନ୍ଧୁତ୍ୱ । କଟକରେ ବୁଲାବୁଲି କରି ଭୁବନେଶ୍ୱର ଆସିଲେ ମତେ ପ୍ରାୟ ଭେଟ । କଟକ ଖବର, ଅଗ୍ରଦୂତ ଖବର ତମଠାରୁ ପାଇ ଯାଏ । କେବେ ଯଦି ବାପା କ'ଣ ଅସୁବିଧା କରିଛନ୍ତି ସେ ବିଷୟରେ ପଦେ କହେ ତମେ ବେଶ୍ ଚାଲାକିରେ ମଉସାଙ୍କ ପଟିଆ ହୋଇ ଦିପଦ କୁହ । ତୁମ ଦୁହିଁଙ୍କ ସମ୍ପର୍କ ବୁଝିପାରି ମୁଁ ଖୁସି ହୁଏ ।

ମୁଁ ଜାଣେ, ତମ ଠାରୁ ବୟସରେ ବଡ଼ ଓ ସାନ ଅଧିକାଂଶ ଆଶାବାଦୀ ସହିତ ତମେ ମିଶ ଓ ସମ୍ପର୍କ ରଖ । ଓଡ଼ିଆ ସାହିତ୍ୟର ଭବିଷ୍ୟତ ନେଇ ତମେ ଆଶାବାଦୀ ।

ମୋ ବିଚାରରେ ମାତ୍ରାଧିକ ଆଶାବାଦୀ । ଓଡ଼ିଆ ସାହିତ୍ୟର ଭବିଷ୍ୟତ ନେଇ ମୋର ଆଶଙ୍କା । ଏ ବିଷୟରେ ଆମେ ପୂର୍ବରୁ କଥାବାର୍ତ୍ତା ହେଉ ନଥିଲେ । ଆଶଙ୍କା ନିକଟ ଅତୀତରେ ବଢ଼ିଥିବାରୁ ତମେ ଭୁବନେଶ୍ୱର ଆସିବା ପରେ ଏ ବିଷୟରେ ଆମର କଥାବାର୍ତ୍ତା ହେଲା । ତୁମେ ବୋଧେ ଜାଣି ନଥିଲ ଯେ ଓଡ଼ିଆ ସାହିତ୍ୟର ଭବିଷ୍ୟତ ନେଇ ଚିନ୍ତିତ ହେବାର କିଛି ନାହିଁ ବୋଲି ତୁମ ତୁଣ୍ଡରୁ ଶୁଣିବାକୁ ମୁଁ ତମକୁ ଟିକିଏ ଚେହି ଦିଏ । ଏବେ ଅବଶ୍ୟ ଏକଥା ଓ ଓଡ଼ିଆ ସାହିତ୍ୟର ଭବିଷ୍ୟତ କଥା ସବୁ ତମକୁ ସ୍ପଷ୍ଟ ଦିଶୁଥିବ । ସକ୍ରେଟିସ୍ କହିଥିଲେ, ଆତ୍ମା ଶରୀର ରୂପକ ବନ୍ଦୀଶାଳାରୁ ମୁକ୍ତ ହେଲେ ତାହାର କୌଣସି ଆସକ୍ତି ନଥାଏ ଓ ସବୁକଥା ସେ ସ୍ପଷ୍ଟ ଦେଖିପାରେ ।

୨୦୦୫ ଡିସେମ୍ବର ଭୁବନେଶ୍ୱର ପୁସ୍ତକ ମେଳାରେ ମୋ ସହିତ ଗପ କରୁଥିବା କେଇଜଣ ସାହିତ୍ୟିକ ବନ୍ଧୁ ତୁମକୁ ସ୍ମରଣ କଲେ । ସମସ୍ତଙ୍କ ସହିତ ମିଶି, ହସି, ହୋ ହଲ୍ଲା କରି ମେଳାକୁ ମୁଖରିତ କରୁଥିବା ଶିବରାମଙ୍କ ଅଭାବ ସେମାନେ ଅନୁଭବ କରୁଥିଲେ । ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କୁ ଶ୍ରଦ୍ଧା କରୁଥିବା ଜଣେ ବ୍ୟକ୍ତି ଆମ ଭିତରୁ କମିଗଲେ ନିଶ୍ଚୟ । ସେପରି ବ୍ୟକ୍ତିଙ୍କ ସଂଖ୍ୟା ବେଶୀ ନୁହଁ ।

ପାଣ୍ଡବ ନଗର,ବରଗଡ଼ ବ୍ରିଟ୍ କଲୋନୀ,
ଭୁବନେଶ୍ୱର-୨

## ସର୍ଜନଶୀଳ ଶେଷ ଅଙ୍କ

ଶୈଳଜ ରବି

କଳିଷଠା ଷାଠିଏ । ହେଲେ, ୬୨ ବର୍ଷ ବୟସରେ ବି ଶିବରାମ ଥିଲେ ବେଶ୍ ତାଗଡ଼ା, ଫୁର୍ତ୍ତି ଓ ଯୁବସୁଲଭ ଉଦ୍ଦାମତାରେ ଭରପୂର । କାନ୍ଧରେ ଖଣ୍ଡେ କନା ବ୍ୟାଗ୍ ପକାଇ ଦାଢ଼ିଆ ଗମ୍ଭୀର ଲୋକଟି ଯେ ଏତେ ରସିକ, ଏତେ ଖୁସ୍‌ମିଜାଜ୍ ଓ ଏତେ ଦିଲ୍‌ଦାର ହୋଇଥିବ ହଠାତ୍ ଅଜଣା ଲୋକଟିଏ ଠଉରେଇ ପାରିବ ନାହିଁ । ଶିବରାମଙ୍କ ପରି ବନ୍ଧୁବତ୍ସଳ ବ୍ୟକ୍ତିଟିଏ କିମ୍ବା ଶିବରାମଙ୍କ ପରିବାର ପରି ସ୍ନେହୀ ପରିବାରଟିଏ ଏ ଯୁଗରେ ଅତ୍ୟନ୍ତ ବିରଳ । ଶିବରାମ ଥିଲେ ଏକାଧାରରେ ସୁସମୀକ୍ଷକ, ସୁକବି ଏବଂ ସୁସଂପାଦକ । ଏହାଛଡ଼ା ତାଙ୍କର ମଧ ରହିଛି କିଛି ସ୍ମରଣୀୟ ଗଳ୍ପ ଏବଂ ରମ୍ୟରଚନା । 'ସାଂପ୍ରତିକ ଓଡ଼ିଆ ସାହିତ୍ୟ', 'କବିସୂର୍ଯ୍ୟ ବଳଦେବ ପରିକ୍ରମା', 'ବଂଶଧାରା କବିତାବଳୀ' ଭଳି ଉଚ୍ଚାଙ୍ଗ ପୁସ୍ତକର ସେ ଥିଲେ ଦକ୍ଷ ସଂପାଦକ । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି ବହୁ ଉଚ୍ଚାଙ୍ଗ ସମାଲୋଚନା ପ୍ରବନ୍ଧ ଯାହା ଏ ଯାଏ ଗ୍ରନ୍ଥ ଆକାରରେ ପ୍ରକାଶିତ ହୋଇନାହିଁ । ତାଙ୍କର 'ବିଚାର ମଞ୍ଜୁଷା' ସିରିଜ୍ ଏବଂ ପ୍ରାବନ୍ଧିକଙ୍କର ବିଭିନ୍ନ ରଚନାରୁ ସ୍ମରଣୀୟ ଉକ୍ତି ସଂକଳନ କରିବା ଥିଲା ଏକ ଅଭିନବ ପରିକଳ୍ପନା । 'ସୁରେନ୍ଦ୍ର ବିଚାର ମଞ୍ଜୁଷା' ଏବଂ 'ଫକୀରମୋହନ ବିଚାର ମଞ୍ଜୁଷା' ପ୍ରକାଶ ପାଇସାରିଛି । ଗଙ୍ଗାଧର ମେହେର, ଚିତ୍ତରଂଜନ ଦାସ, ମନୋଜ ଦାସ ଏବଂ ରମାକାନ୍ତ ରଥ ବିଚାର ମଂଜୁଷାର ସଂକଳନ କାର୍ଯ୍ୟ ଅଧା ରହିଗଲା । 'ନାଟ୍ୟକାର ପଦ୍ମନାଭ ଦେବ' ଏବଂ 'ଓଡ଼ିଆ ସାହିତ୍ୟରେ

ଆଦିବାସୀ' ଶୀର୍ଷକ ଦୁଇଟି ଗବେଷଣାମୂଳକ ପୁସ୍ତକ ମଧ୍ୟ ସରିପାରିଲାନାହିଁ । 'ଖଳ କଣ୍ଟକ', 'ଅଳଙ୍କାର ଚନ୍ଦ୍ରିକା', 'ଶ୍ରୀ କିଶୋର ଚମ୍ପୂ କାବ୍ୟ' ଇତ୍ୟାଦି ପରି ଊନବିଂଶ ଶତାବ୍ଦୀର ଅନେକଗୁଡ଼ିଏ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ସଂପର୍କରେ ସେ ନିୟମିତ 'ବହି ଜଗତ'ରେ କେତୋଟି ଉପାଦେୟ ପ୍ରବନ୍ଧ ଲେଖିଥିଲେ । ସେହିପରି କେତେକ ଅଳ୍ପବିଦିତ ପତ୍ରପତ୍ରିକା ସଂପର୍କରେ ତାଙ୍କର ଆଲୋଚନା ବହନ କରି 'ଓଡ଼ିଶାର ପତ୍ର-ପତ୍ରିକା' (୧ମ ଭାଗ) ପ୍ରକାଶ ଅପେକ୍ଷାରେ ରହିଛି । ଅତୀତରେ ସେ ଆଲୋକ, ସାହିତ୍ୟ, ବଂଶଧାରା, ସଂପର୍କ, ଅନ୍ୱେଷା ଇତ୍ୟାଦି ପତ୍ରିକା ଓ ବଂଧୁ ଦିନନାଥଙ୍କର ସାୟୋନାରା, ପୁନର୍ନବା, ଶ୍ଳୋକଛନ୍ଦ, ଗଂଗାବତରଣ ଆଦି ଉପନ୍ୟାସର ସଂପାଦନା ଦାୟିତ୍ୱ ବହନ କରିଛନ୍ତି ।

ଶିବରାମ କେବଳ ଜଣେ ଉଚ୍ଚଦରର ସାହିତ୍ୟିକ ନଥିଲେ, ଜଣେ ପୋଖତ ସାଂସ୍କୃତିକ ସଂଗଠକ ମଧ୍ୟ ଥିଲେ । ବ୍ରହ୍ମପୁରର କଳିଙ୍ଗ ସାହିତ୍ୟ ସମାଜ ଏବଂ ଗୁଣପୁରର ବଂଶଧାରା ସାହିତ୍ୟ ସମାଜ ଥିଲା ତାଙ୍କ ସ୍ୱପ୍ନ ଓ ସାଧନାର ପୀଠ । ତାଙ୍କ ଅଧ୍ୟାପକ ଜୀବନର ଦୁଇ-ତୃତୀୟାଂଶ କଟିଥିଲା ଦକ୍ଷିଣ ଓଡ଼ିଶାରେ । ସେ ସମୟରେ ସେ କେବଳ ସାଂସ୍କୃତିକ କାର୍ଯ୍ୟରେ ଜଡ଼ିତ ନଥିଲେ, ନବ୍ଲଲପଣ୍ଡାଙ୍କ ସମେତ ବହୁ ପ୍ରଗତିଶୀଳ ଆନ୍ଦୋଳନ ଓ ବ୍ୟକ୍ତିଙ୍କ କାର୍ଯ୍ୟରେ ସେ କାନ୍ଧ ଲଗାଇଛନ୍ତି ।

ସେ ଥିଲେ ଜଣେ ପ୍ରଚାର-ବିମୁଖ ନିରବ ସ୍ରଷ୍ଟା । ତଥାପି ଓଡ଼ିଶା ଲଳିତ କଳା ଏକାଡେମୀ, ଭୁବନେଶ୍ୱରର ଦେବପ୍ରସାଦ କଳାତୀର୍ଥ, ବ୍ରହ୍ମପୁରସ୍ଥ କଳିଙ୍ଗ ସାହିତ୍ୟ ସମାଜ ଇତ୍ୟାଦି ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଅରସିକ ପରି କଥା କହୁଥିବା ଶିବରାମଙ୍କ ସତେକି ପ୍ରତି ରକ୍ତକଣିକାରେ ଥିଲା କଳାବୋଧ । ତାଙ୍କ ଭୁବନେଶ୍ୱର ବାସଭବନକୁ ପ୍ରବେଶ କରିବା ମାତ୍ରେ ଆଗନ୍ତୁକ ଏ ସଂପର୍କରେ ସଚେତନ ହୋଇଯାଏ । ମାଆଙ୍କର ନାଁରେ, ମାଆଙ୍କ ହସ୍ତାକ୍ଷରରେ ଘର ନାଁ ଲେଖା ହୋଇଛି 'ଅଜରମ୍' । ମୃତ୍ୟୁର ତୃତୀୟ ଦିନ ଯାଇଥିଲି । ପ୍ରିୟମ୍ବଦା କବି ରମାକାନ୍ତ ରଥଙ୍କୁ ପଚାରୁଥାଏ, 'ସାର୍, ଆତ୍ମା କ'ଣ ସତରେ ଅଜର, ଅମର / ଅତୃପ୍ତ ଆତ୍ମା କ'ଣ ପୁଣି ଫେରିଆସେ ତା'ର ବାକି କାମ ସାରିବାକୁ ?' ରମାକାନ୍ତ ବାବୁଙ୍କ ସଂକ୍ଷିପ୍ତ ଉତ୍ତର ଥିଲା, 'ମା, ମୋତେ ଜଣାନାହିଁ ।' ମନେପଡ଼ିଯାଏ 'ଅନାମ'ରେ ପ୍ରକାଶିତ ଶିବରାମଙ୍କ 'ଅନାମ' କବିତାର କେଇପଦ : 'ମୁଁ ଏବେ ଭାସୁଅଛି/ ଅନ୍ଧାରର ମହାସମୁଦ୍ରରେ/ ଏଠି ମୁଁ କରେ କ'ଣ ? / ଏଠି ଖାଲି ଡଙ୍ଗା ଅଛି / ଜଳନାହିଁ/ କିବା ଲାଭ ହେଲା ମୋର ମୁକ୍ତ ହୋଇ ?'' ସେଠି ବି କ'ଣ ସେହି ଅବସ୍ଥା ? ସେଠି ବି' କ'ଣ ସେଇ 'ଡଙ୍ଗା ଅଛି, ଜଳ ନାହିଁ'ର ଶୁଷ୍କ ବୈତରଣୀ ? ପାରି ହେବାକୁ ବୃଥା ପ୍ରଚେଷ୍ଟା ?

ଫେରାଅ ଶିବରାମ, ଫେରିଆସ, ଫେରିଆସ ।

ଖାନନଗର, କଟକ

# ଶିବରାମ : ଏକ ଚେତନାର ପରିସମାପ୍ତି

ଆଚାର୍ଯ୍ୟ ଭାବାନନ୍ଦ

କେବେ, କେଉଁଠି ଶିବରାମ ସହିତ ପ୍ରଥମେ ସାକ୍ଷାତ ହୋଇଥିଲା ମନେ ପଡୁନାହିଁ । ଜୀବନର ଅନେକାଂଶ ସେ କଟେଇଥିଲେ ଦକ୍ଷିଣ ଓଡ଼ିଶାରେ । ମନେପଡୁଛି ସେ ମତେ ଥରେ ଡାକି ନେଇଥିଲେ ବ୍ରହ୍ମପୁର କଳିଙ୍ଗ ସାହିତ୍ୟ ସମାଜକୁ, କେଉଁ ଏକ ବିଷୟରେ ଭାଷଣ ଦେବାକୁ, ସହବକ୍ତା ଥିଲେ - ଗାନ୍ଧିଙ୍କର ଅନୁଗାମୀ 'ମୋହନ ନାୟକ'ଙ୍କ ସହିତ ।

ଶିବରାମ କେବେ କେମିତି ମୋ ଘରକୁ ଆସୁଥିଲେ - ଆଳାପ ଆଲୋଚନା କରୁଥିଲେ- ଡିଙ୍କି ଶାଳରୁ ଢେଙ୍କାନାଳ ଯାଏ - ବାମପନ୍ଥୀ, ଦକ୍ଷିଣପନ୍ଥୀ, ଗାନ୍ଧିପନ୍ଥୀ ବିଚାରଧାରାର ବିଶ୍ଳେଷଣ ଓ ଓଡ଼ିଆ ସାହିତ୍ୟର ବିପଣୀରେ ତା'ର ସ୍ୱାକ୍ଷର ବିଷୟରେ- ତାଙ୍କରି ନିଷ୍ଠାପର ଉଦ୍ୟମରେ ଛପା ହୋଇଥିଲା - କଥା ଲାବଣ୍ୟବତୀ ।

ନିକଟ ଅତୀତରେ ତାଙ୍କର ପୁଅଙ୍କର ଯୁକ୍ତରାଷ୍ଟ୍ର ଆମେରିକାର ରହଣି କଥା ଗପୁଥିଲେ- ପୁଣି କେତେ କଣ ବଡ଼ ବଡ଼ ଲେଖକଙ୍କର 'ନିର୍ବାଚିତ ବିଚିତ୍ରା' (ଯେପରି ପ୍ରକାଶିତ ସୁରେନ୍ଦ୍ର ବିଚାର ମଞ୍ଜୁଷା) ପ୍ରକାଶନର ଯୋଜନା ପ୍ରସ୍ତୁତ କରୁଥିଲେ- ମୁଁ ତାଙ୍କୁ ବେଳେବେଳେ ଥଟ୍ଟାରେ କହୁଥିଲି- ତମେ ଲୌକିକ ବ୍ୟବସାୟିକ ଭିତ୍ତିରେ (ଲାଭ କ୍ଷତିର ହିସାବ ଭିତରେ) ପ୍ରକାଶନ ସଂସ୍ଥାକୁ ପକାଇ ପାରିବ ବୋଲି ବିଶ୍ୱାସ ଜନ୍ମୁନାହିଁ- କାରଣ ତମେ ଅତିମାତ୍ରାରେ 'ଭାବପ୍ରବଣ'-ଠିକ୍ ସାଂସାରିକ ଜୀବ ନୁହଁ ।

ଶରୀର ତ୍ୟାଗ କରିବା ପୂର୍ବରୁ ଦିନେ ରାତିରେ ଆସି ମୋଠୁଁ ଆଚାର୍ଯ୍ୟ ଭାବାନନ୍ଦ ରଚନାବଳୀ ଦୁଇ ଖଣ୍ଡ ନେଲେ - ପରେ ଆସିବେ ଓ ବ୍ୟବସାୟିକ ଦୃଷ୍ଟିରୁ ପ୍ରକାଶନ ସଂସ୍ଥାକୁ ଦୃଢ଼ କରିବାକୁ ଆଲୋଚନା କରିବେ ବୋଲି କହିଗଲେ । ତାଙ୍କର 'ଅବସର ଜୀବନ ହୁଏତ ଏଇଥିରେ କଟିଥାନ୍ତା । କିନ୍ତୁ ତାହା ହେଲାନାହିଁ- ସ୍ୱପ୍ନ ସାକାର ହେବାର ସମୟ ନଥିଲା, ସେଇଥି ପାଇଁ ବୋଧହୁଏ ସେ 'ସରସ୍ୱତୀ ପ୍ରକାଶନ'କୁ ଛାଡ଼ିଗଲେ ତାଂକ କନ୍ୟା ପ୍ରିୟଂବଦା ଓ ଜାମାତା ରମାକାନ୍ତଙ୍କ ହାତରେ । ସେମାନେ ବୋଧହୁଏ ଶିବରାମଙ୍କ ସ୍ୱପ୍ନକୁ ସାକାର କରିବେ ଏଇ ଭରସାରେ । ସେ ହିଁ ବୋଧହୁଏ ଏବେ ବି ପରାମର୍ଶ ଦେଉଥିବେ ପ୍ରିୟମ୍ବଦାଙ୍କୁ-ସ୍ୱପ୍ନରେ, ଜାଗରଣରେ-ସାଂସାରିକ ହେବାକୁ ସହଯୋଗ କରି ଚାଲିଥିବେ- ଓ କରି ଚାଲିବେ- ମୋର ତ ତାହାହିଁ ମନେ ହେଉଛି ।

# ସେ ଓ ମୁଁ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

| ସେ | ମୁଁ |
|---|---|
| ଏବେ ମୋର ଅଂତର୍ଗତ | ତାଂକ ସହିତ ଅତଂର୍ହିତ |
| ଗଂଜାମୀ | ସଂବଲପୁରୀ |
| ଓଡ଼ିଆ ଏମ୍.ଏ | ଇଂଲିଶ୍ ଏମ୍.ଏ. |
| ଏକ ଶବ୍ଦ ଭଂଡାର | ଏକ ଶବ୍ଦକୁଟୀର |
| ବନସ୍ପତି-ପ୍ରେମିକ | ତୁଳସୀ-ପାଳକ |
| ଧୈର୍ଯଶୀଳ ଶ୍ରୋତା | ଅନର୍ଗଳ ବକ୍ତା |
| ଗୁଣପୁର, ନବରଂଗପୁର, | ପାରଳାଖେମୁଂଡି, ରାଉରକେଲା |
| ବୋଲଗଡ଼, ଭୁବନେଶ୍ୱର | ବାଲେଶ୍ୱର, ଭୁବନେଶ୍ୱର |
| କଳା, ମୋଟା, ସୁସ୍ଥ | ଗୋରା, ପତଳା, ରୁଗ୍ଣ |
| ଧୀର, ମଂଥର, ଶାଂତ | ବ୍ୟଗ୍ର, ଚଂଚଳ, କ୍ଷୁବ୍ଧ |
| ସାହିତ୍ୟାସକ୍ତ, ସ୍ୱୟଂଗଠିତ | ସାହିତ୍ୟାକ୍ରାଂତ, ସ୍ୱେଚ୍ଛାଚାଳିତ |
| ମୁଦ୍ରଣ-ବିମୁଖ କର୍ମୀ | ମୁଦ୍ରଣ-ଉନ୍ମୁଖ କର୍ତା |
| ଅଜାତ ଶତ୍ରୁ, ସୁହୃଦ୍ | ଅଜ୍ଞାତ ଶତ୍ରୁ, ସୁହୃଦ୍ |
| ସୁନିୟୋଜିତ, ସ୍ଥିର | ବିପର୍ଯ୍ୟସ୍ତ, ଅସ୍ଥିର |
| ରୁଚିର ଆଧାର | ଅରୁଚିର ସଂସାର |
| ସଭାର ମଧ୍ୟମଣି | ଭିଡ଼ର ନିରବ ବାଣୀ |
| ଅପ୍ରତିମ ସଂଗ୍ରହକାରୀ | ବେରଂଗ ପତାକାଧାରୀ |
| ଶ୍ରଦ୍ଧା-ବିଜଡ଼ିତ ହସ | ମୂର୍ଖାମି-ଭରା ଦୁଃସାହସ |
| ଆତ୍ମୀୟତାର ମହକ | ନିର୍ଲିପ୍ତତାର ବହପ |
| ସାବଧାନ ପଥଚାରୀ | ବେପରୁଆ ଗୃହବାସୀ |
| ନାହିଁ | ପ୍ରତୀକ୍ଷାରେ |
| ଶିବରାମ ପାତ୍ର | ପ୍ରଫୁଲ୍ଲ ତ୍ରିପାଠୀ |
| ତଥ୍ୟବାନ୍ ସତ୍ୟାନ୍ୱେଷୀ | କଥ୍ୟବାନ୍ ମତାନ୍ୱେଷୀ |
| ମୋର ପ୍ରିୟ ସ୍ମୃତିବାସୀ | ପ୍ରପଂଚ ମର୍ତ୍ୟର ପ୍ରବାସୀ |
| ମୁଗ୍ଧ ମଧୁର ଆଳାପ | ଦଗ୍ଧ ବିଧୁର ବିଳାପ |

୦୦୪, ସୂର୍ଯ୍ୟ ଏପାର୍ଟମେଂଟ୍
ଭୁବନେଶ୍ୱର-୭୫୧୦୧୪

# ମୁଁ ତମକୁ ଭଲପାଏ..ତମକୁ ଖୋଜୁଥାଏ

ଡକ୍ଟର ନିଖିଳାନନ୍ଦ ପାଣିଗ୍ରାହୀ

ଶିବରାମ ମୋର ପ୍ରିୟପାତ୍ର ଥିଲେ । କଲେଜ ସମୟର ବିଷୟ । ମନେପଡୁଛି, ସେ ବି. ଶିବରାମ ପାତ୍ର ବୋଲି ପରିଚିତ ଥିଲେ । ପରେ ପରେ ସେ 'ବି' ଏଣ୍ଟୁପେରୁରୁ ନିଜକୁ ମୁକ୍ତ ରଖିଥିଲେ । ସେ ଏକଦା ବ୍ରହ୍ମପୁରର ଗାଂଧୀ ନଗରରେ ବସା କରି ରହୁଥିଲେ । ଗାଂଧୀ ନଗରରେ ବ୍ରହ୍ମପୁର ସହରର ଚିହ୍ନବର୍ଣ୍ଣ ନଥିଲା- ଯଦିଚ ଏହା ବର୍ତ୍ତମାନ ବ୍ରହ୍ମପୁରର ହୃତପିଣ୍ଡ ପରି । ଚାରି ଆଡ଼େ ଖୋଲାମେଲା । ଚାଷ ଜମି, ତାଙ୍କ ବସାଘରେ ଆମର ଅନେକ ଥର ଭେଟ ହୁଏ । ନିରୋଳାରେ କଥାଭାଷା ଚାଲେ- ସାହିତ୍ୟ ସମେତ ଅନ୍ୟାନ୍ୟ ବିଷୟରେ ।

ମନେପଡୁଛି, ଏକଦା ସେ ଓଡ଼ିଶାର ଲାଭଦାୟକ ଅଗ୍ରଣୀ ପରିବହନ ସଂସ୍ଥା ଓ ଆର୍.ଟି.ରେ ଚାକିରି କରୁଥିଲେ । ଭଲ ଦରମା ନିୟମିତ ଭାବେ ମିଳୁଥାଏ । ସେତେବେଳେ ଗଂଜାମର ଗୌରବ ଭାବେ ପରିଚିତ ଓ.ଆର.ଟି ସଂସ୍ଥା ଛାଡ଼ି କମ୍ ଦରମା ହେଲେ ମଧ୍ୟ, ଅଧ୍ୟାପନା ଚାକିରୀରେ ଯୋଗଦେବାପାଇଁ ନିଷ୍ପତ୍ତି ନେଲେ । ମୁଁ ତାଙ୍କୁ ଏଇ ପରିବର୍ତ୍ତନ ପାଇଁ ମଧ୍ୟ ଉତ୍ସାହିତ କରିଥିଲି । ତାଙ୍କ ସାହିତ୍ୟ ଅନୁରାଗ ଓଡ଼ିଆ ବିଭାଗରେ ଅଧ୍ୟାପନା ପାଇଁ ଅନୁକୂଳ ଓ ଉଦ୍ଦୀପକ ହେଲା ।

ସେ ଓ ମୋର ଅନ୍ତରଂଗ ବଂଧୁ ✓ କବି ଗୋପାଳ କୃଷ୍ଣ ରଥ (ଆତ୍ରେୟ) ବ୍ରହ୍ମପୁରସ୍ଥିତ ଅଗ୍ରଣୀ ସାହିତ୍ୟାନୁଷ୍ଠାନ କଳିଙ୍ଗ-ସାହିତ୍ୟ-ସମାଜକୁ ଅତ୍ୟନ୍ତ ସକ୍ରିୟ କରି ରଖିପାରିଥିଲେ । ବାସ୍ତବିକ୍ ଶିବରାମଙ୍କର ସାହିତ୍ୟ-ସଂଗଠନ କ୍ଷେତ୍ରରେ ଅବଦାନ ଅତୁଳନୀୟ । ପରବର୍ତ୍ତୀ କାଳରେ ମୁଁ ଦକ୍ଷିଣ ଓଡ଼ିଶାର ଆଂଚଳିକ ଶିକ୍ଷା ନିର୍ଦ୍ଦେଶକ ଭାବେ ଗୁଣୁପୁର, ନବରଂଗପୁର ଇତ୍ୟାଦି କଲେଜ ପରିଦର୍ଶନ କରିବାବେଳେ ତାଙ୍କର ସାହିତ୍ୟ-ସଂଗଠନର ଭୂମିକା ନେଇ ଉଚ୍ଛ୍ୱସିତ ପ୍ରଶଂସା ଶୁଣିବାକୁ ପାଇଥିଲି । ମୋଟାମୋଟି ଭାବେ ତାଙ୍କର ଏଇ ସଫଳତା ଦକ୍ଷିଣ-ଓଡ଼ିଶାର ସାହିତ୍ୟିକ ବାତାବରଣ ପାଇଁ ଏକ ଐତିହାସିକ ମାଇଲ ଖୁଣ୍ଟ ହୋଇ ରହିବ ।

ମୋର ମନେପଡୁଛି, ୧୯୮୫ ସାଲରେ ମୁଁ ବ୍ରହ୍ମପୁରର ସରକାରୀ ମହିଳା ମହାବିଦ୍ୟାଳୟରେ ପଦାର୍ଥ ବିଜ୍ଞାନରେ ଅଧ୍ୟାପନା କରୁଥିବା ବେଳେ, ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଛାତ୍ରାବାସରେ ରହୁଥିଲେ । ମୋର ଗୋଟିଏ ଲେଖାପଢ଼ି ସେ ନିଜର ପ୍ରତିକ୍ରିୟା ଜଣାଇବା ଜରୁରୀ ବୋଲି ମନେ କଲେ । ଯଦିଓ ବ୍ରହ୍ମପୁର ଓ ଭଂଜବିହାର ମଧ୍ୟରେ ଦୂରତା ମୋଟେ ୧୦-୧୫ କିଲୋମିଟର, ସେ ଏଇ ଯାତ୍ରା ଜଂଜାଳକୁ ଏଡ଼ାଇ ତତ୍‌କ୍ଷଣାତ୍ ନିଜ ପଢ଼ା-ରୁମ୍‌ରୁ ଚିଠିଟିଏ ଲେଖିଥିଲେ । ସେ ଚିଠିଟିଏ ଲେଖିଥିବା ଯୋଗୁଁ, ମୁଁ ଗୋଟିଏ ମୂଲ୍ୟବାନ ଓ ସ୍ମରଣୀୟ ବସ୍ତୁଟିଏ ପାଇଥିବାରୁ ନିଜକୁ ଭାଗ୍ୟବାନ ମନେକରୁଛି ।

ଉକ୍ତ ଚିଠିରେ ଶିବରାମ ଦୁଇଟି ବିଷୟ ଉପରେ ଗୁରୁତ୍ୱ ଦେଇଛନ୍ତି । ମୋ

ଲେଖାର ପ୍ରଶଂସା ଏବଂ 'ସମାଜ' ପରି ପ୍ରତିଷ୍ଠିତ ସମ୍ବାଦପତ୍ରରେ ଲେଖା ପ୍ରକାଶ କରିବା । ତାଙ୍କ ମୂଳ ଉଦ୍ଦେଶ୍ୟ ଥିଲା ଗଂଜାମ ଜିଲ୍ଲାର ଜଣେ ବ୍ୟକ୍ତି ରାଜ୍ୟ ସ୍ତରରେ ସିଂହାସନରେ ଆସୀନ ହେଉ । ତେଣୁ ସେ ମତେ ଓଡ଼ିଶା ସାହିତ୍ୟ ଏକାଡେମୀ ସହିତ ସଂପୃକ୍ତ ହେବା ପାଇଁ ତଥା 'ଝଙ୍କାର' ପତ୍ରିକା ପାଇଁ ଲେଖିବାକୁ ବାରମ୍ବାର ପ୍ରବର୍ତ୍ତାଉଥିଲେ । ମୁଁ ତାଙ୍କ କଥା ମାନି ବହୁବାର ଏଇ ଦୁଇଟି ପତ୍ରପତ୍ରିକାକୁ ଲେଖାପଠାଇଛି । ସେଥିରେ ଅଳ୍ପ କିଛି ପ୍ରକାଶିତ ହୋଇଛି । ଅନେକ ହୁଏତ ପ୍ରତ୍ୟାଖ୍ୟାତ ହୋଇଛି ଏବଂ ଆଉ କେତୋଟି ପ୍ରକାଶିତ ହେଉଥିବ - ଯାହାର ଖବର ମୋ ନିକଟରେ ନାହିଁ (ପ୍ରକୃତରେ ଏଇ ପତ୍ରପତ୍ରିକାର ସଂପାଦକଙ୍କ ଠାରୁ ମୁଁ ଖବର ପାଏ ନାହିଁ, ଯାହା ପାଠକଙ୍କ ଚିଠି ପତ୍ରରୁ ବିଷୟଟି ଜାଣିଥାଏ ।) ଏଣୁ ଏଇ ମର୍ମରେ ଶିବରାମଙ୍କୁ କହେ, ''ସେମାନେ ଆମକୁ ଆକ୍ରମଣକାରୀ ବୋଲି ନ ଭାବି, ଆଗନ୍ତୁକ, ଅତିଥି-ସାହିତ୍ୟିକ ବୋଲି ଭାବିଲେ ଭଲ ହେବ । ସେଥିପାଇଁ ଆମକୁ ଲକ୍ଷ୍ମଣରେଖା ଟାଣିବାକୁ ପଡ଼ିବ କି ?''

ଉକ୍ତ ଚିଠିଟିର ଆଉ ଗୋଟିଏ ଦିଗ ହେଉଛି- ସେ ମତେ କେତୋଟି ନିର୍ଦ୍ଦିଷ୍ଟ ବିଷୟରେ ଲେଖିବାକୁ ପରାମର୍ଶ ଦେଇଥାନ୍ତି, ଏଠାରେ ମୁଁ କହିରଖେ ଯେ, ମୁଁ ସମସ୍ତଙ୍କ କଥା ଖୁବ୍ ମନଦେଇ ଶୁଣେ, କିନ୍ତୁ ତତ୍‌କାଳ ସେଇ କାମ କରିପକାଏ ନାହିଁ, ଯେତେବେଳେ ଏଥିପାଇଁ ସମୟ ଓ ସୁଯୋଗ ଆସେ, ମୋ ମନ ଛୁଇଁଲେ, ମୁଁ ତାହା କାର୍ଯ୍ୟକାରୀ କରେ । ଦୁଃଖର ବିଷୟ - ଶିବରାମଙ୍କ ସେଇ ବିଷୟଟି ବର୍ତ୍ତମାନ ସୁଦ୍ଧା ଅପୂରଣୀୟ ହୋଇ ରହିଛି ।

ମୃତ୍ୟୁର କିଛି ମାସ ପୂର୍ବରୁ ଶିବରାମ ବ୍ରହ୍ମପୁରର ଆମ ଘରକୁ ଆସିଥିଲେ । ମୁଁ ସେତେବେଳେ ଅଫିସରେ ଥାଏ । ସେ ତରବରରେ ଥିବା ଯୋଗୁଁ ମୋ ସହିତ ସାକ୍ଷାତ ହୋଇ ପାରି ନ ଥିଲା । ତେବେ ତାଙ୍କ ଅକ୍ଳାନ୍ତ ପରିଶ୍ରମର ସାର୍ଥକ ସୃଷ୍ଟି 'ସୁରେନ୍ଦ୍ର ବିଚାର ମଞ୍ଜୁଷା'ର ଗୋଟିଏ କପି ମୋ ପାଇଁ ଘରେ ରଖିଦେଇ ଯାଇଥିଲେ । ସେତେବେଳେ ମୋ ସହିତ ଫୋନରେ ଅଳ୍ପସମୟ କଥା ହୋଇଥିଲେ, ଯାହାକି ତାଙ୍କ ସହିତ ମୋର ଅନ୍ତିମ ବାର୍ତ୍ତାଳାପ ହେଲା । ସେତେବେଳେ ମତେ ସେ ଭୁବନେଶ୍ୱରରେ ରହିବାକୁ ପ୍ରବର୍ତ୍ତାଇବାକୁ ଚେଷ୍ଟା କରିଥିଲେ ଏବଂ ଉତ୍ତର ଭାବେ ମୁଁ କହିଥିଲି, ''...ଅତିଥି, ଆଗନ୍ତୁକ, ପରିବ୍ରାଜକ ନା ଆକ୍ରମଣକାରୀ ଭାବେ.. ?'' ଏଇ ବିଷୟରେ ପରେ ଅଧିକ କଥାହେବା ବୋଲି ମୁଁ କହିଥିଲି । କିନ୍ତୁ ହୃଦଘାତରେ ତାଙ୍କର ଆକସ୍ମିକ ବିୟୋଗ ହେବାରୁ ଆଉ ଆମ ମଧ୍ୟରେ ମତ ବିନିମୟ ହୋଇ ପାରିଲାନାହିଁ । ଏମିତି ଅନେକ କିଛି ଅସମାପ୍ତ କଥା ଅଧପନ୍ତରିଆ ହୋଇ ରହିଯାଇଛି ।

ଆମେ ମୃତ୍ୟୁକୁ ଜୀବନର ପୂର୍ଣ୍ଣଚ୍ଛେଦ ବୋଲି ଗ୍ରହଣ କରୁନାହୁଁ । ଆମର ବିଶ୍ୱାସ ଯେ, ମଣିଷ ମଲାପରେ ଭିନ୍ନ ପ୍ରକାରେ ବଂଚେ । ତେବେ ତାର ଏହି ବଂଚିବା ଶୈଳୀ ଓ ବୈଶିଷ୍ଟ୍ୟ ବିଷୟରେ ଆମେ କିଛି ଅନୁମାନ କଲେ କ୍ଷତି ନାହିଁ । ଆମେ ଜାଣୁଁ, ମଣିଷ ମଲାବେଳେ ଯାହା କିଛି କହେ, ତାହା ସତ । ମରିବା ପରେ ମୃତକର ଏଇ ମନୋଭାବ ଅତୁଟ ରହିବ ଓ ସେ ସତ୍ୟବାଦୀତାରୁ ଓହରି ଯିବ ନାହିଁ ବୋଲି ଆମେ ଆଶା କରୁଛୁ ।

ଜର୍ଜେନସନ୍‌ଙ୍କ ଇଭିପି ଯନ୍ତ୍ରରୁ ମୃତ ପ୍ରିୟଜନଙ୍କ ଯେଉଁ ସଂକ୍ଷିପ୍ତ ଓ କ୍ଷୀଣ ସ୍ୱର ଭାସିଆସୁଛି, ସେଥିରୁ ସେମାନେ ''ମୁଁ ତମକୁ ଭଲପାଏ..ତମକୁ ଖୋଜୁଥାଏ'' ବୋଲି ଯାହା ଉଚ୍ଚାରଣ କରୁଛନ୍ତି, ତାହା ନିରାଟ ସତ୍ୟ ବୋଲି ଆମର ବିଶ୍ୱାସ । ଆମେ

ସେମାନଙ୍କଠାରୁ ଯେମିତି ଢଙ୍ଗରେ ଶବ୍ଦ ଓ ସ୍ୱରମାନଙ୍କର ଆଭାସ ପାଉଛୁ, ସେମାନେ ମଧ୍ୟ ଆମଠାରୁ ସେମିତି ସୂଚନା ପାଉଥିବେ ବୋଲି ଆମର ଆଶା । ଏଇ ପୃଷ୍ଠଭୂମିରେ ଆମେ ନିଜ ମୃତ ପ୍ରିୟଜନଙ୍କୁ ଜଣାଇଦେବାକୁ ଚାହୁଁ ଯେ, ଆମେ ମଧ୍ୟ ଅବିକଳ ସେମିତି 'ମୁଁ ତୁମକୁ ଭଲପାଏ.. ତମକୁ ଖୋଜୁଥାଏ..' ବାକ୍ୟରେ ପ୍ରତ୍ୟୁତ୍ତର ଦେବାକୁ ଚାହୁଁ ।

ଉତ୍କଳ ଆଶ୍ରମରୋଡ଼,ବ୍ରହ୍ମପୁର-୭୬୦୦୦୧

## ଅପହଂଚ ଇଲାକାକୁ ଚିଠିଟିଏ

ବିପ୍ର ଆଚାର୍ଯ୍ୟ

କୁଆଡ଼େ ଗଲ ଶିବରାମ, ସକାକୁ ଜଳଖିଆ ଖାଇବାକୁ ଆସିବ ବୋଲି କହିଦେଇ ଗଲ ଯେ ଗଲ । ଦେଢ଼ବର୍ଷ ତଳେ ରାତି ଅଧିଆ ଆସିଥିଲ ଆମ ଘରକୁ ବ୍ରହ୍ମପୁରରେ । ରାତି ୧୧ଟା ପାଖାପାଖି ହେବ । ଆମେ ଦୁଇପ୍ରାଣୀ ଖାଇପିଇ ଶୋଇବାକୁ ଯାଉଚୁ, ଆସିଗଲ, କୁଆଡ଼େ ବୁଲିବୁଲି । ଝୁଲାମୁଣିରେ ଓଡ଼ିଆ ସାହିତ୍ୟର ସଂଗୃହୀତ କାଗଜପତ୍ର; କପାଳରେ ତାଙ୍କର ଓଡ଼ିଆ ସାହିତ୍ୟର ରେଖାଙ୍କିତ ଚିନ୍ତା; ଉଜ୍ଜ୍ୱଳ ଆଖିରେ ସବୁ କରିନେବାର ସ୍ୱପ୍ନ ଆଉ ଆସ୍ପର୍ଦ୍ଧା; ଶାଣଦିଆ କଥାରେ ସ୍ନେହ ସଜଳ ବର୍‌ହମ୍‌ପୁରିଆ ଧ୍ୱନିର ଶୋଇପଡ଼ିଲ କିହେ କର୍ମକୋଢ଼ି କବି ! କିଛି ତ କଲନି । କେତେକଥା କରିପାରିଥାନ୍ତ - କିଛି କଲନି । ଇଏତ ଓଡ଼ିଆ ସାହିତ୍ୟର ଭାଗ୍ୟ ! ଝଡ଼ ଭଳି ଆସିଥିଲ, ଝଡ଼ ଭଳି ପଳେଇଲ ସେତେ ରାତିରେ ସୁଦର୍ଶନ ଆଚାର୍ଯ୍ୟଙ୍କ ଘରକୁ କ'ଣ ଥେସିସ୍ ଡିସ୍‌କସନ୍ କରିବ ବୋଲି । ପଚାରିବାକୁ ବି ବେଳ ଦେଲନି, ଖାଇଚ କି ନାହିଁ, ରାତିରେ କୋଉଠି ରହିବ । କହିଦେଇ ଚାଲିଗଲ ଯେ ସକାକୁ ଖାଇବାକୁ ଆସିବ, ଆମେତ ଜଗିଚୁ ସେଇଦିନୁ ।

କ'ଣ ତମର ଠିକଣା ଥାଏ ଶିବରାମ, କେଉଁଠି କେତେବେଳେ ଦେଖାହେବା ! ତମ ପ୍ରଥମ ଦେଖା ଅଚାନକ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ ୬୬ କି ୬୭ ମସିହାରେ । ଝଂକାରରେ ମୋର କବିତାଟିଏ ବାହାରିଥାଏ । ଧକ୍କା ମାରିଲାଭଳି ବୃଷାଙ୍କ ଚେହେରାରେ ସାମନାକୁ ଚାଲିଆସିଲ । ଧମକେଇଲା ଭଳି ପଚାରିଲ ଗୋଟେ ନିଃଶ୍ୱାସରେ - ତମ ନାଁ ବିପ୍ର ଆଚାର୍ଯ୍ୟ, ଗଞ୍ଜାମ ଜିଲ୍ଲାରେ ଘର ? ମୋ ଘର ଆସ୍କା । ନାଁ ଶିବରାମ ପାତ୍ର । କବିତାଟିଏ ଦେବ ଆମ ଆସ୍କାରୁ ମାଗାଜିନ୍‌ଟିଏ ବାହାରୁଚି ଦିଲୀପ ଦାସଙ୍କ ସଂପାଦନାରେ । ମୁଁ ଏଇ ବସ୍‌ଷ୍ଟାଣ୍ଡର ଉପର ମହଲାରେ ଚାକିରୀ କରୁଚି, ବି.ଜେ.ବି. ଇଭିନିଂରେ ପଢୁଚି । ଦେଖାହେବ । ମୋଠୁ କିଛି ଶୁଣିବା ପୂର୍ବରୁ ଚାଲିଗଲ । ମୁଁ ଖାଲି ଚାହିଁ ରହିଥିଲି ନିର୍ବାକ୍ ନିଷ୍ପଲକ ମୁହଁରେ ଗଞ୍ଜାମ ଓ ଓଡ଼ିଆ ସାହିତ୍ୟକୁ ନେଇ ଗର୍ବ କରୁଥିବା ଏଇ ସ୍ପର୍ଦ୍ଧିତ ମଣିଷକୁ । ତା'ପରେ ବାରମ୍ବାର ଦେଖା - ଭୁବନେଶ୍ୱର ଗୋଦାବରୀଶ ସାହିତ୍ୟ ସଂସଦ, ବ୍ରହ୍ମପୁର କଳିଙ୍ଗ ସାହିତ୍ୟ ସମାଜ, ଗୁଣପୁର ବଂଶଧାରା ସାହିତ୍ୟ ସମାଜ, ଅନୁଗୁଳ ସାହିତ୍ୟ ସଂସଦ - ଇମିତି କେତେ ସଂସଦ କେତେ ସଭା, କେତେ ଆଲୋଚନା ସଭାରେ । ସବୁଠି ତମେ ଆଗୁଆ, ସାହିତ୍ୟ ସଭା ଯୋଗାଡ଼ କରିବାରେ, ଆଲୋଚନା କରିବାରେ, ଭାଷଣ

ଦେବାରେ ଓ କିଏ କିଛି କରୁନାହାନ୍ତି ବୋଲି ବିକଳ ହେବାରେ ।

କ'ଣ ସାହିତ୍ୟକାର୍ଯ୍ୟ କରୁଥିଲ ଶିବରାମ ? ମୋର ନକାରାତ୍ମକ ଚିନ୍ତା ଏମିତି ପଚାରିଦେଲେ ତମ ଓଠ ଥରୁଥିଲା, ଆଖି ତେଜୀୟାନ୍ ହେଉଥିଲା । ଏଡ଼େବଡ଼ ନାକପୁଡ଼ା ଫୁଲି ଯାଉଥିଲା ଓ ତମେ ଟେରରିଷ୍ଟ ଭଳି ଦେଖାଯାଉଥିଲ । କ'ଣ ନକରୁଚି ! କହୁଥିଲ । ପିଲାଙ୍କୁ, ସାଧାରଣ ଲୋକକୁ, ଅଧ୍ୟାପକ ଶିକ୍ଷକମାନଙ୍କୁ, ତମକୁ, ତାଙ୍କୁ ଚିହ୍ନା ଅଚିହ୍ନା ସମସ୍ତଙ୍କ ସାଙ୍ଗରେ ତ ଲାଗିଚି, ଯାହା ପାରୁଚି ଓଡ଼ିଆ ସାହିତ୍ୟ ପାଇଁ କାମ କରିବାକୁ । ଓଡ଼ିଆ ଲେଖା ବହି ମାଗାଜିନ୍ କିଣି, ସଭା ସମିତିରେ ଆଲୋଚନା କର । ଓଡ଼ିଆ ସାହିତ୍ୟ ଦବି ଦବି ଯାଉଚି, ମଇଳାମଳା ଦିଶୁଚି, ଉଠୁ, ଉପରକୁ ଉଠୁ । ମୁଁ ପଚାରେ କ'ଣ ଉଠୁଚି ? ତମେ ଏକରକମ୍ ଗର୍ଜି ଉଠ, ଉଠୁନି ଆଉ କଣ ? ବ୍ରହ୍ମପୁରରେ ଏବେ ମୋଟ୍‌ରେ ୧୮ଟି ସାହିତ୍ୟ ସଂସଦ । କେତେ ଲେଖକ, କବି ଏକାଠି ହେଉଛନ୍ତି ପ୍ରତି ମାସରେ । ଗପ, କବିତା ପଢ଼ୁଛନ୍ତି । ବାର୍ଷିକ ଉତ୍ସବ କରୁଚନ୍ତି । ବହି ମାଗାଜିନ୍ ଛାପୁଚନ୍ତି । ଏମିତି ଓଡ଼ିଶାର ସବୁ ସହର, ମଫସଲ୍‌ରେ । ତମକୁ ଦିଶୁନି ଏଗୁଡ଼ାକ ସବୁ ।

କେବେ ତମର ଶାରୀରିକ କି ମାନସିକ କ୍ଲାନ୍ତି ନଥିଲା । ଗଭୀର ଆଶା ଓ ବିଶ୍ୱାସରେ ଖଟୁଥିଲ । ଖାଇବା, ଶୋଇବା କେଉଁଥିରେ ଠିକ୍ ଠିକଣା ନଥିଲା । ଗଦ୍ୟ ସାହିତ୍ୟ ପ୍ରତି ତମର ପ୍ରବଳ ଆସକ୍ତି ଥିଲା । ସୁରେନ୍ଦ୍ର ମହାନ୍ତି ଓ ମନୋଜ ଦାସଙ୍କ ପ୍ରତି ତମର ଗଭୀର ସ୍ନେହ, ଶ୍ରଦ୍ଧା ଓ ଭକ୍ତି ଥିଲା, ଉଭୟ ବ୍ୟକ୍ତି ଓ ଲେଖାପ୍ରତି । ଘଣ୍ଟା ଘଣ୍ଟା ଧରି ସେମାନଙ୍କ ବିଷୟରେ ଗପୁଥିଲ । ସୁରେନ୍ଦ୍ର ବାବୁଙ୍କ ଲେଖା ଉପରେ କଣ କାମ କରିଥିଲ, ବହି ଛାପିଥିଲ । ମନୋଜ ବାବୁଙ୍କ ଉପରେ କରୁଚ ବୋଲି କହୁଥିଲ ।

କୁଆଡ଼େ ଗଲ ଏବେ ଶିବରାମ ! ସମସ୍ତେ କହୁଚନ୍ତି ଏଠି, ତମର କଳିଙ୍ଗ ସାହିତ୍ୟ ସମାଜର ବନ୍ଧୁମାନେ, ତମେ କୁଆଡ଼େ ସେମିତି ଅଖିଆ, ଅପିଆ, ଅଶୁଆ ହୋଇ ସାହିତ୍ୟ କର୍ମରେ ବୁଲୁଥିଲ ଫୁଲବାଣିରେ କି ବାଣୀବିହାରରେ ଯେ ତମ ଦିହ ତମକୁ ସହିପାରିଲାନି । ତମକୁ ଛାଡ଼ି ଚାଲିଗଲା । ହେଇଥିବ, ମୁଁ ତ ମାନି ପାରୁନି । ଦିହ ସିନା ଛାଡ଼ି ଦେଲା, ତମେତ ଏଠି କୋଠି ବୁଲୁଥିବ, ଆସିବ କହିଥିଲ ଆସିବ ଯେ ! ସ୍ୱଦେହରେ ନହେଲେ ବି ସ୍ୱପ୍ନରେ ନିଶ୍ଚୟ ଆସିବ । ଆମର ଏଠିକାର କହିବା ଢଙ୍ଗରେ ଗାଳି କରିବାକୁ, ମାଡ଼ଗୋଳ ଲାଗିବାକୁ, ତମେ କାହିଁକି କିଛି ସାହିତ୍ୟକାର୍ଯ୍ୟ କରୁନ ବୋଲି କହିବାକୁ । ସତରେ ଶିବରାମ, ତମର ଅବର୍ତ୍ତମାନରେ ଆଉ କିଛି କରିବାକୁ ମନ ହେଉନି । ଗୀତରେ ହେଉ କି କଥାରେ ହେଉ; କବିତାରେ ହେଉ କି ପ୍ରବଂଧରେ ହେଉ । ଆସନା ଥରେ ସ୍ୱପ୍ନରେ ହେଲେ ଶିବରାମ !

ଜି-ii- 43,ଗୋଦାବରୀଶ ନଗର
ବ୍ରହ୍ମପୁର-୧

# ଶେଷ ଯାତ୍ରାର ସାରଥି

ଦୀପ୍ତିରଞ୍ଜନ ପଟ୍ଟନାୟକ

ମୁଁ କଳ୍ପନା କରିନଥିଲି ମୋତେ ଶେଷ ଯାତ୍ରାର ସାରଥି ହବାକୁ ପଡ଼ିବ ବୋଲି ।

ଯାତ୍ରା ପାଇଁ ପ୍ରସ୍ତୁତି ନଥିଲା ଆଦୌ । ଢାମାଯୋଡ଼, ପାଗଯୋଗ, କିଛି ବି ନଥିଲା । ଦୁନ୍ଦୁଭି ଯଦି ବି ବାଜିଥିବ, ଶବ୍ଦ ପଡ଼ିନଥିଲା କାନରେ । ସେମିତି କିଛି ସ୍ୱାତନ୍ତ୍ର୍ୟ ନଥିଲା ସେହି ମୁହୂର୍ତ୍ତରେ । ଆବଶ୍ୟକତାଠାରୁ ଯଥେଷ୍ଟ ଅଧିକ ଉତ୍ତପ୍ତ ଥିଲା ସେଦିନର ଖରା ।

ସବୁଥର ଭଳି ଦେଖାହେଲା । ବିଜ୍ଞମାନଙ୍କ ଗହଳିରେ ଆମେ ଦୁଇ ବକ ବାରି ହେଇ ପଡୁଥିବୁ କି କ'ଣ ସବୁଥର ଭଳି । ହାତର ଝୁଲାମୁଣିରୁ ଉଙ୍କି ମାରୁଥିଲେ ବଣମଦ-ଧୂର୍ତ୍ତ ଫକୀରମୋହନ; ଦେବେନ୍ଦ୍ର ଦାଶ୍‌ଙ୍କ ପ୍ରଜ୍ଞାରେ ଗ୍ରନ୍ଥାୟିତ ହୋଇ । ବହୁଦିନୁ ମୋ ପାଖରୁ ନେଇଥିଲେ କୌଣସି ଗବେଷଣା ଉଦ୍ଦେଶ୍ୟରେ ।

''ସରିଗଲା ? ଫେରେଇବାକୁ ଆଣିଛନ୍ତି ତ ?'' କିଛି ଆତୁରତାର ସହ ପଚାରିଲି । ''ଚାଲ ଘରକୁ ପ୍ରଥମେ । ଆଗ ଭୋଜନ କର । ଘରକୁ ଯିବା । ସେଇଠି ଦେବି ।'' ସବୁଥର ଭଳି ପ୍ରାଥମିକ ରହସ୍ୟମୟତା ପ୍ରଦର୍ଶନ କରି କହିଲେ ସିଏ । ଘରେ ପହଞ୍ଚି ମୁହଁ ଶୁଖିଗଲା ତାଙ୍କର ।

''କୁଆଡ଼େ ଯାଇଛନ୍ତି କି ?'' ତାଲା ଖୋଲିବା ଭିତରେ ମୁଁ ଜବାବ ଦେଲି, ''ହଁ ଘରକୁ ଯାଇଛନ୍ତି କଟକ, ଦି'ଦିନ ହେବ ।''

ପିଲାମାନଙ୍କୁ ଦେଖିବି ବୋଲି ଆସିଥିଲି । ତା' ଛଡ଼ା ଏଇ ନୂଆ ବହିଟା ଖଣ୍ଡିଏ ମାତ୍ର ଆଣିଥିଲି ତମ ପାଇଁ । ଭିଡ଼ ଭିତରେ ଦେଖେଇଲି ନାହିଁ । ଏଇ କାମଟା ପାଇଁ ତମଠୁ ନେଇଥିଲି ଗ୍ରନ୍ଥାବଳୀ । ବହି ଥୁଅ । ଫେରିଯିବା । ଘରେ ଆଉ କ'ଣ କରିବା ?''

ଅଗତ୍ୟା ଫେରିଲୁ । ପୁଣି ସମ୍ମାନର ଅଧିବେଶନ । ଚିତ୍ତଭାଇ ଭାଷଣ ଦେବାର ଥାଏ । ତରବର ହେଇ ଭିତରକୁ ପଶିଲି । ଶିବରାମ ଭାଇ କୌଣସି କାରଣରୁ ରହିଗଲେ ବାହାରେ । ଚିତ୍ତଭାଇଙ୍କ ପୂର୍ବବର୍ତ୍ତୀ ବକ୍ତା ଜଣେ ପ୍ରବନ୍ଧ ପଢୁଥା'ନ୍ତି । ବାହାରୁ ଇଶାରା ଦେଲେ ଶିବରାମ ଭାଇ । ଆସିଲି । କହିଲେ, ''ମୋର ଦେହ କାହିଁକି ଭଲ ଲାଗୁନି । ବୋଧେ ଗ୍ୟାସ୍ ହେଇଗଲା । ତିନିଦିନ ଧରି ବୁଲୁଛି । ରାତି ଅନିଦ୍ରା । ଖାଇବା ପିଇବା ଠିକ୍ ନାହିଁ ତ ।''

''ଗୋଟେ କାମ କରନ୍ତୁ । ଆମ ଘରେ ଛାଡ଼ିଦେଉଛି । ଟିକେ ବିଶ୍ରାମ ନେଇଯା'ନ୍ତୁ ।'' ମୁଁ ପ୍ରସ୍ତାବ ଦେଲି ।

''ନା ମୁଁ ଘରକୁ ଚାଲିଯିବି । ତମେ ମୋତେ ଅଟୋଷ୍ଟାଣ୍ଡରେ ଛାଡ଼ିଦିଅ ।''

''ଦେହ ଭଲ ଲାଗୁନି କହୁଛନ୍ତି, ଏଇନା ଅଟୋରେ ଯିବେ ?'' ୧୯୯୭ର ସନ୍‌ଷ୍ଟ୍ରୋକ୍ ସ୍ମୃତି ତାଜାଥାଏ । ମନରେ ।

''କିଛି ପରବାୟ ନାହିଁ । ଭାଉଙ୍କ ପାଖରେ ଗୋଟେ ବଟିକା ଅଛି, ଖାଇଦେଲେ ଭଲ ଲାଗିବ । ଆଗରୁ ଥରେ ଏମିତି ହେଉଥିଲା । ସେଇ ବଟିକା ଖାଇ ଭଲ ହେଲା ।''
''ଆପଣଙ୍କ ମୁଣ୍ଡ ଖରାପ ହେଇଗଲାଣି । ଏ ଉଦୁଉଦିଆ ଖରାରେ ଆପଣ ଏଇନେ ଯିବେ, ପୃଥିବୀ ଯୋଉଠି ସରିଛି ?''
''କିଛି ନାହିଁ ମୁଁ ଚାଲିଯିବି । ଥାଉ ତମେ ହେଲେ ଥାଅ । ମୁଁ ଚାଲିକି ପଳେଇବି ବାଣୀବିହାର ଅଟୋଷ୍ଟାଣ୍ଡ୍ ।'' ଚିତ୍ତଭାଇଙ୍କ ଭାଷଣ ପ୍ରତି ମୋର ଆଗ୍ରହ ଯୋଗୁଁ ମୁଁ କାଳେ ବାହାରୁ ନଥିବି ବୋଲି ସନ୍ଦେହ କରୁଥା'ନ୍ତି ବୋଧେ ।
''ଆପଣ ଜିଦି କରିବେ ଯଦି, ମୁଁ କ'ଣ କରିବି ଆଉ ?'' ତେବେ ସ୍କୁଟରରେ ଯିବାନି । ରୁହନ୍ତୁ ମୁଁ ଦେଖେ ।''

ସମ୍ମାନ ନିର୍ଦ୍ଦେଶକ ପ୍ରଫେସର ଫକୀରମୋହନ ସାହୁଙ୍କ କାନରେ ଯାଇ ଆସ୍ତେ କରି ପଚାରିଲି ।

''ସାର୍, ଶିବରାମ ଭାଇଙ୍କ ଦେହ ହଠାତ୍ ଖରାପ ହେଇଗଲା । କାର୍‌ରେ ତାଙ୍କୁ ପଠେଇହବ କି ?''

ଚିର ବଦାନ୍ୟ ଫକୀରସାର୍ କହିଲେ ''ଆରେ ଏଟା ପଚାରିବା କଥା । ପଠେଇ ଦିଅନ୍ତୁ ।

ବିଜୁଳି ଭଳି ଆସିଲି । ଡ୍ରାଇଭରକୁ କହିଲି, ''ବାବୁଙ୍କୁ ନେଇ କେଦାରଗୌରୀ ପାଖରେ ଛାଡ଼ିଦେଇ ଶୀଘ୍ର ଫେରିବୁ । ଭାଇ ଆପଣ ଯାଆନ୍ତୁ ।''

ମୁଁ ଦେଖିବାରେ ପ୍ରଥମ ଥର ପାଇଁ ସାମାନ୍ୟ କରୁଣ ଦିଶିଲେ ଶିବରାମ ଭାଇ । କହିଲେ, ''କ'ଣ କରିବ କିହେ ? ଆସୁନ ସାଙ୍ଗେ ସାଙ୍ଗେ ଫେରିଆସିବ । ଠିକ୍ ଚିତ୍ତଭାଇଙ୍କ ଭାଷଣ ପୂର୍ବରୁ ।''

ସେ ସ୍ୱରରେ କ'ଣ ଥିଲା କେଜାଣି, ବାଧ ହେଲି ଯିବାପାଇଁ । ସାମାନ୍ୟ ଦୋଷୀ ଦୋଷୀ ଲାଗୁଥାଏ । ସମ୍ମାନର ଆତିଥ୍ୟ ଗ୍ରହଣ କରିଛି, ଏଣେ ଅଧିବେଶନଗୁଡ଼ିକରେ ନିଜର ଉପସ୍ଥିତି ନାହିଁ । ଭାବିଲି, ଆମ ଓଡ଼ିଶାରେ ତ ଏଇଆ ଚିରାଚରିତ କଥା । ଏମିତି ଥରେ ଅଧେ ଚିରାଚରିତ ବ୍ୟବହାର କଲେ କ୍ଷତି କ'ଣ ? ତା'ପୁଣି ଜଣେ ଅସୁସ୍ଥ ଲୋକକୁ ସାହଚର୍ଯ୍ୟ ଦେବାପାଇଁ ।

ସେତେବେଳଯାଏ ଅସୁସ୍ଥତାର ଗୁରୁତ୍ୱ ବୁଝିନଥାଏ । କାର୍‌ରେ କିଛି ବାଟ ଆସିବାପରେ ବାରମ୍ବାର ଏଉଡ଼ି ମାରୁଥାନ୍ତି ଶିବରାମ ଭାଇ । ପୋଷାକର ବୋତାମସବୁ ଖୋଲିପକଉଥା'ନ୍ତି । କପାଳରେ ଝାଳର ଝୋଟି । କାର୍ ଆଗସିଟ୍ ମଝିର ଫାଙ୍କରେ ଗୋଡ଼ ଲମ୍ବେଇ ପକେଇଲେ । ଡ୍ରାଇଭର୍ ପାଖରେ ଥିବା ପାଣି ବୋତଲରୁ କିଛି ପିଇଗଲେ । ସେତେବେଳଯାଏ ମୁଁ ଭାବୁଥାଏ ଗମାତ କରୁଛନ୍ତି ସିଏ । ବେଳେବେଳେ ଏମିତି ଆକ୍ଟିଂ କରନ୍ତି । ମୁଁ ତାଙ୍କ ବ୍ୟବହାରକୁ ଏତେ ଗୁରୁତ୍ୱ ଦଉନଥାଏ । କିନ୍ତୁ ଯେତେବେଳେ ସିଏ କହିଲେ, ''ଟିକେ ମୁଣ୍ଡଟା ଚିପିଦେଲ, ଭାରି ଖରାପ ଲାଗୁଛି'' ସେତେବେଳେ ମୁଁ ଟିକେ ବ୍ୟସ୍ତ ହେଇପଡ଼ିଲି । ଭାବିଲି, ନା ଗମାତ ନୁହେଁ । ବୋଧେ ସତରେ ଦେହ ଖରାପ ଲାଗୁଥିବ । କପାଳ ଚିପିଦଉଛି ଗାଡ଼ି ନୀଳାଚଳ ହସ୍ପିଟାଲ୍ ପାଖାପାଖି ପହଞ୍ଚିଗଲା ।

ପଚାରିଲି, ''ଭାଇ ଟିକେ ହସ୍ପିଟାଲ୍‌ରେ ଚେକ୍‌ଅପ୍ କରିଦବା ??'' କହିଲେ,

''ଆରେ ନା'ମ, ଦେଖୁନ କେମିତି ଏଉଡ଼ି ହଉଛି । ଉପାସିଆ ଥିଲା ପେଟ । ବେଶୀ ଟିକେ ଖାଇଦେଲି । ଏସିଡ଼୍ ହେଇଯାଇଛି । ଆଗରୁ ଥରେ ଅଧେ ଏମିତି ହେଇଛି । ଭାଉଜ କ'ଣ ଦୁଟୁକା ମୁଟୁକା ଦେଇ ଭଲ କରିଦେଲା । ଘରେ ଜଲ୍‌ଦି ପହଞ୍ଚିଯିବାର ଅଛି ।'' ନୀଳାଚଳ ଗଲା । କଳ୍ପନା ଗଲା । ପାଖେଇ ଆସିଲା ଘର । ଯେତେ ଯେତେ ଡେରି ହଉଥାଏ ଚିତ୍ତଭାଇଙ୍କ ଭାଷଣ ସରିଯାଇପାରେ ବୋଲି ମନରେ ସେତିକି ଆଶଙ୍କା ଆସୁଥାଏ । ସେଇ ଭାଷଣ ଶୁଣିବା ଲୋଭରେ ସେଦିନ ହସ୍ପିଟାଲ୍‌କୁ ତାଙ୍କୁ ଜବରଦସ୍ତ ନେଲି ନାହିଁ କି ? ତାଙ୍କର ନିଷ୍ପତ୍ତିକୁ ଅସ୍ୱୀକାର କରି ହସ୍ପିଟାଲ୍‌କୁ ନେଇଯିବା କ'ଣ ମୋର ଉଚିତ ନଥିଲା ? ଏ ପ୍ରଶ୍ନମାନଙ୍କର ଜବାବ ମୁଁ ଏଯାଏ ପାଇନି । ଏ ପ୍ରଶ୍ନମାନଙ୍କୁ କଲେରିଜ୍‌ଙ୍କ ଆନ୍‌ସିଏଣ୍ଟ ମାରିନର୍‌ ମୃତ ଆଲ୍‌ବାଟ୍ରସ୍ ବୋହିଚାଲିବା ଭଳି ବୋଧହୁଏ ଚିରଦିନ ବୋହିଚାଲିଥିବି ।

ସେଇ ପ୍ରଶ୍ନଗୁଡ଼ିକ ବାରମ୍ବାର ମଣିଷର ପ୍ରଜ୍ଞା, ବିଚାରବୁଦ୍ଧି ଓ ବିବେକପଣର ସସୀମତାକୁ ବାରମ୍ବାର ଆହ୍ବାନ କରୁଥିବ । ମଣିଷର ଦୈନନ୍ଦିନ ନାଟକକୁ ଘେରିରହିଥିବା ରହସ୍ୟମୟତାକୁ ସୂଚେଇଦେଉଥିବ । ସେହି ରହସ୍ୟ ମଣିଷର ସମସ୍ତ ବିଭବକୁ ଖର୍ବ କରିଦଉଥିବ । ପରବର୍ତ୍ତୀ ଘଟଣାମାନଙ୍କର ପ୍ରବାହର ଅବଲୋକନ ବିନ୍ଦୁରୁ ସେଦିନର ମୋର କାର୍ଯ୍ୟପ୍ରଣାଳୀ ସତେ କେତେ ଖର୍ବ ଦିଶୁଛି ଏଯାଏ ! ତାଙ୍କୁ ଭାଉଜଙ୍କ ଜିମା ଦେଇ ତରବରରେ ଫେରିଆସିଲି । ତାଙ୍କର ଆତିଥ୍ୟର ନିମନ୍ତ୍ରଣକୁ ଅସ୍ୱୀକାର କରି । ଲୋକାଚାର ଦୃଷ୍ଟିରୁ ପାଞ୍ଚମିନିଟ୍ ବି କଟେଇ ପାରିଲିନି ଶିବରାମ ଭାଇଙ୍କ ସହ । ଚିତ୍ତଭାଇଙ୍କ ଭାଷଣ ମଧ ସରିଯାଇଥିଲା ମୁଁ ପହଞ୍ଚିବା ବେଳକୁ । ସାମାନ୍ୟ ଅବଶୋଷ ସହ ସେଦିନ ସଂଧ୍ୟାରେ ପୁଣି ଚାଲିଗଲି କଟକ । ବନ୍ଦ ଘର ଭିତରେ ସେଦିନ କୁଆଡ଼େ ବାରମ୍ବାର ଚିତ୍କାର କରିଥିଲା ମୋର ଫୋନ୍, ପଡ଼ୋଶୀମାନଙ୍କୁ ବିବ୍ରତ କରି । ପରଦିନ ଖବର ପାଇ ଆସିଲି ଶ୍ମଶାନକୁ ଏକାଥରେ ଏକ ଚରମ ଅପରାଧ ବୋଧର ଭାର ବହନ କରି ।

ଜୀବନର ଏଇ ଗମ୍ଭୀର ଦାୟିତ୍ୱ ନିର୍ବାହ ପାଇଁ କ'ଣ ଶିବରାମ ଭାଇ ମୋତେ ବାଛିଲେ ? କିଏ ଚାହେଁ ଏଭଳି ଦାୟିତ୍ୱ ? ମହାପରିନିର୍ବାଣ ଆଶାୟୀ ବୁଦ୍ଧଙ୍କ ସାରଥି ଛନ୍ଦକ ବି କ'ଣ ଚାହିଁଥିବ ଯଶୋଧାରାଙ୍କ ଦୁଃଖର କାରଣ ସେ ନିଜେ ହେଉ ବୋଲି ? କିଏ ଚାହେଁ ହେବାପାଇଁ ପୁଣି ଶେଷ ଯାତ୍ରାର ସାରଥି ? କାହିଁକି ଲଦିଦେଲେ ଏ ବୋଝ ଶିବରାମ ଭାଇ ? ବର୍ଷେ ପରେ ଭାବୁଛି, ନା ମୋର ପ୍ରଥମ ଅନୁମାନ ଠିକ୍ ଥିଲା । ମୁଁ ପ୍ରକୃତରେ ଶେଷ ଯାତ୍ରାର ସାରଥି ନୁହେଁ । ଏଭଳି ଅପବାଦ ଶିବରାମ ଭାଇଙ୍କ ଭଳି ବ୍ୟକ୍ତି ନିଜେ ଶ୍ରଦ୍ଧା କରୁଥିବା ଅନୁଜମାନଙ୍କ ଉପରେ ଲଦିଦେବେନାହିଁ । କାରଣ ଶିବରାମ ନାମକ ଯାତ୍ରା ଏଯାଏ ସରିନାଇଁ ।

ଇଂରାଜୀ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର-୪

## ସଂଗଠକ-ଶିବରାମ

କେଳୁଚରଣ ସାମନ୍ତରାୟ

ଦିନ ପ୍ରାୟ ଦଶଟା ହେବ । ରାସ୍ତାସାରା ଭୂଇଁଚଣା ଖାଇ ଖାଇ ଚାଲିଥାଉ ଦୁହେଁ । କଥା ଥିଲା ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟରେ ଆମେ ଓଡ଼ିଆ ପାଠ ପଢ଼ିବୁ । ସେତେବେଳକୁ ସେ ଜଣେ ପ୍ରତିଷ୍ଠିତ ଲେଖକ ଓ ମୁଁ ଜଣେ ନାଟ୍ୟକାର ରୂପେ ପରିଚିତ ହୋଇସାରିଥାଉ । ମୁଁ ତାଙ୍କୁ 'ମାମା' ବୋଲି ଡାକୁଥିଲି ।

ଦୁହେଁ ପାଠ ପଢ଼ିଲୁ । ଉପାଧି ମଧ୍ୟ ନେଲୁ । ଅଧ୍ୟାପନା କରିବାର ସ୍ୱପ୍ନ ସାକାର ମଧ୍ୟ ହେଲା । 'କଳିଙ୍ଗ ସାହିତ୍ୟ ସମାଜ' ପ୍ରତିଷ୍ଠା କରିବାର ଯୋଉ ସ୍ୱପ୍ନ ସେ ଦିବା ରାତ୍ରୀ ଦେଖୁଥିଲେ । ସେଥିରେ ଯୁଗ୍ମ ସଂପାଦକ ରୂପେ ଦାୟିତ୍ୱ ନେଲେ ସେ । ବହି ସଂଗ୍ରହ କରିବାର ଯେଉଁ ନିଶା ତାଙ୍କର, ସମସ୍ତଙ୍କୁ ଆପଣେଇ ନେବାର ଯେଉଁ କଳା ତାଙ୍କର, କର୍ତ୍ତବ୍ୟନିଷ୍ଠ ହେବାର ଯେଉଁ ଚିତ୍ତ ତାଙ୍କର, ବନ୍ଧୁବତ୍ସଳ ଭାବରେ ତାଙ୍କର ଯେଉଁ ପ୍ରେରଣା, କାହିଁ ଆଉ ମୁଁ କାହାଠି ଦେଖୁନି ।

'କଳା ଓ କଳଂକ' ନାମରେ ମିନି ପତ୍ରିକାଟିଏ ସଂପାଦନା କରୁଥାଏ ମୁଁ । ପ୍ରତି ମାସର ଦ୍ୱିତୀୟ ସପ୍ତାହ ଆସିଗଲେ-''ଭଣଜା ପତ୍ରିକା କାହିଁ ? ତିଳକୁ ତାଳ ନକରି, ସମସ୍ତଙ୍କୁ ଆପଣେଇ ନେବାର ଯେଉଁ କଳା ଏବେ ମଧ୍ୟ ମୋର ମନେପଡ଼େ ।

ଶିବ ସଂହାର କର୍ତ୍ତା । ମୋ ଶିବ କିନ୍ତୁ ସୃଷ୍ଟିକର୍ତ୍ତା ଥିଲେ । ସୃଷ୍ଟି ହିଁ ଥିଲା ତାଙ୍କର କର୍ମ । ରାମ ରାମାୟଣର ନାୟକ । ହେଲେ ମୋ ରାମ ବହୁ ଅନୁଷ୍ଠାନର ନାୟକ ଥିଲେ ।

ସେ ଶିବ ଆଉ ରାମ ଆଉ କେହି ନୁହନ୍ତି, ମୋର ମାମା-ଅଧ୍ୟାପକ ଶିବରାମ ପାତ୍ର ।

ମେଡିକାଲ ବେଙ୍କ୍ କଲୋନୀ, ବ୍ରହ୍ମପୁର-୪

## ଚଳପ୍ରଚଳ ହେଉଥିବା ସାଧକ

ରାଜେନ୍ଦ୍ର ପ୍ରସାଦ ଦାସ

ଶିବରାମଙ୍କ ସହ ସଂପର୍କ ହେଲାପରେ, ଓଡ଼ିଆଭାଷା ଓ ସାହିତ୍ୟକୁ ଏପରି ନିବିଡ଼ ଭାବରେ ଭଲପାଉଥିବା ଜଣେ ଲୋକ ଅଛନ୍ତି ବୋଲି ଜାଣି ସୁଖୀ ହୋଇଥିଲି । ତାଙ୍କ ସହ ଆଲୋଚନାରୁ ଜାଣିଲି ଯେ ଦକ୍ଷିଣ ଓଡ଼ିଶାର ଓଡ଼ିଆ ଭାଷା ପ୍ରତି ତାଙ୍କର ଗଭୀର ମମତା ଅଛି । ମତେ ଏହା ବହୁତ ଭଲ ଲାଗିଥିଲା । ଓଡ଼ିଶାର ବିଭିନ୍ନ ଅଂଚଳର ଭାଷାକୁ ପରିସରକୁ ଆଣିବା ଅତ୍ୟନ୍ତ ଆବଶ୍ୟକ ବୋଲି ମୋର ବିଶ୍ୱାସ ।

ଓଡ଼ିଶାର ବହୁ ଖ୍ୟାତନାମା ଲେଖକ ଓ ସମାଲୋଚକ, କିନ୍ତୁ ଏହା ସ୍ୱୀକାର କରନ୍ତିନାହିଁ । କେତେକ ଭାଷାପ୍ରୟୋଗରେ 'ସଂସ୍କୃତ' ମୁଖାପେକ୍ଷୀ ହେଲାବେଳକୁ ଆଉ କେତେକ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଓଡ଼ିଆ ଭାଷାକୁ ଆପଣାନ୍ତି । ଜଣେ ପ୍ରଖ୍ୟାତ ଔପନ୍ୟାସିକ

ମୋର ଏକ ଉପନ୍ୟାସ ଆଲୋଚନା କରୁକରୁ ଦୁଇଟି ଶବ୍ଦକୁ ଘେନି ଏ କୋଉଠିକାର ଓଡ଼ିଆ ବୋଲି ପଚାରିବାକୁ କୁଣ୍ଠିତ ହେଲେନାହିଁ । ଶବ୍ଦ ଦୁଇଟି ଥିଲା : 'ପୋଇଚିଆ' ଓ 'ଠୁକି' (ପାଦ ଠୁକି ଠୁକି) । ଉତ୍ତରରେ ମୁଁ କହିଥିଲି ଯେ 'ପୋଇଚିଆ' ଆମ ଗାଁରେ ଖୁବ ଚଳେ । ଆଉ 'ଠୁକି' ଶବ୍ଦଟି କେନ୍ଦୁଝର ମୟୂରଭଞ୍ଜରେ ବ୍ୟବହୃତ ହେଉଥିବା ମୁଁ ଶୁଣିଛି । ମାତ୍ରସ ଔପନ୍ୟାସିକ ଏପ୍ରକାର ପ୍ରୟୋଗକୁ ସମର୍ଥନ କରିପାରୁନଥିଲେ । ମତେ ପଚାରିଲେ, 'ଏହା କ'ଣ ମାନକ (Standard) ଓଡ଼ିଆ ?' ମୁଁ ପଚାରିଲି, 'ମାନକ ଓଡ଼ିଆ କୋଉଠିକାର ଓଡ଼ିଆ ?' ଜବାବ୍ ପାଇଲି, 'ଜଗତସିଂହପୁରର ଓଡ଼ିଆ, ଯୋଉ ଓଡ଼ିଆରେ ସାରଳା ଲେଖିଥିଲେ' ବୟସ, ଯଶ ଓ ପ୍ରତିଷ୍ଠା ଦୃଷ୍ଟିରୁ ମୁଁ ତାଙ୍କ ସହ ଆଉ ଯୁକ୍ତି ନକରି ନିରବ ରହିଥିଲି । ଏପ୍ରକାର ମନୋଭାବ ହିଁ ଓଡ଼ିଆ ଭାଷା ଓ ସାହିତ୍ୟର ଏବେ ଅବକ୍ଷୟର ଏକ ପ୍ରମୁଖ କାରଣ । ଆମେ ଯଦି ଆମଲୋକଙ୍କୁ ଓ ସେମାନଙ୍କ ଭାଷାକୁ ଆପଣେଇ ନପାରିବା ତାହାହେଲେ ଆଉ କିଏ ଆପଣେଇବ ?

ସମ୍ବଲପୁର, କେନ୍ଦୁଝର, ବାଲେଶ୍ୱର, ଯାଜପୁର, କଟକ, ଜଗତସିଂହପୁର, ପୁରୀ, ଗଜପତି, ଗଞ୍ଜାମ, ରାୟଗଡ଼ା, କଳାହାଣ୍ଡି, ବଲାଙ୍ଗୀର ଆଦି ସବୁ ଭୂମି ମିଶି ଓଡ଼ିଶା ନା ଖାଲି ଜଗତସିଂହପୁର ହିଁ ଓଡ଼ିଶା ? ଖାଲି ସାରଳା ନୁହନ୍ତି, ତାଙ୍କ ସାଙ୍ଗରେ ବଳରାମ ଜଗନ୍ନାଥ ଅଚ୍ୟୁତାଦି ପଞ୍ଚସଖା ମଧ୍ୟ ଓଡ଼ିଆ ଲେଖିଥିଲେ । ଆଉ ଆମେ ସେଇ ସମସ୍ତଙ୍କ ଓଡ଼ିଆକୁ ନିଜର କରିନେବା ଅତି ଜରୁରି । ନହେଲେ ଆଜି 'କୋଶଳ'ତ କାଲି 'କଳିଙ୍ଗ' ଓ ପହରଦିନ 'ତୋଷଳୀ' ରାଜ୍ୟପାଇଁ ଆନ୍ଦୋଳନ ହେବ । ଆମ ମାନସିକତାକୁ ବଳଦ ଘୋଡ଼ାଇ ସ୍ଥାଣୁ କରୁଥିବା ଏପ୍ରକାର ଏକଦେଶଦର୍ଶିତାରୁ ମୁକ୍ତି ନ ପାଇଲେ ଆମେ ସବୁଦିନପାଇଁ ସ୍ଥାଣୁ ହୋଇଯିବା ।

ଶିବରାମଙ୍କ ପରି ସାଧକ ସ୍ଥାଣୁ ନଥିଲେ । ସେ ଚଳପ୍ରଚଳ ହେଉଥିଲେ । ମଣିଷ ପରି ମଣିଷ ଥିଲେ । ତାଙ୍କର ସାହିତ୍ୟିକ ସାଧନା ବହୁଦିନ ପାଇଁ ଅନେକଙ୍କୁ ପ୍ରଭାବିତ କରିବ ।

## ଶିବରାମ : କିଛି ସ୍ମୃତି

ବଂଶୀଧର ଷଡ଼ଙ୍ଗୀ

''ହେ ଦ୍ୟୂତକ୍ରୀଡ଼ାରତ କୃଷ୍ଣ ବ୍ରାହ୍ମଣ ! / ଆପଣଙ୍କ ମୃଦୁ ହସର ଇଙ୍ଗିତରେ ଦୃଶ୍ୟାନ୍ତର ଘଟୁଛି ଇନ୍ଦ୍ରପ୍ରସ୍ଥରେ, ନୁହ ? ଆପଣ ତ ନିଷ୍କଳ ଓ ସ୍ଥିତପ୍ରଜ୍ଞ । ଆମ ଦୁଃଖ ଶୁଣିବା ହେବେ । ଆପଣ ଶୁଣି ପାରିବେ-ଏ ବିଶ୍ୱାସ ଆମର ଅଛି ।''

ଏ ଉଦ୍ଧୃତିଟି ହେଉଛି - ଶିବରାମ ପାତ୍ରଙ୍କ ଗୋଟିଏ ଚିଠିର ଆଦ୍ୟ ଭାଗ । ଚିଠିଟିର ପରବର୍ତ୍ତୀ ଅଂଶ ତା୫।୫।୮୩ରେ ଲେଖାଯାଇଛି । ଉପରୋକ୍ତ ଉଦ୍ଧୃତିର ଶୀର୍ଷରେ ''ବିନାୟକ ଚତୁର୍ଥୀ, ୧୯୮୨'' ବୋଲି ଉଲ୍ଲେଖ କରାଯାଇଛି । ଅର୍ଥାତ୍ ପ୍ରଥମ ଅଂଶ ଲେଖାଯିବାର ବହୁଦିନ ପରେ ପରବର୍ତ୍ତୀ ଭାଗ ଲେଖାଯାଇ ପଠାଯାଇଛି । ''ଦୁଃଖ ଶୁଣିବା'' ହେଉଛି-ତାଙ୍କର ଗବେଷଣା ସଂକ୍ରାନ୍ତୀୟ ସହାୟତା ।

''ସମୁଦ୍ରକୂଳ'' ବୋଲି ମୋର ଗୋଟିଏ କବିତା ''ଝଙ୍କାର''-ଅଗଷ୍ଟ ୧୯୮୨ରେ ପ୍ରକାଶ ପାଇଥିଲା । ତାର ଶେଷ କେଇଧାଡ଼ି ହେଲା-''ଜହ୍ନରାତିର ବସ୍ତ୍ରାଞ୍ଚଳ/ବିଛେଇ ପଡ଼ିଚି ସମୁଦ୍ର କୂଳରେ/ ଏକାକୀ ଦ୍ୟୁତକ୍ରୀଡ଼ାରତ କୃଷ୍ଣ ବ୍ରାହ୍ମଣ/ନିଶ୍ଚଳ ଓ ସ୍ଥିତପ୍ରଜ୍ଞ / ତାର ମୃଦୁ ହସର ଇଙ୍ଗିତରେ/ ଦୃଶ୍ୟାନ୍ତର ଘଟୁଛି ଇନ୍ଦ୍ରପ୍ରସ୍ଥରେ ।।'' ତେଣୁ ଶିବରାମ ଏପରି ସମ୍ବୋଧନ କରି ଚିଠି ଆରମ୍ଭ କରିଥିଲେ ।

ବୋଧହୁଏ ୧୯୬୪/୬୫ ମସିହା ହେବ । ମୁଁ ସେତେବେଳେ ରେଭେନ୍ସା କଲେଜରେ ଏମ.ଏ.ଛାତ୍ର । ଭୁବନେଶ୍ୱର-କଟକ ଯା'ଆସ କରୁଥାଏ । ବର୍ତ୍ତମାନର 'କଳାମନ୍ଦିର' ପାଖରେ ସେତେବେଳର 'ସୂଚନାଭବନ' ଓ ତା ସାମ୍ନାରେ ପୁରୁଣା-ପୁରୁଣା ବସ୍‌ଷ୍ଟାଣ୍ଡ୍ । ସେଇଠି ସମରେନ୍ଦ୍ରବାବୁ (ଦାସ-ଗାଳ୍ପିକ), ବିପ୍ର ଆଚାର୍ଯ୍ୟ (କବି), ନାରାୟଣ ପଣ୍ଡା (ଗାଳ୍ପିକ-କୋରାପୁଟ) ଓ ରାଧାବିନୋଦ ନାୟକ (ଗାଳ୍ପିକ) ଆଦି ବନ୍ଧୁମାନଙ୍କର ପ୍ରାୟ ସବୁଦିନ ସନ୍ଧ୍ୟାବେଳେ ଦେଖା ସାକ୍ଷାତ ହୁଏ । ସେଇ ଆସରରେ କିଏ ବୋଧହୁଏ ମୋ ସହିତ ଶିବରାମଙ୍କ ପରିଚୟ କରେଇଥିଲେ । ପ୍ରଥମରୁ ହିଁ ଆମର କେମିତି ଗୋଟେ ଆତ୍ମୀୟତା ବୃଦ୍ଧି ପାଇଥିଲା-ମନେ ହେଉଥିଲା, ଆମେ ଯେମିତି ବହୁଦିନରୁ ଜଣାଶୁଣା । ଆମର କଥାବାର୍ତ୍ତା ସବୁବେଳେ; ସାହିତ୍ୟ, ବିଶେଷକରି କବିତା ସଂପର୍କରେ ହେଉଥିଲା ।

ଆସ୍କାରୁ 'ଆଲୋକ' ବୋଲି ଗୋଟିଏ ପତ୍ରିକା ପ୍ରକାଶ ପାଉଥିଲା । ସେଥିପାଇଁ କବିତାଟିଏ ନେବାପାଇଁ ସେ ବସେଇ ଉଠେଇ ଦଉ ନଥିଲେ । ସେଇ 'ଆଲୋକ' ପତ୍ରିକାର ଅଗଷ୍ଟ, ସେପ୍ଟେମ୍ବର, ୧୯୬୮ ଓ ମେ, ଜୁଲାଇ ୧୯୬୯-ଏମିତି ୪ଟି ସଂଖ୍ୟାରେ ମୋର ୪ଟି କବିତା ପ୍ରକାଶ କରେଇଥିଲେ ।

ନିଜ ପ୍ରଚେଷ୍ଟାରେ ଓଡ଼ିଆରେ ଏମ.ଏ.ପାଶ୍ କରି, ୧୯୭୩ ମସିହା ଅଗଷ୍ଟ ୧୧ ତାରିଖରେ ଗୁଣପୁର କଲେଜରେ ଅଧ୍ୟାପକ ଭାବେ ଯୋଗଦେଲେ । ସେତେବେଳକୁ ମୁଁ ନିମାପଡ଼ା କଲେଜରେ ଯୋଗ ଦେଇ ସାରିଥାଏ (୪ଅଗଷ୍ଟ, ୧୯୬୭ରୁ) । ତେଣୁ ଦେଖାସାକ୍ଷାତ କମି ଯାଇଥାଏ । କିନ୍ତୁ ନିୟମିତ ଚିଠିପତ୍ରର ଆଦାନ ପ୍ରଦାନ ଥାଏ । ବ୍ରହ୍ମପୁର, କଳିଙ୍ଗ ସାହିତ୍ୟ ସମାଜ ତରଫରୁ ତାଙ୍କରି ପ୍ରଚେଷ୍ଟାରେ ୧୯୭୧ରୁ ୧୯୭୪ ମଧ୍ୟରେ 'ସାହିତ୍ୟ' ନାମକ ୪ଟି ପତ୍ରିକା ପ୍ରକାଶ ପାଏ । ପ୍ରଥମ ସଂଖ୍ୟାରେ କ୍ଷେତ୍ରବାସୀ ନାୟକଙ୍କ ସହିତ ଶିବରାମ, ଦ୍ୱିତୀୟ ସଂଖ୍ୟାରେ ତାଙ୍କ ସହିତ ରାଧାମୋହନ ମିଶ୍ର, ତୃତୀୟ ସଂଖ୍ୟାରେ ବ୍ରଜକିଶୋର ଦାସଙ୍କ ସହିତ ସେ-ଏମିତି ୩ଟି ସଂଖ୍ୟାର ସଂପାଦନା ଦାୟିତ୍ୱରେ ଥିଲେ । ଚତୁର୍ଥ ସଂଖ୍ୟାର ସଂପାଦନା ଦାୟିତ୍ୱରେ ଥିଲେ- ଆଡ୍‌ଭୋକେଟ ବସନ୍ତ କୁମାର ପାଣିଗ୍ରାହୀ ଓ ପ୍ରଦୀପ ମହାପାତ୍ର । ଏହି ୪ର୍ଥ ସଂଖ୍ୟାରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ 'ସାହିତ୍ୟର ସ୍ୱରୂପ' ପ୍ରବନ୍ଧଟିର ଓଡ଼ିଆ ଅନୁବାଦ ପ୍ରକାଶ ପାଇଥିଲା । ସେଇ ପ୍ରବନ୍ଧର ଅନୁବାଦକ ଭାବେ ମୋ ନାଁ ଦେଇନଥିଲି । ଭୟଥିଲା, କାଳେ ଅନୁବାଦ ଠିକ୍ ହେଇ ନ ଥିବ । ସେଇ ଅନୁବାଦଟି ପାଇଁ ତା୧୦।୭।୭୪, ତା ୫।୮।୭୪ ଓ ତା ୨୯।୮।୭୪-ଏମିତି ତିନି ତିନିଟା ଚିଠି । 'ସାହିତ୍ୟ' ପ୍ରକାଶନର ଉଲ୍ଲେଖନୀୟ ଘଟଣା ହେଲା-ଏହା କଳିଙ୍ଗ ସାହିତ୍ୟ ସମାଜର ବାର୍ଷିକ ପତ୍ରିକା ଏବଂ ସୁନିଆରେ ହିଁ ପ୍ରକାଶ ପାଉଥିଲା ।

ଗୁଣପୁର କଲେଜରେ ଶିବରାମ ଅଧ୍ୟାପକ ଭାବେ ଯୋଗଦେବା ପରେ ପରେ ସେଇଠି 'ବଂଶଧାରା ସାହିତ୍ୟ ସମାଜ' ଗଢ଼ି ତାଙ୍କରି ସଂପାଦନାରେ 'ବଂଶଧାରା' ପତ୍ରିକାଟି

ପ୍ରକାଶ କରିଥିଲେ । ଦୁଇଟି ସଂଖ୍ୟା (ଏକ ଓ ଦୁଇ) ଏକତ୍ର ୧୯୭୭ ମସିହାରେ ପ୍ରକାଶ ପାଇଥିଲା । ପ୍ରଥମ ସଂଖ୍ୟାରେ ମୋର କବିତା(ସୂର୍ଯ୍ୟାସ୍ତ-୧୦) ଥିଲା ।

ସବୁବେଳେ ସେ ହସ ହସ । ନୈରାଶ୍ୟର ଛାପ କେବେହେଲେ ତାଙ୍କଠୁ ଦେଖିବାକୁ ପାଇନି । ସେ ଚାଲିଯିବାର ଅଳ୍ପଦିନ ପୂର୍ବରୁ ଖାତା ଦେଖା କାମରେ ନିମାପଡ଼ା କଲେଜ କେନ୍ଦ୍ରକୁ ଆସିଥିଲେ । ଗୋଟେ ରାତି ରହିଥିଲେ-ବହୁତ ଗପିଥିଲୁ । ତାହାହିଁ ଶେଷ ଦେଖା । ଏଇଠି ଗୋଟେ କଥା ମନେ ପଡୁଛି, ଯାହାକି ତାଙ୍କର ଉଦାରତା ଓ ବନ୍ଧୁପଣିଆର ପରିଚୟ । ସେ ତାଙ୍କ ନାଁ- 'ବି.ଶିବରାମ ପାତ୍ର' ଲେଖୁଥିଲେ । ଆମ ପରିଚୟର କିଛିଦିନ ପରେ କଥା ପ୍ରସଙ୍ଗରେ ମୁଁ ଥରେ କହି ପକେଇଲି, 'ତୁମ ନାଁରୁ 'ବି.' ଟି ଛାଡ଼ି ଖାଲି ଶିବରାମ ପାତ୍ର ଲେଖିଥିଲେ କେମିତି ହୁଅନ୍ତା ।' ସେ କିଛି ସମୟ ଚୁପ୍ ରହିଗଲେ, ତାପରେ କହିଲେ, 'ବେଶ୍, ସେଇଆ କରିବା ।' ଏମିତି ଗୋଟେ କଥା କହିପକେଇଥିବାରୁ ଟିକିଏ ଶଙ୍କି ଯାଇଥିଲି । ତାପରେ ଦେଖିଲି, ସେ 'ଶିବରାମ ପାତ୍ର' ହିଁ ଲେଖୁଛନ୍ତି ।

ଦୀର୍ଘ ୪୦ ବର୍ଷରୁ ଊର୍ଦ୍ଧ୍ୱକାଳ ତାଙ୍କ ସହ ପରିଚୟ । କେବେ କାହା ବିରୁଦ୍ଧରେ ପଦେ ହେଲେ କହିଥିବାର ମୁଁ ଶୁଣିନି । ସବୁବେଳେ ସମସ୍ତଙ୍କର କୁଶଳ ହିଁ କାମନା କରିଛନ୍ତି । ଅନ୍ୟ ପ୍ରକାରେ କହିଲେ, ସେ ତାଙ୍କର ନାମକୁ ସାର୍ଥକ କରିଛନ୍ତି । ଯଦି 'ଶିବ' ଅର୍ଥ 'ମଙ୍ଗଳ'; 'ରାମ' ଅର୍ଥ 'ସୁନ୍ଦର' ଓ 'ପାତ୍ର' ଅର୍ଥ 'ଆଧାର' ବା 'ଯୋଗ୍ୟବ୍ୟକ୍ତି' ହୁଏ, ତେବେ ଯଥାର୍ଥରେ ସେ ସମସ୍ତଙ୍କ ମଙ୍ଗଳ କାମନା କରୁଥିବା, ସୌନ୍ଦର୍ଯ୍ୟର ଉପାସନା ନିମିତ୍ତ ଯୋଗ୍ୟବ୍ୟକ୍ତି ଥିଲେ ।

ଗୁହାଳପଡ଼ା, ନିମାପଡ଼ା, ପୁରୀ

## ସ୍ମୃତି ତର୍ପଣ

ପ୍ରସନ୍ନ କୁମାର ରଥ

ସେତେବେଳକୁ ଗୁଣପୁରରେ ନୂଆକରି କଲେଜ ସ୍ଥାପିତ ହୋଇଥାଏ । ପରିଚିତ ଅପରିଚିତ ବଂଧୁମାନେ ଅଧ୍ୟାପନା କାର୍ଯ୍ୟକୁ ଆଦରି ନେଇଥାଆନ୍ତି । ଓଡ଼ିଆ ବିଭାଗକୁ ଆସି ଥାଆନ୍ତି ଶ୍ରୀମାନ ଶିବରାମ ପାତ୍ର । ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ ସେ । ଖୁବ୍ କମ୍ ଦିନରେ ଗୁଣପୁରର ଶିକ୍ଷିତ ସମାଜ ମଧ୍ୟରେ ବେଶ୍ ପରିଚିତ ହୋଇଯାଇଥିଲେ । ପ୍ରତ୍ୟେକ ଗଳିକନ୍ଦି, ଛକରେ ତଥା ସରକାରୀ ବେସରକାରୀ ଅନୁଷ୍ଠାନରେ ଆଲୋଚନାର ସୁଅ ଛୁଟିଲା ଶିବରାମବାବୁଙ୍କ ସଂପର୍କରେ । ମୁହଁରେ ଦାଢ଼ି, କଳା ମବ୍ ମବ୍ । ତା'ରି ଭିତରୁ ସ୍ୱଷ୍ଟ ବାରି ହେଉଥାଏ  ତାଙ୍କର ସେଇ ମୁଖମଣ୍ଡଳରେ ଝଟକୁଥିବା ଦୃଢ଼ତା ଏବଂ ସ୍ଥିତପ୍ରଜ୍ଞତାର ଛବିଳ ଆଭାସକୁ । ଯେଉଁ କାମରେ ହାତ ଦିଅନ୍ତି ତାକୁ କରନ୍ତି କିଂବା କରାନ୍ତି, ଅଧାପନ୍ତରିଆ ଅବସ୍ଥାରେ ତା'କୁ ଛାଡ଼ିଯିବାର କୁଅଭ୍ୟାସ ତାଙ୍କୁ କେବେ ସ୍ପର୍ଶ କରିନଥିଲା । ନବ ଯୁବକ । ଲେଖକ, କବି, ପ୍ରାବନ୍ଧିକ ଏବଂ ସମାଲୋଚକ - ସବୁର ଏକ

ଆନୁପାତିକ ସମାହାର ବ୍ୟକ୍ତିତ୍ୱ । ସାଂଗଠନିକ କ୍ଷମତା ଅପର୍ଯ୍ୟାପ୍ତ । ବାଗ୍ମିତାକୁ ସତେ ଯେମିତି ମାତୃଗର୍ଭରୁ ସେ ଛଡ଼ାଇ ଆଣିଥିଲେ । ଜଣେ ନିଃସ୍ୱାର୍ଥପର ସମାଜସେବୀ । ନିଜେ ଯେଉଁ ଅଞ୍ଚଳରେ ବସବାସ କରୁଥିଲେ କେବଳ ସେତିକି ନୁହେଁ ସମୁଦାୟ ଗୁଣପୁର ସହରର ପ୍ରତି କୋଣ ଅନୁକୋଣରେ ଆବିର୍ଭୂତ ହୋଇଯାଆନ୍ତି ସେ । ଜନତା-ଜନାର୍ଦ୍ଦନ-ସେବା-ସୁଯୋଗ-ଅନ୍ୱେଷୀ ଦୃଢ଼ ମନ ଏବଂ ଚିତ୍ତକୁ ଧାରଣ କରି ।

ଗୁଣପୁର ସହରର ପଦଧୌତ କରି ବହିଯାଉଥିବା ବଂଶଧାରା ନଦୀର ବିକଟାଳ ବଂଶଧ୍ୱଂସୀ ରୁକ୍ଷ ବନ୍ୟାରୂପ ଦେଖି ସେ ସ୍ତମ୍ଭୀଭୂତ ହୋଇ ପଡୁଥିଲେ । ବନ୍ୟା ପ୍ରପୀଡ଼ିତଙ୍କ ପ୍ରତି ତାଙ୍କର ଅହେତୁକ ସେବା ପ୍ରଣିଧାନଯୋଗ୍ୟ । ଘରପୋଡ଼ି ସଂବାଦ ମିଳିବା ହିଁ ଡେରି; ତତ୍‌କ୍ଷଣାତ୍ ଅଗ୍ରଗାମୀ ହୁଅନ୍ତି ନିଜ ପରିହିତ ପରିଧେୟ, ପରିବେଶ, ପରିସ୍ଥିତି ନିର୍ବିଶେଷରେ । ତାଙ୍କର ସେହି ଅନୁସଂଧାନୀ ଚକ୍ଷୁଦ୍ୱୟ ଘୁରିବୁଲେ ଜାଣିବାକୁ କୋଉଠି କି ପ୍ରକାର ଏବଂ କିପରି ସେବା ପ୍ରଦାନ କରିବାକୁ ହେବ । ଅନ୍ତରରେ ଆଶ୍ରୟରତ ତାଙ୍କର ସେହି ସୁପ୍ତ 'ସେବକ' ଜଣକ ଚେଇଁ ଉଠେ । ଆତ୍ମସ୍ଥ ହୋଇଯାଏ । ଲମ୍ବା ବପୁ । ଶକ୍ତ ମାଂସପେଶୀର ହସ୍ତପଦ । ଅର୍ଦ୍ଧଶ୍ୟାମଳ ଚେହେରା । ଆଖି ଯୋଡ଼ିକରୁ ଦାଉ ଦାଉ ହେଇ ଜଳି ଉଠୁଥିବା ସେବାର ଅଗ୍ନିପିଣ୍ଡ । ଚଳଚଞ୍ଚଳ ହୋଇ ଉଠନ୍ତି ଶିବରାମ ବାବୁ । ଅହମିକାଶୂନ୍ୟ ଶିବରାମ ବାବୁ । ଅକୁଣ୍ଠ ଚିତ୍ତରେ ପ୍ରତ୍ୟେକ ସେବାକାରୀ ଅଂଗପ୍ରତ୍ୟଙ୍ଗରୁ ତାଙ୍କର ବହି ଚାଲିଥାଏ ତୀବ୍ର ଆବେଗର ଅବାଧ ରଶ୍ମିଧାରା ।

ସୀମିତ ନଥିଲା ତାଙ୍କର ସେବାକାର୍ଯ୍ୟ ଅଭିଯାନ ସେଇ ନରନାରାୟଣଂକ ମଧ୍ୟରେ । ସେବା ପ୍ରଦାନୀହସ୍ତ ସଂପ୍ରସାରିତ ହୋଇଥିଲା ସାରସ୍ୱତ ପରିସର ପର୍ଯ୍ୟନ୍ତ ।

ହଠାତ୍ ଦିନେ ଗୁଣପୁରର ସାହିତ୍ୟାକାଶରେ ଦେଖାଦେଲା ଏକ ନୂତନ ନକ୍ଷତ୍ର । କିଛି ଯୁବକ, କିଛି ସାହିତ୍ୟପ୍ରେମୀ, କିଛି କି ଲେଖକଙ୍କୁ ଯୋଗାଡ଼ି, ଅନୁପ୍ରାଣିତ କରି ଶିବରାମ ବାବୁ ଗୁଣପୁର ନିବାସୀଙ୍କୁ ଏକ 'ସାହିତ୍ୟଭେଟି' ପ୍ରଦାନ କରିଥିଲେ । ଏହାଥିଲା ଗୁଣପୁର ପାଇଁ ଏକ ଐତିହାସିକ ଭେଟି । ସେଦିନ 'ବଂଶଧାରା ସାହିତ୍ୟ ସମାଜ' ଧୂପଦୀପର ଧୂଆଁ ଭିତରୁ, ଆବେଗଭରା କରତାଳ ମଧ୍ୟରୁ ଜନ୍ମ ନେଇଥିଲା ଶିଶୁର ରୂପ ଧରି । ବୈଦିକ ବ୍ରାହ୍ମଣ ତଥା ହୋତ୍ରୀଙ୍କ ବେଦମନ୍ତ୍ର ଉଚ୍ଚାରଣ ଶତମୁଖା ହୋଇ ସ୍ୱାଗତ ଜଣାଇଥିଲା ଶିଶୁ ଅନୁଷ୍ଠାନର ଶୁଭ ଆବିର୍ଭାବକୁ । ସେହି ଶୁଭ ଲଗ୍ନ ଏବଂ ମୁହୂର୍ତ୍ତ ଗୁଣପୁର ବୁକୁରେ ଚିରସ୍ମରଣୀୟ ହୋଇ ରହିଗଲା । ପୁରାଣ କହେ ଭଗବାନ ନିଜ ନାଭି ପଦ୍ମରୁ ବ୍ରହ୍ମାଙ୍କୁ ଜନ୍ମ ଦେଇଥିଲେ । ଭଗବାନଙ୍କର ଇଚ୍ଛା ଓ ସଂକଳ୍ପର ପ୍ରତିଫଳିତ ପ୍ରତୀକ ଥିଲା ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଆବିର୍ଭାବ । ଚତୁର୍ଦ୍ଦିଗର ଅଗାଧ ଜଳରାଶିକୁ ଅବଲୋକନ କରିବା ପାଇଁ ଚତୁର୍ମୁଖ ପ୍ରଦାନ କରିଥିଲେ ଭଗବାନ ତାହାଙ୍କୁ । ତାପରେ ବ୍ରହ୍ମା ଲାଗିଲେ ନିଜ ସୃଷ୍ଟି କୌଶଳରେ, ସୃଷ୍ଟି କରିବାରେ ।

'ବଂଶଧାରା ସାହିତ୍ୟ ସମାଜ' ଚତୁର୍ମୁଖୀ ହୋଇ ଚାହିଁ ରହିଲା ଗୁଣପୁରର ଚତୁର୍ଦ୍ଦିଗକୁ । ସତେ ଯେମିତି ବ୍ୟସ୍ତ ରହିଲା କବି, କଥାକାର ଲେଖକଙ୍କୁ ସୃଷ୍ଟି କରିବାର ଦୃଢ଼, ସଂକଳ୍ପ ନେଇ । ସାହିତ୍ୟ ସମାଜର ପ୍ରଥମ ଏବଂ ଅପ୍ରତିଦ୍ୱନ୍ଦୀ ସଂପାଦକ ହେଲେ ଶିବରାମ ବାବୁ । ଅନୁଷ୍ଠାନଟିକୁ ଚଳେଇଲେ । ଅନୁଷ୍ଠାନ ଚାଲିଲା । ଅନୁଷ୍ଠାନଟିକୁ କ୍ରିୟାଶୀଳ କଲେ । ଅନୁଷ୍ଠାନ କ୍ରିୟାଶୀଳ ହେଲା । ଅନୁଷ୍ଠାନକୁ ଜୀବନ୍ୟାସ ଦେଲେ । ଅନୁଷ୍ଠାନ ଜୀବନ୍ତ ହେଇ ଉଠିଲା ।

ଏଭଳି ଏକ ତ୍ରିକୀକି ପରିପ୍ରେକ୍ଷୀରେ ତାଙ୍କ ସହ ମୋର ବଂଧୁତା ସ୍ଥାପିତ ହୁଏ । ମୁଁ ସେତେବେଳକୁ କବିତାଲେଖା ପ୍ରତି ମନ ଦେଇ ସାରିଥାଏ । ମୋର ଏତାଦୃଶ ମନ ରୁଚି ଏବଂ ଶିବରାମ ବାବୁଙ୍କ କବି କଥାକାର ଖୋଜିବୁଲୁଥିବା ଚକ୍ଷୁ ଆମର ବଂଧୁତାକୁ ଜନ୍ମ ଦେଇଥିଲା । କବିତା ପାଠୋସବ ହୁଏ । ସେ ଆମନ୍ତ୍ରଣ କରନ୍ତି ମୋତେ । ସଂକୋଚଭାବ ମୋତେ ଘାରି ରଖିଥାଏ ସେତେବେଳେ । କବିତା ପାଠ କରିବି; କାଳେ ଭଲ ନଲାଗି ପାରେ ଅନ୍ୟମାନଙ୍କୁ- ଏଇ ଭ୍ରମ ଉଦ୍ରେକ ହେଉଥିବା ଯୋଗୁଁ ମୁଁ ଯାଉ ନଥାଏ । ଶିବରାମ ବାବୁ ଛାଡ଼ନ୍ତି ନାହିଁ । କବିତା ମୋଠାରୁ ଟାଣି ନେଇଯା'ନ୍ତି । ମୁଁ କିନ୍ତୁ 'ସାହିତ୍ୟ ସମାଜ' ପାଖ ମାଡ଼େନା । ଏଇ ନାଟକ ଚାଲିଲା କିଛିଦିନ ଆମ ମଧ୍ୟରେ । ମୋ କବିତାକୁ ଅନ୍ୟ କାହା ଦ୍ୱାରା ପାଠ କରାନ୍ତି ସେ ମୋ ଅନୁପସ୍ଥିତିରେ । ମୁଁ ଜାଣୁଥିଲି, ମୋ ଉପରେ ସେ କ୍ଷୁବ୍ଧ ଥିଲେ ।

ଆସ୍ତେ ଆସ୍ତେ ମୋ କବିତା ଲେଖାର ବେଗ ଏବଂ ସଂବେଗ ବଢ଼ିବାକୁ ଲାଗିଲା । ସେଗୁଡ଼ିକୁ ସେ ପଢ଼ିବା ପାଇଁ ମାଗନ୍ତି । ପ୍ରଶଂସା ଏବଂ ସମାଲୋଚନା ଉଭୟ ମିଳିଥାଏ ମୋତେ । ମୁଁ ଆହୁରି ବେଶିରୁ ବେଶି ଅଧ୍ୟୟନରତ ରହିଲି । କାବ୍ୟ କବିତାର ଜଗତରେ ନିଜକୁ ହଜେଇ ଦେଲି । କ୍ରମଶଃ ଅନୁଭବ କରିବାକୁ ଲାଗିଲି, ଆଶା ଏବଂ ଦମ୍ଭର ଝଲକ ମୋ ଭିତରେ ଜାଗ୍ରତ ହୋଇ ଉଠୁଛି । ପରବର୍ତ୍ତୀ କବିତା ପାଠୋସବ ଗୁଡ଼ିକରେ ଯୋଗଦାନ କରି ଯଥେଷ୍ଟ ଉପଭୋଗ କରିଛି । ମୋ ମନ ଭିତରେ ମାଳି ସାରିଥିବା ସଂକୋଚର ଚେର ଲୁପ୍ତପ୍ରାୟ ହେବାକୁ ବସିଲା । ଅପର ପକ୍ଷରେ ଅଙ୍କୁରି ଉଠିଥିଲା ଆନୁପାତିକ ଆତ୍ମ ପ୍ରତ୍ୟୟ । ଲାଗିଲା-ଦଲକାଏ ତୀବ୍ର ଆତ୍ମବିଶ୍ୱାସର ସମୀରକୁ କିଏ ଯେମିତି ପଠେଇ ଦେଇଛି ମୋ ମନର ଝରକା ମଧ୍ୟ ଦେଇ ହୃଦୟର ଅଳିନ୍ଦ ଭିତରକୁ ।

'କବିତା ପାଠୋସବ'ରେ ମୋର ଭୂମିକା ବଦଳିଗଲା । ମୋତେ ଦିଆଗଲା 'କବିତା ସଂଯୋଜନା' ଦାୟିତ୍ୱ । ଏଇ ନବ ଦାୟିତ୍ୱ ତୁଲେଇବାରେ ମୁଁ କୁଆଡ଼େ ସିଦ୍ଧହସ୍ତ ଥିଲି । ସମୟ ଗଡ଼ି ଚାଲିଲା ଅବିରାମ ଗତିରେ ।

ପରେ ପରେ -------

ଚାକିରୀ କଲାବେଳେ ମୋର ସେତବେଳକାର କବିତା ଲେଖା ମନୋବୃତ୍ତିକୁ ସୁହାଇଲା ଭଳି ସୁବର୍ଣ୍ଣ ସୁଯୋଗଟିଏ ପ୍ରାପ୍ତ ହୋଇଥିଲା ମୋତେ । ତାମିଲ୍, ଭାଷା ଶିକ୍ଷା କରିବାର ସୁଯୋଗ । ସେ ପୁଣି ମହୀଶୂରରେ । ବର୍ଷକ ପରେ ତାମିଲ୍ ଭାଷା ଶିକ୍ଷା ସମାପ୍ତ କରି ମହୀଶୂରରୁ ଫେରିଥାଏ ମୁଁ । ଦିନେ ସେ ଏକ ନୂତନ ପ୍ରସ୍ତାବ ବାଢ଼ିଲେ - ତାମିଲ୍ ସାହିତ୍ୟକୁ ଓଡ଼ିଆରେ ଅନୁବାଦ କରିବାପାଇଁ । ସତ କହିବାକୁ ଗଲେ ମୋର କବିତା ଲେଖା ଝୁଙ୍କ ଏତେ ତୀବ୍ର ଥିଲା ଯେ ସେତେବେଳେ ମୁଁ ଅନ୍ୟ କୁଆଡ଼େ ମନୋନିବେଶ କରିବାକୁ ଆଗ୍ରହୀ ନଥିଲି । ତା'ଛଡ଼ା ଅନୁବାଦ ସାହିତ୍ୟ ପ୍ରତି ମୋର ମାତ୍ରାଧିକ ବିରାଗ ଭାବ ମୋତେ ତାଙ୍କ ପ୍ରସ୍ତାବକୁ ସ୍ୱୀକାର କରିବାକୁ ଅନୁମତି ଦେଇନଥିଲା । ମୋତେ ଶିବରାମବାବୁ ବହୁତ ବୁଝେଇଲେ । ବଂଧୁଭାବାପନ୍ନ ସ୍ୱରରେ ଆହୁରି ବୁଝେଇବା ପାଇଁ ଚେଷ୍ଟା କଲେ, ବ୍ୟାଖ୍ୟା କରି ସଂପ୍ରତି ପ୍ରାଧାନ୍ୟଲାଭ କରୁଥିବା ଅନୁବାଦ ସାହିତ୍ୟର ମୂଲ୍ୟବୋଧକୁ । ଅନେକ ଦିନର ଆଲୋଚନା ଏବଂ ତର୍କମା ପରେ ମୁଁ ଲକ୍ଷ୍ୟ କଲି ମୋର ସେହି ନକାରାତ୍ମକ ନିଷ୍ପତ୍ତି ଦୁର୍ବଳ ହେବାକୁ ଲାଗୁଛି । ଶେଷରେ ମୁଁ 'ଅନୁବାଦ ପ୍ରସ୍ତାବ' ସ୍ୱୀକାର କଲି ।

ତାମିଲ୍ ସାହିତ୍ୟ ଜଗତର ପ୍ରଖ୍ୟାତ ଔପନ୍ୟାସିକ ଶ୍ରୀ ଅକିଲନ୍‌ଙ୍କ ଯୋଡ଼ିଏ ଉପନ୍ୟାସ 'ସ୍ନେହିଦୀ' ଏବଂ ପୋନ୍‌ମଲର୍' ଅନୁବାଦର ଶୁଭ ଦେଲି । ବର୍ଷକ ପରେ ଅନୁବାଦ ଶେଷ ହେଲା । ଅନୁବାଦ ଚାଲିଥିଲାବେଳେ ତଜ୍ଜନିତ ବିରକ୍ତି ଏବଂ କ୍ଳାନ୍ତିକୁ ପ୍ରଶମିତ କରିବା ନିମନ୍ତେ ମୁଁ ଚାଲିଯାଉଥାଏ ଶିବରାମ ବାବୁଙ୍କ ବସା ଆଡ଼େ । ଅପର୍ଯ୍ୟାପ୍ତ ପ୍ରେରଣା ଏବଂ ଉତ୍ସାହ ପାଇସାରିଥାଏ ମୁଁ ତାଙ୍କଠାରୁ । ଗୋଟାଏ କଥା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାନ୍ତି ଯେ ମୁଁ କୌଣସି ପରିସ୍ଥିତିରେ ଏଇ ନୂତନ 'ଅନୁବାଦ ଅଭିଯାନ'କୁ ଯେମିତି ପରିତ୍ୟାଗ ନକରେ । ବାସ୍ତବିକ ସେ ଚାହୁଁଥିଲେ ମୁଁ ତାମିଲ ସାହିତ୍ୟରୁ ବହୁତ କିଛି ଅନୁବାଦ କରିପକାଏ । ତାମିଲ୍ ଉପନ୍ୟାସ ଦ୍ୱୟ ଆତ୍ମପ୍ରକାଶ କଲେ ଓଡ଼ିଶାରେ ଶ୍ରୀ ଅଭିରାମ ବାବୁଙ୍କ ଗ୍ରନ୍ଥ ମନ୍ଦିରରୁ ଯଥାକ୍ରମେ 'ବାନ୍ଧବୀ' ଏବଂ ସ୍ୱର୍ଣ୍ଣପୁଷ୍ପ' ନାମ ବହନକରି । ତୃତୀୟ ତାମିଲ ଉପନ୍ୟାସ 'କୁରୁଦିପ୍‌ପୁନଲ୍' ବି ଅନୁଦିତ ହେଇଛି । ଅନେକ ତାମିଲ କ୍ଷୁଦ୍ର ଗଳ୍ପ ଓଡ଼ିଆରେ ରୂପରେଖ ପାଇଛି । ଏସବୁର ମୂଳରେ ଶିବରାମ ବାବୁଙ୍କର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭୂମିକାକୁ ଅସ୍ୱୀକାର କରିହେବନାହିଁ ।

ଆଜି ଅବସର ଜୀବନଯାପନ କଲାବେଳେ ଚୌକିରେ ବସି ସୁମଧୁର ଅତୀତକୁ ରୋମନ୍ଥନ କରିଥାଏ । ଚକ୍ଷୁ ସମ୍ମୁଖରେ ଦୃଶ୍ୟମାନ ହୁଅନ୍ତି ଶିବରାମ ବାବୁ । ଏବେ ବି କର୍ଣ୍ଣପଟହ ଝଙ୍କୃତ ହୁଏ ତିରିଶ/ପଞ୍ଚତିରିଶ ବର୍ଷ ତଳେ ସେ ଶୁଣେଇଥିବା ନିଜ ସଂଭାଷଣର ବୀଣାତନ୍ତ୍ରରୁ ଉଦ୍‌କୀର୍ଣ୍ଣ ହେଉଥିବା ମନମୋହିନୀ ସ୍ୱର । ବାସ୍ତବବାଦୀତାକୁ ତିଳ ତିଳ କରି ନିଜସ୍ୱ କରିଥିବା ବଂଧୁ ଶିବରାମ ବାବୁଙ୍କ ସେହି ସଦିଚ୍ଛା ଏବଂ ବନ୍ଧୁତ୍ୱପୂର୍ଣ୍ଣ ଉକ୍ତି ସବୁ ସମ୍ମୁଖରେ ସତେ ଯେମିତି ଗୁଣୁଗୁଣୁ ହେଇ ବସା ବାନ୍ଧିଛନ୍ତି କର୍ଣ୍ଣର ମୁଖଶାଳା ନିକଟରେ ।

ସବୁ କାଲି ପରି ମନେ ହୁଏ । ଶୋକ ସାଗରରେ ଭସେଇ ଦେଇ ପ୍ରସ୍ଥାନ କଲେ ସେ । ତାଙ୍କର ସେହି ଅନ୍ତିମ ଯାତ୍ରାର ଦଶପନ୍ଦର ଦିନ ପୂର୍ବରୁ ପ୍ରାୟ ଅଧଘଣ୍ଟାଏ ପାଇଁ କଥା ହୋଇଥିଲି ଫୋନରେ । କଲେଜରେ କିଛି କାମ ବାକି ରହିଛି କହି (ପେନ୍‌ସନ୍ ସଂକ୍ରାନ୍ତ) ଗୁଣପୁରକୁ ଆସିବାକୁ ମନସ୍ଥ ବି କରିଥିଲେ । ମୁଁ ଆଶାୟୀ ହେଇ ପ୍ରତୀକ୍ଷା କରିଥିଲି । କିନ୍ତୁ ସବୁ ଓଲଟ ପାଲଟ ହୋଇଗଲା । ଏହା ଏ ବୟସରେ ନିଶ୍ଚିତ ଭାବେ ଏକ ଶକ୍ତ ଧକ୍‌କା ମୋ ପାଇଁ । ମାନସିକ ଭାରସାମ୍ୟ ହରାଇଲା ଭଳି ଅନୁଭବ କରେ ବେଳେବେଳେ । ଲାଗେ ମନର କେଉଁ ଗୋଟାଏ ନିଭୃତ କୋଣରେ ସେ ଯେମିତି ଜୀବନ୍ତ ଅଟକି ଯାଇଛନ୍ତି । ନିଃସଙ୍ଗତାକୁ ଅଗତ୍ୟା ପାଥେୟ କରି ଚାଲିଛି ମୁଁ ମୋ ଜୀବନର ସଂଧ୍ୟାରେ । ଏଇ ବିଶ୍ୱାସ ନେଇ ଯେ ଦିନେ ତ ପୁଣି ସାକ୍ଷାତ ହେବ ତାଙ୍କ ସହ ! କେଉଁ ଏକ ଅଜ୍ଞାତ ଲୋକରେ; କେଉଁ ଏକ ଅଚିହ୍ନା ଇଲାକାରେ ।

ଡେରା ସାହି
ଗୁଣପୁର, ରାୟଗଡ଼ା

# ସାହିତ୍ୟିକ ଶିବରାମ

ନାରାୟଣ ପଣ୍ଡା

ଗତମାସ (ଫେବୃୟାରୀ, ୨୦୦୫ ସତେଇଶି ତାରିଖରେ) ନାରାୟଣ ପାଟଣାରେ ଝଞ୍ଜାବତୀ ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ ଯୋଗ ଦେବାର ଅବସରରେ ସେଠିକାର ପ୍ରବାଦପୁରୁଷ ରାମ ପାଢ଼ୀଙ୍କର ଜୀବନୀ ରଚନା ଓ ପ୍ରକାଶନର ବ୍ୟବସ୍ଥା ସଂପର୍କରେ ମତ ବିନିମୟ ବେଳେ ଜୀବନୀ ରଚନା ପାଇଁ ମୋ ଦୃଷ୍ଟିରେ ଶିବରାମ ପାତ୍ର ହିଁ ଯୋଗ୍ୟତମ ବ୍ୟକ୍ତି ବୋଲି କହିଲାବେଳେ ମୁଁ ଜାଣି ନଥିଲି ଯେ ତା' ଆଗଦିନରୁ ସେ ଆଉ ନାହାନ୍ତି ।

୧୯୬୩ ମସିହାରେ ଖଲ୍ଲିକୋଟ କଲେଜରେ ସହପାଠୀ ଭାବେ ଯେଉଁ ପରିଚୟର ଅୟମାରମ୍ଭ ତାକୁ ଖତମ୍ କରିଦେଇ ଶିବରାମ ଏତେ ଶୀଘ୍ର ଚାଲିଯିବେ ବୋଲି ମନକୁ ଆସି ନଥିଲା କଦାଚିତ୍ । ଯେଉଁ ଅନ୍ତରଙ୍ଗ ପରିବେଶରେ ମୋ ପରି ଜଣେ ଅକିଞ୍ଚନର ସାହିତ୍ୟ ପ୍ରତି ଉନ୍ମୁଖତା ବିକଶିତ ହୋଇଥିଲା, ପାଖରେ ଥାଆନ୍ତୁ କି ଦୂରରେ ଥାଆନ୍ତୁ ଶିବରାମ ସବୁବେଳେ ତା'ର ଏପରି ଅଂଶବିଶେଷ ଥିଲେ ଯାହା ଅବିଚ୍ଛେଦ୍ୟ ପରି ଲାଗୁଥିଲା । ସମରେନ୍ଦ୍ର ପ୍ରସାଦ ଦାସ (ଗଳ୍ପ ସଂକଳନ 'ନିର୍ଲିପ୍ତ ପ୍ରତିଯୋଗୀ'), ବିପ୍ର ଆଚାର୍ଯ୍ୟ (କବିତା ସଂକଳନ 'ବାବନା ଭୂତ') ଓ ମୋ ପରି ମାତ୍ର ଖଣ୍ଡେ ଅଧେ ବହିର ଗାଳ୍ପିକ/କବିଙ୍କ ପ୍ରତି ସୁବିଧା ପାଇବା ମାତ୍ରେ ସେ ଦୁଇଟି ଶବ୍ଦ ପ୍ରୟୋଗ କରୁଥିଲେ- Creative Writers, ଏ ଶବ୍ଦ ଦୁଇଟି ଥିଲା ଆମପ୍ରତି ତାଙ୍କର ଗାଳି, ଅନୁନୟ ଓ ଅଭିମାନର ସମ୍ମିଶ୍ରିତ ସମ୍ବୋଧନ ।

ଗାଳି ଏଇଥିପାଇଁ ଯେ ଆମେ ନିଜର ଅହେତୁକ ଔଦ୍ଧତ୍ୟ ହେତୁ ସାହିତ୍ୟ କ୍ଷେତ୍ରରେ ଯେତିକି ତତ୍ପର ଓ ଯତ୍ନଶୀଳ ହେବା କଥା ହେଉନାହୁଁ । ଅନୁନୟ ଏଇଥିପାଇଁ ଯେ ଆମେମାନେ ଏ ଦିଗରେ ସଚେଷ୍ଟ ହେଉଁ । ଅଭିମାନ, କାରଣ ସାହିତ୍ୟକ୍ଷେତ୍ରରେ ତାଙ୍କପରି ସଂଗଠନ, ସଂକଳନ ଓ ସଂପାଦନା ପରି କାର୍ଯ୍ୟରେ ନିୟୋଜିତ ହେବାକୁ ନିଜକୁ ସୃଜନଶୀଳତା ଠାରୁ କମ୍ ବୋଲି ଦେଖିବାର ଅନୌଚିତ୍ୟ ।

ଶିବରାମ, ବିଶ୍ୱାସ କର ଆମେ ଯାହାବା ଲେଖିଛୁ ଯେତିକି ଲେଖିଛୁ ତା'ଠାରୁ ତୁମ କାମକୁ କମ୍ ବୋଲି ବିଚାରିବାର ମୂର୍ଖାମୀ ଆମର କେବେତ ନଥିଲା, ବରଂ ତୁମେ ଆମକୁ ଯେଉଁ ଶିଖରରେ ବସାଉଥିଲ ଆମେ ସେଥିପାଇଁ ଅଭାଜନ ବୋଲି ଜାଣି ଅନ୍ତରରେ ଗ୍ଲାନି ଓ ଲଜ୍ଜା ଅନୁଭବ କରୁଥିଲୁଁ । ସ୍ନେହ, ଶ୍ରଦ୍ଧା ଆଦର ଓ ଉଦାରତାରେ ତୁମେ ଆମକୁ ସବୁବେଳେ ବୁଡ଼େଇ ଦେଇଛ ।

କାହିଁକି ଶିବରାମ ଆମକୁ ଏତେ ଭଲ ପାଉଥିଲେ ? କ'ଣ ଦେଖୁଥିଲ ଆମଠି ,ତମ ଦପ୍ ଦପ୍ ଖୋଜିଲା ଖୋଜିଲା ଆଖିରେ ? ସାହିତ୍ୟ ପ୍ରତି ପ୍ରାଣ ପ୍ରାଚୁର୍ଯ୍ୟ ସଂପନ୍ନ ଏକ ନିର୍ଲୋଭ ନିରୀହ ଉନ୍ମୁଖତା ?

ସାହିତ୍ୟ ଓ ସଂସ୍କୃତିରେ ପ୍ରାଣ ସ୍ପନ୍ଦନର ସନ୍ଧାନୀ ଶିବରାମ ସବୁବେଳେ ଖୋଜି ବୁଲୁଥିଲେ ଜନଜୀବନରେ ବ୍ୟବହୃତ ଏମିତି ଶବ୍ଦସବୁ ଯାହା ଜନଜୀବନର ଦିଗନ୍ତକୁ ମଧୁର ଓ ରସସିକ୍ତ କରି ରଖିବାରେ ଏକଦା ଥିଲେ ଶକ୍ତିମାନ୍, ଅଥଚ ସାଂସ୍କୃତିକ ବିବର୍ତ୍ତନ ପ୍ରକ୍ରିୟାର ଦଂଶନରେ ସଂପ୍ରତି ମୁମୂର୍ଷୁ ଓ ବିସ୍ମୃତ ପ୍ରାୟ । ସେମାନଙ୍କୁ ଭାଷାର ରାଜପଥରେ ଭେଟିବାର ଖେଳୁଆଡ଼ୁ ସୁଲଭ ଏକ ଖିଆଲି ଇଚ୍ଛାକୁ ସବୁବେଳେ ପୋଷଣ କରୁଥିଲେ

ସେ । ଜୀବନର ସବୁଠାରୁ କର୍ମଚଞ୍ଚଳ ବର୍ଷଗୁଡ଼ିକ ବିତେଇ ଥିବା ବଂଶଧାରା ଓ ଇନ୍ଦ୍ରାବତୀ ତଟଭୂମି ସହ ହାତଛଡ଼ା କରିନଥିଲେ । ସେଠିକାର ବ୍ୟବହୃତ ତଥା ଲୋପ ପାଇ ଆସୁଥିବା ଶବ୍ଦ ଗୁଡ଼ିକର ପୃଷ୍ଠପଟରେ ଥିବା ସାଂସ୍କୃତିକ ବଳୟଗୁଡ଼ିକର ପରିଭାଷାକୁ ସେ ବୁଝିବାକୁ, ଚିହ୍ନିବାକୁ ଓ ତାଙ୍କରି ଭାଷାରେ 'ହେଜିବାକୁ' ଚେଷ୍ଟା କରୁଥିଲେ କେବଳ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକ କି ଗବେଷକ ଭାବରେ ନୁହେଁ ବରଂ ଅଧିକତର ନିବିଡ଼ତାର ସହ ସାହିତ୍ୟ ପ୍ରତି ଉନ୍ମୁଖ ବ୍ୟକ୍ତିଟିଏ ଭାବେ ।

ନିଜ ସତ୍ତା ଓ ଚେତନା ସହ ସାହିତ୍ୟକୁ ଏକାକାର କରିଥିବା ଏଭଳି ଜଣେ ବ୍ୟକ୍ତିଙ୍କର ବିୟୋଗ ସାହିତ୍ୟ କ୍ଷେତ୍ରରେ ଯେଉଁ କ୍ଷତ ସୃଷ୍ଟି କରେ ତା'ର ଗଭୀରତା ନିର୍ଣ୍ଣୟ ସହଜସାଧ୍ୟ ନୁହେ ।

ମାଳିସାହି, କୋରାପୁଟ

## ବଂଧୁ ଶିବରାମ, ତୁମେ ଏତେ ଶୀଘ୍ର ଚାଲିଗଲ !

ଜଗନ୍ନାଥ ମହାନ୍ତି

ମାତ୍ର ୫/୭ବର୍ଷ ହେଲା ଗୌରୀନଗରରେ ରହିବା ଦିନରୁ ଶିବରାମବାବୁଙ୍କ ସଂପର୍କରେ ମୁଁ ଆସିଲି । ସେ ଥିଲେ ମୋର ସୁଖଦୁଃଖର ସାଥୀ, ଅନ୍ତରଙ୍ଗ ସାହିତ୍ୟିକ ବଂଧୁ । ସାରା ରାଜ୍ୟରେ ତାଙ୍କର ଏତେ ସାହିତ୍ୟିକ ବଂଧୁ ଦେଖି ମୁଁ ବିସ୍ମିତ ହୁଏ । ସଭାସମିତିକୁ ଯିବା ତାଙ୍କର ଏକ ନିଶା । ଥରେ ଥରେ କହନ୍ତି, 'କେତେ କୁଆଡ଼େ ଯିବା ?' ମାତ୍ର ନଯାଇ ସେ ରହିପାରନ୍ତି ନାହିଁ ।

ତାଙ୍କ ସହିତ ମୋର ଆଲୋଚନା ହୁଏ-ସାହିତ୍ୟରୁ ରାଜନୀତି ଯାଏ । ବିଭିନ୍ନ ପ୍ରସଙ୍ଗରେ ସେ କଠୋର ମତାମତ ଦିଅନ୍ତି । ଯେଉଁ ଦିନ ସକାଳ ବୁଲାରେ ତାଙ୍କ ଘର ଆଡ଼େ ଯାଏ, ପ୍ରାୟ ଗୋଟିଏ ଘଣ୍ଟା ବିତିଯାଏ । ଚା'ଜଳଖିଆ ଖୁଆନ୍ତି, ବାରିରୁ ପାଚିଲା ପିଜୁଳି କି ଅମୃତଭଣ୍ଡା ତୋଳି ଦିଅନ୍ତି । ତାଙ୍କର ବ୍ୟକ୍ତିଗତ ଗ୍ରନ୍ଥାଳୟରୁ ମୁଁ କେତେ ଥର ବହି ଧାର ଆଣିଥାଏ । 'ସହକାର'ର ସଂପାଦିକା ଶ୍ରୀମତୀ ରମାକରଙ୍କ ଅନୁରୋଧ କ୍ରମେ କବି ରମାକାନ୍ତ ରଥଙ୍କ ଜୀବନ ଓ କୃତି ଉପରେ ସନ୍ଦର୍ଭଟିଏ ଲେଖିବାକୁ ହେଲା । ମୁଁ ଅବାକ୍ ହେଲି ଯେ ତାଙ୍କର ସମସ୍ତ ବହି ଶିବରାମଙ୍କ ପାଖରୁ ମିଳିଲା । ମୁଁ ସେଗୁଡ଼ିକର ଉପଯୋଗ କରି ଉକ୍ତ ପ୍ରବନ୍ଧ ଶେଷରେ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିଥିଲି ।

ଏକାମ୍ର କଲେଜରେ ତାଙ୍କ ପତ୍ରିକାର ସଂପାଦନା, ସେ ଗତାନୁଗତିକ ଢଙ୍ଗରେ ନ କରି ସେଥିରେ କେତେକ ମୌଳିକତା ଦେଖାଇଥିଲେ । ସେଥି ମଧ୍ୟରେ ସେ କଲେଜର ପ୍ରଥମ ଅଧ୍ୟକ୍ଷ ପ୍ରଫେସର ଶତ୍ରୁଘ୍ନନାଥଙ୍କ ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କ ଅନନ୍ୟ ଅବଦାନ ସହିତ କୃତିରୁ କେତେକ ଉଦ୍ଧୃତାଂଶ ଓ ପ୍ରତିକୃତି ପ୍ରକାଶ କରିଥିଲେ । କେତେକ ସହକର୍ମୀ ଅଧ୍ୟାପକ ତାହା 'ଅତି ସାହିତ୍ୟକ ପତ୍ରିକା' ହୋଇଗଲା ବୋଲି ସମାଲୋଚନା କରିଥିଲେ । ବଂଧୁ ଦିନନାଥ ପାଠୀଙ୍କୁ ଅଯାଚିତ ଭାବରେ, ସେ ତାଙ୍କ ସାରସ୍ୱତ ପ୍ରଚେଷ୍ଟାରେ

ସହଯୋଗ କରିଥାନ୍ତି । ତାଙ୍କର ଅନେକ ପୁସ୍ତକର ସେ ସଂପାଦନା କରିଛନ୍ତି ।

ପ୍ରାୟ ୩ ବର୍ଷ ପୂର୍ବେ ଦିନେ ସେ କହିଲେ - କାଲି ସଂଧ୍ୟାରେ ଗୋଟିଏ ସାରସ୍ୱତ ସମାବେଶ ହେବ, ଆପଣ ଆସିବେ । ମୁଁ ଦେଖିଲି, ସେଇ ସଂଧ୍ୟାରେ ବହୁ ସାହିତ୍ୟିକ ବଂଧୁଙ୍କ ଭିଡ଼ । ଏତେ ଘନିଷ୍ଠତା ନଥିଲେ ଏତେ ବଡ଼ ବଡ଼ ରଥୀ ଆସି ନଥାନ୍ତେ । ମୋତେ ସେଥିରେ ଅଧ୍ୟକ୍ଷତା କରି ପୁସ୍ତକର ଲୋକାର୍ପଣ ପାଇଁ ସୁଯୋଗ ଦେଲେ । ପୁସ୍ତକଟି ଥିଲା ତାଙ୍କର ନବଜାତକ ପ୍ରଥମ ସଂକଳନ ସୁରେନ୍ଦ୍ର ବିଚାର ମଞ୍ଜୁଷା ।

ଶିବରାମ ଆମ 'ମାଣିକ ବିଶ୍ୱନାଥ ସ୍ମୃତି ନ୍ୟାସ'ର ଜଣେ ସକ୍ରିୟ ସଭ୍ୟ ଥିଲେ । ବିଭିନ୍ନ ପ୍ରସଙ୍ଗରେ ସେ ମୂଲ୍ୟବାନ୍ ପରାମର୍ଶ ଦେଉଥିଲେ ଏବଂ ବାର୍ଷିକ ଉତ୍ସବରେ ସହଯୋଗ କରୁଥିଲେ । ଶିଶୁମାନଙ୍କ ପାଇଁ ମୋର ଆତ୍ମଜୀବନୀ 'ମୋ ଜୀବନ କଥା' ଉପରେ ଏକ ସମୀକ୍ଷାମୂଳକ ପ୍ରବନ୍ଧ ଲେଖିଥିଲେ । ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ନ୍ୟାସର ବାର୍ଷିକ ଉତ୍ସବରେ ପୁସ୍ତକର ଲୋକାର୍ପଣ ଅବସରରେ ସେ ତାକୁ ପାଠ କରି ସମସ୍ତଙ୍କୁ ଅଭିଭୂତ କରିଥିଲେ । ତାଙ୍କର ଗୁରୁଗମ୍ଭୀର ସ୍ୱରରେ ନିଛକ ଓଡ଼ିଆ ଭାଷା ଓ ଗାଉଁଲି ସରଳ ତରଳ ଶୈଳୀରେ ମନଛୁଆଁ ଦୃଷ୍ଟାନ୍ତ କେତୋଟି ଦେଇଥିଲେ । ସେ ମୋ ଅନୁରୋଧ କ୍ରମେ ସାହିତ୍ୟିକ ମନୋଜ ଦାସଙ୍କ ସଂପର୍କରେ ଏକ ପ୍ରବନ୍ଧ ଲେଖିଥିଲେ, ଯାହା ସଂହକାରରରେ ସ୍ଥାନିତ ହୋଇଥିଲା । ସେ କିଛି କହିଲେ ବା ଲେଖିଲେ ଓଡ଼ିଆ ଜୀବନ ଓ ଭାଷା, ସାବଲୀଳ ଭାବରେ ଯେମିତି ଆପେ ଆପେ ଝରି ପଡୁଥିଲା ।

ତାଙ୍କ ଜୀବନର ଅନ୍ୟ ଏକ ବ୍ରତ ଥିଲା ସମାଜ ସେବା । ସେ ନିଜେ ଯେମିତି ହାତେ ହାତେ ସବୁ କରିଯାଉଥିଲେ, ଗାଁ ଗହଳିରେ ସେମିତି ଯେଉଁମାନେ ସମାଜସେବା କାର୍ଯ୍ୟରେ ପ୍ରବୃତ୍ତ ହୋଇଥାନ୍ତି, ସେମାନଙ୍କ ଗୁଣଗାନ କରିବାରେ ଆନନ୍ଦିତ ହେଉଥିଲେ । ଗତ ବର୍ଷ ଗାନ୍ଧିଜୟନ୍ତୀ ଅବସରରେ ନିଜ ଘରେ ଏକ ସମାବେଶର ଆୟୋଜନ କରିଥିଲେ । ଗାନ୍ଧିବାଦୀ ଓ ସାହିତ୍ୟିକ ଶ୍ରୀ ଚିତ୍ତରଞ୍ଜନ ଦାସ ଯୋଗଦେଇଥିଲେ । ସେଦିନ ଶିବରାମଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଗୌରୀନଗରର ସର୍ବାଙ୍ଗୀନ ବିକାଶ ଏବଂ ସେ ଦିଗରେ ଅନୁଭୂତି, ଅସୁବିଧାମାନ ସେ ଭାଷଣରେ ସୂଚେଇ ଥିଲେ ।

ନିକଟରେ ସେ ପ୍ରିୟଜନ ଓ ସ୍ଥାନମାନଙ୍କୁ ନିଜେ ଯାଇ ଦର୍ଶନ ଲାଭ କରିଥିଲେ । ତାଙ୍କର ଉଚ୍ଚଶିକ୍ଷାରେ ପୃଷ୍ଠପୋଷକତା କରିଥିବା ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ସେ ସଦ୍ୟ ପ୍ରକାଶିତ ଫକୀରମୋହନ ବିଚାର ମଞ୍ଜୁଷାକୁ ଉତ୍ସର୍ଗ କରି, ତାଙ୍କ ବାସସ୍ଥାନକୁ ଯାଇ ସମର୍ପଣ କରିଥିଲେ । ଏହା ଯେମିତି ଥିଲା ତାଙ୍କର ପ୍ରବୃତ୍ତି ପ୍ରେରିତ ଓ ବିଧି ପ୍ରରୋଚିତ ।

୨୯୩୫, ଗୌରୀନଗର, ଭୁବନେଶ୍ୱର

# ପ୍ରେରଣାର ପାରାବାର ଶିବରାମ ପାତ୍ର ସାର୍

ଡମ୍ବରୁଧର ପଟ୍ଟନାୟକ

"A man who reviews the old so as to find out the new is qualified to teach others." -Confucious

୧୯୮୭ ମସିହାରୁ ତାଙ୍କ ସହ ମୋର ପରିଚୟ +୩ ପଢ଼ିବା ବେଳରୁ । ସେ ଗୁଣପୁର ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଥା'ନ୍ତି । ସେଠି ଓଡ଼ିଆ ଅନର୍ସ ନଥିଲା । ମୁଁ ଓଡ଼ିଆ ପାସ୍ ବିଷୟ ନେଇ ଏକମାତ୍ର ଛାତ୍ର ଥିବାରୁ, ଶ୍ରେଣୀ ନିର୍ଘଣ୍ଟରେ ଜଣେ ପିଲା ପାଇଁ ଗୋଟିଏ କ୍ଲାସ୍ ଦେବାକୁ କର୍ତ୍ତୃପକ୍ଷ ସମ୍ଭବତଃ ପଛଘୁଞ୍ଚା ଦେଉଥିଲେ । ସେଥିପାଇଁ ସେ ବୋଧେ ମୋତେ ଓଡ଼ିଆ ପଢ଼ିବା ପାଇଁ ନିରୁତ୍ସାହିତ କରିଥିଲେ । ମୁଁ କିନ୍ତୁ ନଛୋଡ଼ବନ୍ଧା । ମୋର ଏକା ଜିଦ୍ ଓ ଆଗ୍ରହ ଦେଖି ସେ ବିସ୍ମିତ ହେଲେ ଏବଂ ମୋ ପାଇଁ ଶ୍ରେଣୀ ନିର୍ଘଣ୍ଟରେ କ୍ଲାସ୍‌ର ବ୍ୟବସ୍ଥା କଲେ । ସେବେଠାରୁ ଆମ ଦୁହିଁଙ୍କ ଭିତରେ ସଂପର୍କର ଡୋରି ଲାଗିଗଲା । ତାଙ୍କ ଠାରୁ ମୁଁ ପୁଅପରି ସ୍ନେହ ଆଦର ତଥା ଶିଷ୍ୟ ପରି ଦିଗ୍‌ଦର୍ଶନ ପାଇ ମୋ ଲେଖକ ଜୀବନ ଆରମ୍ଭ କରିଥିଲି । ମୋ ସୃଜନ ପ୍ରତିଭାର ଉନ୍ମେଷ ଓ ବିକାଶ ପାଇଁ ସେ ବହୁ ମତେ ପ୍ରେରଣା ଦେଇଛନ୍ତି, ପ୍ରଯତ୍ନ କରିଛନ୍ତି । ତାଙ୍କ ଦ୍ୱାରା ମୋ ଲେଖାର ସଂଶୋଧନ/ପରିମାର୍ଜନ/ସଂକ୍ଷେପଣ ବା ପରିବର୍ଦ୍ଧନ/ସଂଯୋଜନା ପାଇଁ ଉଚିତ ଉପଦେଶ ଓ ସହାୟକ ପୁସ୍ତକ ପ୍ରଦାନ ମୋତେ ଖୁବ୍ ଉତ୍ସାହ ଦେଉଥାଏ । ଏମିତିରେ ପ୍ରଥମେ ମୋ ଲେଖା କଲେଜ୍ ମାଗାଜିନ୍ 'ଗୁଣାର୍ଣ୍ଣବ'ରେ ପ୍ରକାଶ ପାଇ ପାଠକୀୟତା ହାସଲ କରିଥିଲା । ଦ୍ୱିତୀୟ ଲେଖା 'ମୁଁ ମରୁଡ଼ି କହୁଛି' ପଢ଼ି ସେ ଖୁସି ହୋଇ ସାମାନ୍ୟ ସଂଶୋଧନ ପରେ 'ସମାଜ'ର ରବିବାର ସଂଖ୍ୟାପାଇଁ ପଠାଇବାକୁ କହିଥିଲେ । ମୁଁ ସଂକୋଚ ଓ ସନ୍ଦେହର ସହିତ ଲେଖା ପଠାଇଥିଲି । କିନ୍ତୁ ଆଶ୍ଚର୍ଯ୍ୟର କଥା ସମାଜର ରବିବାସରୀୟ କ୍ରୋଡ଼ପତ୍ରରେ ମୋ ଲେଖାଟି ଅବିକଳ ପ୍ରକାଶ ପାଇଥିଲା । ତାହା ଦେଖି ମୋ ଖୁସିର ସୀମା ନଥିଲା । ମୋର ଆତ୍ମପ୍ରତ୍ୟୟ ସୃଷ୍ଟି ହୋଇଥିଲା ଯେ ମୁଁ ଲେଖକଟିଏ ହେଇପାରିବି । ସାର୍‌ଙ୍କ ପ୍ରତ୍ୟକ୍ଷ/ପରୋକ୍ଷ ପ୍ରେରଣା ଓ ଦିଗ୍‌ଦର୍ଶନରେ ଆଗକୁ ମାଡ଼ିଚାଲିଛି ।

ଗୁଣପୁରରେ ଥିଲାବେଳେ ସେଠାକାର ବଂଶଧାରା ସାହିତ୍ୟ ସମାଜର ପ୍ରତିଷ୍ଠା, ପରିଚାଳନା ଓ ପାଠାଗାର ସମୃଦ୍ଧିକରଣରେ ତାଙ୍କର ଦାନ ଅନସ୍ୱୀକାର୍ଯ୍ୟ । ସେହି ସମୟରେ ବଡ଼ ବଡ଼ ସାହିତ୍ୟ ସଭାର ଆୟୋଜନ, କଟକ ଭୁବନେଶ୍ୱରର ବଡ଼ ବଡ଼ ସାହିତ୍ୟିକଙ୍କୁ ଆମନ୍ତ୍ରଣ ପୂର୍ବକ ଉତ୍ସବକୁ ସାଫଲ୍ୟମଣ୍ଡିତ କରିବାରେ ତାଙ୍କର ପ୍ରଚେଷ୍ଟାର ତୁଳନା ହିଁ ନଥିଲା । ଯେଉଁମାନଙ୍କର ଲେଖା ଆମେ ପାଠବହିରେ ପଢୁଥିଲୁ ସେମାନଙ୍କୁ ସ୍ୱଚକ୍ଷୁରେ ଦେଖିବା ଓ ତାଙ୍କୁ ଶୁଣିବାବେଳେ ଆମ ବିସ୍ମୟ ବିଭୋରତାର ସୀମା ନଥିଲା । ଲାଗୁଥିଲା ସାର୍ ଏମିତି ଜଣେ କରିତ୍‌କର୍ମା ଲୋକ ଯିଏ ସାହିତ୍ୟ ଜଗତରେ ଖୁବ୍ ପରିଚିତ ଓ ପ୍ରତିଷ୍ଠିତ । ବଂଶଧାରା ସାହିତ୍ୟ ସମାଜର ସଂଗଠନ ସଂପାଦକ ଭାବରେ ସେ ମୋତେ

ମନୋନୀତ କରିଥିଲେ । ଅନୁଷ୍ଠାନର ମୁଖପତ୍ର 'ବଂଶଧାରା'ରେ ମୋ କବିତା ପ୍ରକାଶ ପାଇବା ବି ଥିଲା ମୋ ପାଇଁ ଏକ ବିରଳ ଅନୁଭବ । କାରଣ ସେହି ସଂଖ୍ୟାରେ ବହୁ ବରିଷ୍ଠ ଓ ପ୍ରବୀଣ ଲେଖକଙ୍କ ଲେଖା ପ୍ରକାଶ ପାଇଥିଲା ।

ମୋର ଡିଗ୍ରୀ ସରିବା ପୂର୍ବରୁ ସାର୍‌ଙ୍କର ନବରଙ୍ଗପୁରକୁ ବଦଳି ହେଇଗଲା । ତାଙ୍କଠାରୁ ଦୂରେଇ ରହିବାର ଦୁଃଖକୁ ସେ ଲାଘବ କରିଥିଲେ ପତ୍ରାଳାପ ମାଧ୍ୟମରେ । ପତ୍ରରେ ବି ସେଇ ପଢ଼ାଲେଖା ଓ ପ୍ରକାଶନ ପ୍ରସଙ୍ଗ । ପ୍ରେରଣା ଓ ପୁଲକଭରା ତାଙ୍କର ସବୁ ଚିଠିକୁ ମୁଁ ଏବେବି ସାଇତି ରଖିଛି ।

ବି.ଏ.ପରେ ୟୁନିଭର୍ସିଟିରେ ଯାଇ ଏମ୍.ଏ. ପଢ଼ିବାଭଳି ଆର୍ଥିକ ସମ୍ବଳ ମୋର ନଥିଲା । ଏଣୁ ମୁଁ କିଛିଦିନ ଘରେ ବସିରହିଲି । କିନ୍ତୁ ଖାଲିରେ ବସିଲେ ମନକୁ ନାନା ଦୁଶ୍ଚିନ୍ତା ଆସେ ବୋଲି ସାର୍ ମୋତେ କେଉଁଠି ନା କେଉଁଠି କାମରେ ଲଗାଇବାର ବ୍ୟବସ୍ଥା ଖୋଜୁଥିଲେ । ଫଳସ୍ୱରୂପ ମୁଁ କୋରାପୁଟସ୍ଥ 'ଶାବରଶ୍ରୀକ୍ଷେତ୍ର'ର ପାଠାଗାର ସଂଚାଳକ ଭାବରେ ଯୋଗଦେଲି । ମୁଖ୍ୟ ପରିଚାଳକ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କୁ ପ୍ରଭାବିତ କରି ମୋତେ ସେଠାରେ ରଖାଇବାରେ ସାର୍‌ଙ୍କ ଦାନ ଅବିସ୍ମରଣୀୟ । କାରଣ ସେଠାରେ କାମ କରିବା ସହ ମୁଁ ପାଠାଗାରର ବହୁ ଦୁର୍ଲ୍ଲଭ ବହି ପଢ଼ିବାର ସୁଯୋଗ ନେଲି, କ୍ୟାଟାଲଗ୍ ପ୍ରସ୍ତୁତିର କଳାକୌଶଳ ଶିଖିଲି । ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରେ ଅବସ୍ଥାନ, ନିତ୍ୟ ପ୍ରସାଦ ସେବନ, ଦେବଦର୍ଶନର ସୁଯୋଗ ମୋତେ ବହୁ ଆନନ୍ଦର ଅଧିକାରୀ କରିଥିଲା । ସେଠି କାମ କରିବାର ଛ'ମାସ ମୋ ଜୀବନର ଏକ ଅଭୁଲା ଅଧ୍ୟାୟ ହୋଇ ରହିଥିବ । ମାତୃବିୟୋଗ କାରଣରୁ ମୋତେ ସେଠାରୁ ବିଦାୟ ନେବାକୁ ପଡ଼ିଥିଲା ।

ତା'ର କିଛିମାସ ପରେ ଶାବର ଶ୍ରୀକ୍ଷେତ୍ରରେ ଆୟୋଜିତ ହେଇଥାଏ 'ଭାଗବତ'ର ପାଞ୍ଚଶତବର୍ଷ ପୂର୍ତ୍ତି ଉପଲକ୍ଷେ ଏକ ଭବ୍ୟ ସମାରୋହ । ଓଡ଼ିଶାର ବହୁ ବରିଷ୍ଠ ଲେଖକ/ ବିଦ୍ୱାନ ନିମନ୍ତ୍ରିତ ହୋଇ ଆସିଥାନ୍ତି ସେ ସଭାକୁ । ସାର୍‌ଙ୍କ ସହିତ ମୁଁ ବି ଯାଇଥାଏ । ପ୍ରଥମ ଅଧିବେଶନ ପରେ ପ୍ରସାଦ ସେବନ ପାଇଁ ସମସ୍ତେ ଆନନ୍ଦ ବଜାରକୁ ଗଲୁ । ସେଠାରେ ଜାଗାର ଅଭାବ ଦେଖି ଶ୍ରୀଯୁକ୍ତ ପାଣିଗ୍ରାହୀ ମୋତେ ପରେ ବସିବ କହି ଅଟକାଇବାରୁ ସାର୍ ହସ୍ତକ୍ଷେପ କରି କହିଲେ, 'ନା, ନା ସେ ମୋ ସହିତ ବସିବ । ସିଏ ଏବେ ଆଉ ଆପଣଙ୍କ କର୍ମଚାରୀ ନୁହେଁ, ସେ ବି ନିମନ୍ତ୍ରିତ ଅତିଥିଙ୍କ ମଧ୍ୟରୁ ଜଣେ' କହି ମୋତେ ପାଖରେ ବସାଇଦେଲେ । ମୁଁ ସ୍ତବ୍ଧ ଚକିତ ହୋଇଗଲି । ଏତେଦିନ ମୋତେ ଆଦର କରୁଥିବା ସାର୍ ମୋର ସମ୍ମାନ ପ୍ରତି ମଧ୍ୟ ସଚେତନ ଜାଣି, ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । କୃତଜ୍ଞତାରେ ମୋର ମୁଣ୍ଡ ନଇଁଗଲା ।

ସାର୍‌ଙ୍କ ନବରଙ୍ଗପୁରରେ ଅବସ୍ଥାନ କାଳରେ ମୁଁ ଅନେକ ବାର ତାଙ୍କ ଘରକୁ ଯାଇଛି । ଅଜସ୍ର ସ୍ନେହ, ଗଭୀର ଶ୍ରଦ୍ଧା, ନିବିଡ଼ ଶାସନ ଓ ନିର୍ମଳ ଦିଗଦର୍ଶନ ପାଇ ଫେରିଛି । ତାଙ୍କ ପ୍ରଦତ୍ତ ଝୁଲାମୁଣିରେ ବହି, ପତ୍ର ପତ୍ରିକା, ଡାଏରୀ, ପେନ୍, ଡ୍ରେସ୍ ସମେତ ଯାବତ ସୁଖର ସଉଦା ନେଇ ଫେରିବାବେଳେ ମୋ ଭାବପ୍ରବଣତାର ସୀମା ରହେନା । ଲାଗେ ସତରେ ମୁଁ ହିଁ ତାଙ୍କର ପ୍ରିୟତମ । ସେ ମୋତେ ଚିଠିରେ ସମ୍ବୋଧନ କରନ୍ତି 'ପ୍ରିୟତମ ଡମ୍ବରୁ' ବୋଲି । ସେ ସମ୍ବୋଧନର ସାର୍ଥକତା ମୁଁ ମର୍ମେମର୍ମେ ଉପଲବ୍ଧି କରିଛି ।

ଚିଠିରେ ହେଉକି ସାକ୍ଷାତରେ ତାଙ୍କ ପ୍ରେରଣାର ଇତି ନଥାଏ । ପୁରାତନ ସାହିତ୍ୟର ପର୍ଯ୍ୟାଲୋଚନା ସାଙ୍ଗକୁ ନୂତନ ସୃଜନର ସମନ୍ୱୟ ଓ ଯୁଗାନୁସାରୀ ଶୈଳୀ ସଂଯୋଜନ ପାଇଁ ସେ ସର୍ବଦା ଓ ସର୍ବଥା ଚିନ୍ତା କରୁଥିଲେ । ତାଙ୍କ ଚିନ୍ତା-ଚେତନା-ଗବେଷଣାରୁ ବହୁ ନୂଆ କଥା ଜନ୍ମ ନେଇଛି । ସବୁ ନୂଆ ଚିନ୍ତା ନେଇ ସେ ଖୋଲାଖୋଲି ଆମମାନଙ୍କ ସହ ଆଲୋଚନା କରିଛନ୍ତି । ନୂଆ ଶୈଳୀ, ନୂଆ ଭାବ, ନୂତନ ବିଷୟବସ୍ତୁକୁ ନେଇ ଲେଖିବାକୁ ଆହ୍ୱାନ ଦିଅନ୍ତି । ବେଳେବେଳେ ତାଙ୍କର ଆହ୍ୱାନକୁ ସାମ୍ନା କରିବାକୁ ମୋର ସାହସ କୁଳାଏନା । ଅଥଚ ସେ ସାହସ ଦିଅନ୍ତି । ଲେଖାର ସୂତ୍ର ଧରାଇଦିଅନ୍ତି, ବାଟ କଢ଼ାଇନିଅନ୍ତି । ଯାପରେ ତ ପଥ ସୁଗମ ହିଁ ସୁଗମ । ମୁଁ ମୋ ଜୀବନରେ ଏଭଳି ଗୁରୁଟିଏ ଆଉ କାହିଁ ପାଇନାହିଁ । ସେ ମୋର ଶିକ୍ଷା, ଦୀକ୍ଷା, ସାହିତ୍ୟ, ଜୀବନ ଓ ଯୌବନର ଗୁରୁ ଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ମୋ ପଢ଼ାପଢ଼ି ବେଳେ ସେ ମୋ ପାଇଁ ଯେତିକି ଚିନ୍ତା କରୁଥିଲେ, ପରୀକ୍ଷା ଶେଷରେ ଫଳ ପାଇଁ, ଫଳ ପ୍ରାପ୍ତି ପରେ କର୍ମ ନିଯୁକ୍ତି ପାଇଁ/ ତାଲିମ ପାଇଁ ସର୍ବୋପରି ସଫଳ ଲେଖକଟିଏ ହେବାପାଇଁ ସେତିକି ଚିନ୍ତା କରୁଥିଲେ ।

ମୋର ଲେଖାଟିଏ ପଢ଼ିବାର ସୁଯୋଗ ପାଇଲେ ସେ ନିଶ୍ଚୟ ଚିଠି ଲେଖନ୍ତି । ଲେଖାର ଭଲମନ୍ଦ ବିଷୟରେ ନିର୍ଲିପ୍ତ ମତାମତ ଦିଅନ୍ତି ଓ ଆହୁରି କି ଭଳି ଭଲଲେଖା ଉତୁରିପାରିବ ତା ପାଇଁ ଟିପ୍‌ସ ଦିଅନ୍ତି । ସେ କହନ୍ତି, ପ୍ରତ୍ୟେକ ସୃଜନକର୍ମ (ଶିଳ୍ପକଳା, ଚିତ୍ରକଳା, ନାଟ୍ୟକଳା ଇତ୍ୟାଦି) ପାଇଁ ଲୋଡ଼ା ଗଭୀର ଅଧ୍ୟୟନ ଓ ଅନ୍ତର୍ଦୃଷ୍ଟି । ଅନୁଭବର କଷଟିରେ ଉତ୍ତୀର୍ଣ୍ଣ ନହେଲେ ଲେଖାଟିଏ ପାକଳ ହୁଏନା । କଳା, ଭାସ୍କର୍ଯ୍ୟ, ସାହିତ୍ୟର ପ୍ରବୀଣ ପର୍ଯ୍ୟବେକ୍ଷକ ଭାବରେ ମୁଁ ତାଙ୍କୁ ମାନେ । ଏ ସବୁର ମାଲିକକୁ ସେ ସମାନ ଶ୍ରଦ୍ଧା କରନ୍ତି । ସମ୍ମାନିତ କରିବାର ବାଟ ଖୋଲନ୍ତି । ସମ୍ମାନିତ କରି ନିଜେ ଖୁସିରେ, ପରିପୂର୍ଣ୍ଣତାରେ ଉଚ୍ଛୁଳି ଉଠନ୍ତି । ପାଇବା ଠାରୁ ଦେବାରେ ଆନନ୍ଦ ପାଉଥିବା ଏଭଳି ବିରଳ ବ୍ୟକ୍ତିତ୍ୱ ମୋର ଗୁରୁ ଥିଲେ; ଏହା ମୋର ସୌଭାଗ୍ୟ, ଗର୍ବ ଓ ଗୌରବ । ଏବେବି ମୁଁ କାନ୍ଧରେ ଝୁଲା ପକାଇ, ଦାଢ଼ୀ ରଖି ଗୁଣପୁର ଅଞ୍ଚଳର ଯେ କୌଣସି ସାହିତ୍ୟ ସଭାକୁ ଗଲେ କେହିକେହି କହନ୍ତି-'ହେଇରେ ଶିବରାମ ପାତ୍ରଙ୍କ ଚେଲା... । ସେତିକି ଶୁଣିଦେଲେ ମୋ ମାନସ ଚକ୍ଷୁରେ ନାଚି ଉଠନ୍ତି ମୋ ପ୍ରିୟ ସାର୍ ଶିବରାମ ପାତ୍ର । ମୁହୂର୍ତ୍ତକର ମୂର୍ତ୍ତିମନ୍ତତାରେ ମୁଁ ମୁଗ୍ଧ ହୋଇଯାଏ । ଆଜି ସେ ଇହଜଗତରେ ନାହାନ୍ତି ସତ; କିନ୍ତୁ ଏବେ ବି ସେ ମୋ ମନରେ ପ୍ରେରଣାର ପ୍ରତୀକ ହୋଇ ରହିଛନ୍ତି । ଗବେଷଣାତ୍ମକ କାର୍ଯ୍ୟରେ ତାଙ୍କର ଦୃଷ୍ଟି ଓ ଦର୍ଶନ ଅନନ୍ୟ । ପୁଙ୍ଖାନୁପୁଙ୍ଖ ଆଲୋଚନା, ତୀକ୍ଷ୍ଣ ଦୃଷ୍ଟି, ଗଭୀର ଅଧ୍ୟୟନ, ନିବିଡ଼ ଚିନ୍ତନରୁ ତାଙ୍କର ଲେଖାଟିଏ ଜନ୍ମ ନେଇଥାଏ । ଏଥିପାଇଁ ତାଙ୍କର ଲେଖାଲେଖି ଅପ୍ରଚୁର ଅଥଚ ଅନନ୍ୟ । ଭିତ୍ତି ପ୍ରବନ୍ଧ ହେଉ କି ରେଡ଼ିଓଟକ୍, ଭାଷଣ ହେଉକି ରିସର୍ଚ୍ଚ ପେପର୍ ସବୁଥିରେ ତାଙ୍କ ସାଧନା ବାରିହୋଇପଡ଼େ । ଲେଖାଟିଏ ପ୍ରସ୍ତୁତ କରି ସାରିବା ପରେ ସେ ତାକୁ ବାରବାର ପଢ଼ନ୍ତି, ପଢ଼ାନ୍ତି, କାଟନ୍ତି, ଯୋଡ଼ନ୍ତି । ନୂଆ ଓ ଗ୍ରହଣଯୋଗ୍ୟ ମତାମତକୁ ସ୍ୱୀକାର କରନ୍ତି । ଏମିତିରେ ତାଙ୍କର ବହୁତ ସମୟ ଯାଏ । ବେଳେବେଳେ ଏଇ କାରଣରୁ ପତ୍ରପତ୍ରିକାକୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସେ ଲେଖା ଦେଇପାରନ୍ତିନି । ନିଜ ପାଇଁ ବା ନିଜର କୃତିଗୁଡ଼ିକର ପ୍ରକାଶନ ପାଇଁ ସେ ଜମା ବ୍ୟସ୍ତ ନଥିଲେ । ସୁରେନ୍ଦ୍ର ବିଚାର ମଂଜୁଷା ବା

ଫକୀରମୋହନ ବିଚାର ମଞ୍ଜୁଷା ପାଇଁ ସେ ହୁଏତ ୧୫ରୁ ୧୭ବର୍ଷ ସମୟ ନେଇଥିବେ । ତଥ୍ୟ ସଂଗ୍ରହ, ସଂରକ୍ଷଣ, ତା'ର ସାର୍ଥକ ସଂଯୋଜନ/ସଂପାଦନ ପାଇଁ ତାଙ୍କର ଧୈର୍ଯ୍ୟ ଓ ଧୀମତ୍ତା ବେଶ୍ ପ୍ରଣିଧାନଯୋଗ୍ୟ ।

ମଣିଷ, ପଶୁପକ୍ଷୀ, ଗଛଲତାଙ୍କୁ ଭଲ ପାଇବାରେ ସେ ଏକ ଉଦାହରଣ ହୋଇ ରହିବେ । ବନ୍ଧୁ ପରିଜନଙ୍କ ବାହାଘରେ ବହି, ଗଛ ଉପହାର ଦେବା ତାଙ୍କର ଚିରାଚରିତ ବ୍ୟବହାର । କାରଣ ଅକାରଣରେ ମୋତେ ସେ ବହୁତ ବହି ଉପହାର ଦେଇଛନ୍ତି । ମୋ ବାହାଘରେ ଉପସ୍ଥିତ ହୋଇନପାରି ଚିଠି ଲେଖିଥିଲେ- ''ପ୍ରିୟତମ ତମ୍ୱରୁ ! ତମ ବାହାଘରେ ଯୋଗ ଦେଇପାରିଲି ନାହିଁ ବୋଲି ମନଦୁଃଖ କରିବ ନାହିଁ । ତମ ପାଇଁ ଉପହାର 'କିଶୋରୀଚରଣ ଗ୍ରନ୍ଥାବଳୀ' ରଖିଦେଇଛି, ଆସିଲେ ନେଇଯିବ । ନୂଆ ବୋହୂକୁ ଆମର ଅଜସ୍ର ଆଶୀର୍ବାଦ । ଏବେ ତମେ ଜୀବନର ନୂଆ ଅଧ୍ୟାୟରେ ପାଦ ଦେଇଛ । ତୁମ ଦାମ୍ପତ୍ୟ ସୁଖମୟ ହେଉ, ରସମୟ ହେଉ, ନବନବ ବିପୁଳ ଅନୁଭବରେ ପୁଷ୍ଟଳ ହେଉ, ଏଇ ଶୁଭକାମନା ସହ-ତମର ସାର୍ ।''

ସୁଖରେ ହେଉ କି ଦୁଃଖରେ ସାର୍‌ଙ୍କ ସହାନୁଭୂତି ମୋତେ ଆସ୍ଥା ଦେଇଛି, ଦମ୍ଭ ଦେଇଛି । ଜୀବନର ମୁକ୍ତ ସତ୍ୟକୁ ସାମ୍ନା କରିବାର ଶିକ୍ଷା ଦେଇଛି । ମୋର ବାପାଙ୍କ ମୃତ୍ୟୁପରେ ମୋ ବଡ଼ଝିଅର ମୃତ୍ୟୁଖବର ପାଇ ସେ ଚିଠି ଲେଖିଥିଲେ, ''xxx ଯୌବନରେ କନ୍ୟାଶୋକ ଦାରୁଣ ଦୁଃଖ ଦେଇଥିବ, ଦେଉଥିବ । କିନ୍ତୁ ଯାହା ବିଧିନିର୍ଦ୍ଦେଶ କ'ଣ କରାଯିବ ? ଏଇ ସବୁ ଏକ ଏକ ପରୀକ୍ଷା । ଦେଖୁଛି କେତେବର୍ଷ ହେଲା ତମେ ମୃତ୍ୟୁର କଠୋର କ୍ରୂରତାକୁ ଅଙ୍ଗେ ନିଭାଉଛ । ଏବଂ ସେ ଭିତରେ ସକଳ ଉପସ୍ଥିତ ଦାୟିତ୍ୱ ନିର୍ବାହ କରୁଛ । ଉପସ୍ଥିତ କାଳରେ ବି ତମେ ସବୁଟାକୁ ସମ୍ମୁଖୀନ କରିପାରିବ । ନିଜ ଉପରେ ବିଶ୍ୱାସ ରଖ, ଭଗବାନ ସଦା ସାହାଯ୍ୟ କରିଚାଲିବେ । xxx ତମର 'ସ୍ୱାଧୀନତା ଓ ସ୍ୱାଭିମାନ' ପ୍ରବନ୍ଧ ବହୁତ ଭଲଲାଗିଛି । ପରିପକ୍ୱଭାଷା ବିଚାର ଓ ପ୍ରକାଶ ଭଙ୍ଗୀ । ପ୍ରବନ୍ଧ ବହୁତ ଲେଖ । ଦେଶପ୍ରେମ, ଭଗବଦ୍ ବିଶ୍ୱାସ, ପ୍ରେମ ଇତ୍ୟାଦିକୁ ନେଇ ଲେଖ । ମୌଳିକ ପ୍ରବନ୍ଧ ଲେଖିବାକୁ ତମେ କୌଶଳ ଓ ବିଶ୍ୱାସ ହାସଲ କଲଣି । ବହୁତ ଖୁସି ଲାଗୁଛି । xxx''

କେଉଁଠୁ ମିଳିବ ଆଉ ଏଭଳି ପ୍ରେରଣା ? ସିଏ ଅକାଳରେ/ଅଚାନକ ଚାଲିଯିବେ ବୋଲି କିଏ ଜାଣିଥିଲା ? ମୃତ୍ୟୁର ସାତଦିନ ଆଗରୁ ସେ ମୋତେ ଫୋନ୍ କରିଥିଲେ ଏ ଅଞ୍ଚଳର କିଛି ଲୌକିକ ଶବ୍ଦାବଳୀ ପଠାଇବାକୁ । କାରଣ ଗୋଟିଏ ଅଭିଧାନ ସଂକଳନ ସମିତିର ସଦସ୍ୟ ଭାବରେ ଏଭଳି ଶବ୍ଦାବଳୀ ସଂଗ୍ରହର ଦାୟିତ୍ୱ ତାଙ୍କ ଉପରେ ପଡ଼ିଥିଲା । ପ୍ରତିଶ୍ରୁତି ଦେଇ ମୁଁ ତାହା ରକ୍ଷା କରିପାରିନଥିଲି । ମୃତ୍ୟୁର ମାସକ ଆଗରୁ ମୋତେ ଜାଗାଟିଏ କିଣାଇଦେବାର ଯୋଜନା ସେ ହିଁ କରିଥିଲେ । ଅପ୍ରତ୍ୟାଶିତ ଭାବରେ ଅତି ସୁଲଭ ଦରରେ ମୁଁ ଏଠି ଜାଗାଟିଏ କିଣିଲି କେବଳ ସାର୍‌ଙ୍କ ମଧ୍ୟସ୍ଥତା ଯୋଗୁଁ ମୋ ପାଇଁ ମୁଣ୍ଡକୁ ଛତାଠାରୁ ଆରମ୍ଭ କରି ପାଦତଳର ଖଣ୍ଡେ ଜାଗା ପର୍ଯ୍ୟନ୍ତ ସାର୍‌ଙ୍କ ପ୍ରେରଣାର ପ୍ରଶସ୍ତ ହାତର ଭୂମିକା ରହିଛି । ଏପାରିରୁ ସେହି ଅମର ଆତ୍ମାଙ୍କୁ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଇବା ସହ ତାଙ୍କ ପ୍ରତି ସମସ୍ତ ଋଣ ସ୍ୱୀକାର କରୁଛି ।

ବାଣିଜ୍ୟକର ବିଭାଗ, ରାୟଗଡ଼ା

# ଲୋକଟା ଏମିତି ଜୀବନଟିଏ ବଞ୍ଚିଥିଲା....

ଶ୍ରୀ ନବକିଶୋର ରାଜ

ବଂଧୁ ଶିବରାମ ପାତ୍ର ଚାଲିଯିବାର ବର୍ଷଟିଏ ହୋଇଗଲା । ତାଙ୍କ ସହ ମୋର ଚାଳିଶି ବର୍ଷର ସଂପର୍କ । ଷାଠିଏ ଦଶକ ମଝାମଝି ଏକ ସାହିତ୍ୟ ପତ୍ରିକାର ସଂପାଦନା ଦାୟିତ୍ୱରେ ଥାଇ ସେ ବରାବର ମୋର ଝାଂଜିରୀ ମଂଗଳା ବାସଗୃହକୁ ଆସୁଥିଲେ ଏବଂ ମୋଠାରୁ ଲେଖା ସଂଗ୍ରହ କରିବା ସହିତ ସୌଜନ୍ୟ ସିକ୍ତ ସାହିତ୍ୟ ଆଲୋଚନା କରୁଥିଲେ । ଆହାଃ ! ଆଜି ଦୁର୍ଲ୍ଲଭ ଏପରି ସଂପାଦକ ଲେଖକର ଅନାବିଳ ସଂପର୍କ ।

ଶିବରାମବାବୁ ଟ୍ରାନ୍ସପୋର୍ଟରେ ଚାକିରୀ କରୁଥିଲେ । ବଦଳି ହୋଇ ବ୍ରହ୍ମପୁର ଆସିଲେ ସେଠି କଳିଙ୍ଗ ସାହିତ୍ୟ ସମାଜ ସାଂଗଠନିକ କାର୍ଯ୍ୟରେ ମାତିଲେ ।

ଏମ୍.ଏ.ଓଡ଼ିଆ ପାଶ୍ କରି ସେ ଗୁଣୁପୁରରେ ଅଧାପନା ବୃତ୍ତି ଆଦରିଲେ । ପୁଣି ତାଙ୍କ ସହ ଦେଖା ସତୁରୀ ଦଶକରେ । ସେତେବେଳେ ମୋ ଚାକିରୀର ପ୍ରଥମ କର୍ମସ୍ଥଳୀ ଜୟପୁରରେ ଆମେ ଗଢ଼ିଥାଉ 'ଜୟପୁର ସାହିତ୍ୟ ପରିଷଦ' ଏବେ ବି ସେ ସଂସ୍ଥା ଅଛି, ଯଦିଓ ବିଶେଷ ଭାବେ କ୍ରିୟାଶୀଳ ନୁହେଁ, ପରିଷଦର ବିଭିନ୍ନ ଅଧିବେଶନ ପଟାଙ୍ଗୀ, କୋରାପୁଟ ଆଦି ସ୍ଥାନରେ ଅନୁଷ୍ଠିତ ହେଉଥିଲା । ଶିବରାମ ବାବୁ କିଛି ଅଧିବେଶନରେ ଯୋଗ ଦେଇଛନ୍ତି । ତାଙ୍କ ସହ ଆସୁଥିଲେ ନାରାୟଣ ପାଟଣାର ପ୍ରଖର ବୁଦ୍ଧିଜୀବୀ ରାମପାଢ଼ୀ । ଏବେ ସେ ମଧ ଆଉ ନାହାନ୍ତି । ପାଢ଼ୀବାବୁ ଯେତିକି ରେସନାଲ୍ ସେତିକି ହେତୁବାଦୀ । ତାଙ୍କୁ ସେଥିପାଇଁ ଅନେକ ସମୟରେ ଅସାମାଜିକ ବୋଲି ମନେହୁଏ ।

ଶିବରାମବାବୁ ଲେଖକ ଗଢ଼ିବାରେ, ସାହିତ୍ୟକୁ ଲୋକପ୍ରିୟ କରିବାରେ ଯେତେ ସମୟ ବ୍ୟତୀତ କରିଛନ୍ତି, ସୃଜନଶୀଳ କର୍ମପାଇଁ ସେତିକି ସମୟ ଦେଇପାରିନାହାନ୍ତି ।

ଚାକିରୀର ଶେଷ ପର୍ଯ୍ୟାୟରେ ମୁଁ ସଚିବାଳୟରେ ଅର୍ଥ ବିଭାଗର ଅତିରିକ୍ତ ଶାସନ ସଚିବ ଥିବାବେଳେ ତାଙ୍କ ସହ ବରାବର ଦେଖାହୁଏ । ୧୯୭୬ରୁ ୧୯୯୫ ମୁଁ ଲେଖାଲେଖି ବନ୍ଦ କରିଦେଇଥିଲି । ୧୯୯୬ରୁ ଆଧାତ୍ମିକ ସାହିତ୍ୟ ରଚନା କରିବା ଆରମ୍ଭ କଲି । ମୋର ସାତୋଟି ବହି ସେ କେଉଁଠୁ କେଉଁଠୁ କିଣି ଆଣି ମୋ ସହ ସେ ସଂପର୍କରେ ଉତ୍ସାହଜନକ ତର୍ଜମା କରନ୍ତି । ଖଣ୍ଡିଏ ବି ବହି ଉପହାର ଦେବାର ସୁଯୋଗ ସେ ମୋତେ ଦେଇ ନାହାନ୍ତି ।

'ଆଇନା' ସାହିତ୍ୟ ପତ୍ରିକାର ମୁଖ୍ୟ ଉପଦେଷ୍ଟା ଭାବେ ମୁଁ ଦାୟିତ୍ୱ ନିର୍ବାହ କରେ । ଫେବୃୟାରୀ-ମାର୍ଚ୍ଚ ୨୦୦୫ ସଂଖ୍ୟାଟି ରାୟଗଡ଼ା ଜିଲ୍ଲା ବିଶେଷାଂକ ଭାବେ ପ୍ରକାଶ ପାଇବ ବୋଲି ସ୍ଥିର ହେଲା । ରାୟଗଡ଼ା ଜିଲ୍ଲାର ସାଂସ୍କୃତିକ ଜୀବନର ରୂପରେଖ ଆଙ୍କିବା ବେଳେ ଶିବରାମ ପାତ୍ରଙ୍କୁ କ'ଣ ବାଦ୍‌ଦେଇ ହୁଏ ? ସମଗ୍ର ଯୌବନଟି ଏହି ଅଂଚଳର ସାଂସ୍କୃତିକ ପାଣିପବନରେ ସେ ବିତାଇଛନ୍ତି । ସେହି ସଂଖ୍ୟା ପାଇଁ ଶିବରାମ

ପାତ୍ର 'ଗୁଣୁପୁର ଅଂଚଳର ଲୋକନାଟ-ଭୂତକେଳି' ଶୀର୍ଷକ ଗବେଷଣାତ୍ମକ ସଂଦର୍ଭ ପ୍ରଦାନ କରିଥିଲେ ।

ପୁସ୍ତକ ମେଳାରେ ତାଙ୍କ ସହ ଦେଖାହେଲା । ସେ ଷ୍ଟଲ୍ ଷ୍ଟଲ୍ ବୁଲି ବହି କିଣୁଥିଲେ । କହିଲେ- 'କଟକ ଯିବି । ନାଟ୍ୟକାର ରତିରଂଜନ ମିଶ୍ର ଅନ୍ତିମ ଶଯ୍ୟାରେ ।'
କିନ୍ତୁ ରତିମିଶ୍ର ଯିବା ଆଗରୁ ଶିବରାମ ବାବୁ ଆକସ୍ମିକ ହୃଦ୍‌ଘାତରେ ପରଲୋକ ଯାତ୍ରାକଲେ ।

ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ସୂଚାଇ ଦେଇଛନ୍ତି-ନିର୍ବୋଧମାନେ ଜୀବିତ ଅଥବା ମୃତ ବ୍ୟକ୍ତିଙ୍କପାଇଁ ଶୋକ କରିଥାଆନ୍ତି । ସୁଫୀ ସନ୍ଥ ଜଣେ କହିଥିଲେ- 'ଦେଖ, ଜଣେ ମରିଗଲା ବୋଲି କେମିତି କାନ୍ଦୁଚି, ଇଏ ଯେମିତି ଅମର !'

ସବୁ ଦାର୍ଶନିକବୋଧକୁ ବାଦ୍‌ଦେଇ ମମତ୍ୱର ସ୍ନିଗ୍ଧ ବନ୍ଧନଟିକୁ ବିଚାରକୁ ନେଲେ, ପାଇବା ଏବଂ ହଜାଇବା ବୋଧେ ମଣିଷ ଜୀବନର ଏକମାତ୍ର ପ୍ରାପ୍ତି ବୋଲି ନିଜକୁ ସାନ୍ତ୍ୱନା ଦେବା ବ୍ୟତୀତ ଉପାୟ ନାହିଁ ।

ଲୋକଟା ଏମିତି ଜୀବନଟିଏ ବଂଚିଥିଲା, କେବେ ଦୁଃଖ ଦୈନ୍ୟ ଅଭାବର ଶବ୍ଦଟିଏ ଉଚ୍ଚାରଣ ନକରି ହସି ହସି ଚାଲିଗଲା । ଆଜି ହସି ହସି କଥା କହୁଥିବା କେତୋଟି ସାହିତ୍ୟିକ ମିଳିବେ ?

ଏ୩୫, ଶକ୍ତିନଗର
ଲିଙ୍କରୋଡ୍, କଟକ-୧୨

## କଥାରେ କଥାରେ ଶିବରାମ୍

ସଦାଶିବ ଦାଶ

ନିୟତିର କ୍ରୂର ଇଂଗିତ ବେଳେବେଳେ ଅକାଳ ବଢ଼ି ପାଣି ପାଚିଲା ଧାନ କ୍ଷେତକୁ ଧୋଇ ନେବାପରି ମଣିଷକୁ ବି ଅନିଚ୍ଛାରେ ଛଡ଼େଇ ନିଏ । ବଢ଼ି ତ ନୁହେଁ ଅକାଳ ଭଉଁରୀ ମୃତ୍ୟୁ ସମୁଦ୍ରଟା ଜୁଆରିଆ ହୋଇ ବେଳ ଅବେଳ ନବିଚାରି ବାଟ ଭାଙ୍ଗି ଚାଲି ଆସେ ।

ବଂଧୁ ଶିବରାମ ଚଳଚଂଚଳ ଚିର ଯୁବାଟିଏ ଥିଲେ । ତାଙ୍କ ଦରପାଚାଲା ଦାଢ଼ିକୁ ଦେଖି ଥଟ୍ଟା କରି କହେ ନଡ଼ିଆ ବାରିରେ ଜହ୍ନ କିରଣ ପଡ଼ିଲେ ଯେମିତି ଅଧା ତୋଫା , ଅଧା ଅଂଧାର, ସେମିତି ତୁମ ମୁହଁର ବେଢ଼ଣ । ହସ ମାନେ ସବୁବେଳେ ମନଖୋଲା ହସ । ଖୋଲା ଠୋ ପଠାସ୍ କଥା । ବେଶ୍ ଟଇନିଫିଟ୍ ଲାଗେ ସେ ଯେତେବେଳେ ମୋଟା ଖଦଡ଼ର ପଂଜାବୀ ସାଂଗକୁ ଝୁଲା ବ୍ୟାଗଟାଏ ପକାଇଥାନ୍ତି କାଂଧରେ । ସୁରେନ୍ଦ୍ର ମହାନ୍ତିଠାରୁ ଚିତ୍ତଭାଇ । ମନୋଜ ଦାସଙ୍କଠୁ ଶାନ୍ତନୁ ଆଚାର୍ଯ୍ୟ । ମହାପାତ୍ର ନୀଳମଣି ସାହୁ, ରମାକାନ୍ତ, ସୀତାକାନ୍ତ, ବ୍ରଜରଥ, ସୁଦର୍ଶନ ଆଚାର୍ଯ୍ୟ ଇତ୍ୟାଦି କେମିତି ନା କୋଉ ବାଗରେ ବାହାରି ଆସନ୍ତି ପାଟିରୁ । ବେଣୀମାଧବ ପାଢ଼ୀ କି ସତ୍ୟନାରାୟଣ ରାଜଗୁରୁଙ୍କୁ ସେ ଭାରି ମାନନ୍ତି, ତାଙ୍କର ପାଣ୍ଡିତ୍ୟ ଆଗରେ ମଥା ନୋଇଁ ଦିଅନ୍ତି । ସତେ ଯେମିତି ଓଡ଼ିଆ କ୍ଲାସ ନେଉଛନ୍ତି

ସାର୍ ଆମର । ସ୍ଥାନ କାଳ ପାତ୍ର ଗୌଣ ହୋଇଯାଏ । ସାହିତ୍ୟମାନେ ନିରୁତା ସାହିତ୍ୟର ଚକ୍କଡା ଗାଡ଼ିଚିଏ ।

୧୯୬୯ ମସିହାର ଡିସେମ୍ବର ମାସର କଥା । ସେତେବେଳେ କଂଚା ବୟସ । କବିତା ଲେଖା ସଂଗକୁ ଯୁବ ଲେଖକ ସମ୍ମେଳନ ପାଇଁ ଧାଁ ଧପଡ଼ କରିବାରେ ତରୁଣ ମଣିଷଟିଏ । ସେ ବର୍ଷ ସମ୍ମେଳନ ଉଦ୍‌ଘାଟିତ କରୁଥାନ୍ତି ପ୍ରଫେସର ପି.ଲାଲ । ଆନ୍ଧ୍ରରୁ ଆସିଥାନ୍ତି ନିଖିଳେଶ୍ୱର, ଜ୍ୱାଳାମୁଖୀ, ସେରେବେନ୍ଦାରାଜୁ, ପ୍ରମୁଖ ବିପ୍ଳବୀ କବିମାନେ । ଯଦିଓ ମୋର ସେମାନଙ୍କ ସହ ପ୍ରଥମ ସଂପର୍କ ଏବଂ ସେମାନଙ୍କୁ ନିମନ୍ତ୍ରଣ କରାଇ ଆଣିବା ଦାୟିତ୍ୱ ନେଇଥିଲି ହେଲେ ସେମାନଙ୍କ ସହ ମିଳାମିଶା କରିବାରେ ଶିବରାମ ଥିଲେ ସବୁଠାରୁ ଆଗୁସାର । କିପରି ରହିବେ, ଗୋପାଳପୁର ବୁଲିବେ । ବଂଧୁ ନିଖିଳେଶ୍ୱର କହିଥିଲେ, ତୁମେ ସିନା ଡାକି ଆଣିଚ ହେଲେ ଶିବରାମ ବାବୁ ଆମର ଅସଲ କେୟାର ଟେକର ।

ବ୍ରହ୍ମପୁର ଯୁବଲେଖକ ସମ୍ମେଳନ ପରେ ଜୟପୁର, ଭବାନୀପାଟଣା, ଫୁଲବାଣୀ, ବଲାଙ୍ଗୀର, ଯୋଉଠି ହେଲେ ବି ଶିବରାମ ଯାଇ ସେଠି ହାଜର । ଅନେକ ବର୍ଷ ଧରି ସେ ଜିଲ୍ଲା (ଗଂଜାମ) ପ୍ରତିନିଧି ମଧ୍ୟ ଥିଲେ । ତା'ପରେ ତାଙ୍କ ସହ ବେଶୀ ଜମିଲା ଭୁବନେଶ୍ୱରରେ । ସେ ଅଧ୍ୟାପକ ଚାକିରୀ ପୂର୍ବରୁ ଟ୍ରାନ୍ସପୋର୍ଟ କଂପାନୀର ଅଡିଟର ଥିଲେ । ପୁରୁଣା ବସ୍‌ଷ୍ଟାଣ୍ଡ ଭୁବନେଶ୍ୱରର ଉପର ମହଲାରେ ତାଂକ ଅଫିସ । ଗୋଦାବରୀଶ ସାହିତ୍ୟ ସଂସଦ ଠାରୁ ଆରମ୍ଭ କରି ଯେତେ ସାହିତ୍ୟ ଅନୁଷ୍ଠାନ ତା'ର ମଧ୍ୟ ସେ ସଭ୍ୟ । ଆମେ (ମୁଁ/ପ୍ରସନ୍ନ ପାଟ୍ଟଶାଣୀ, ହୁସେନ ରବିଗାଂଧୀ) ଇତ୍ୟାଦି ଅନେକ ସମୟରେ ତାଙ୍କ ପାଖକୁ ଯାଉ । ସେତେବେଳେ ଟ୍ରାନସ୍‌ପୋର୍ଟ ୟୁନିୟନ୍‌ର ପ୍ରେସିଡେଣ୍ଟ ଥାଆନ୍ତି ହରିଶ ବକ୍‌ସି ପାତ୍ର । ସେକ୍ରେଟେରୀ ଥାଆନ୍ତି କଳ୍ପତରୁ ଦାସ ଓ ହୁସେନ ରବିଗାଂଧୀ । ୟୁନିଅନ୍ ଅଫିସ୍ ଥାଏ ବୁଦ୍ଧେଶ୍ୱରୀ କଲୋନୀର ଏକ ଭଡ଼ା ଘରେ । ଅନେକ ସମୟରେ ସେଠି ସାହିତ୍ୟ ସଭା ହୁଏ । ଟିକେ ଡାକିଦେଲେ ସିଏ ଯାଇଁ ସେଠି ହାଜର । ରସିଦ ବହି ଧରେଇ ଦେଇ ଆସିଲେ ସବୁ କଣ୍ଡକ୍ଟରଙ୍କଠୁ ପାଂଚ ଦଶ ଟଙ୍କା ଲେଖା ଆଦାୟ କରନ୍ତି ଯୁବଲେଖକ ସମ୍ମେଳନର ଖର୍ଚ୍ଚ ପାଇଁ । ଯେମିତି ରସିଦ ବହି ପାଇଯିବେ କହିବେ 'ଦେଖ ଏଇ ଯେଉଁ ଟିକେଟ୍ ବହି ତାକୁ କିଏ ପଢ଼ିବ । କ'ଣ ସେଥିରେ ଲେଖାଥାଏ । କୋଉଠୁ ଯାତ୍ରୀ ବସକୁ ଚଢ଼େ... କୋଉଠି ଓହ୍ଲାଏ ତା' କେବଳ ଭଗବାନଙ୍କୁ ଜଣା । ଅଡିଟ୍ ଗୋଟାଏ ଫାର୍ସ । ଖୋଲ କରିଦେଲେଣି ଡିପାର୍ଟମେଣ୍ଟ୍‌ଟାକୁ । ଯଦି ଯୁବଲେଖକକୁ ନଦେବେ ତା'ହେଲେ ଟିକେଟ ବହିର ଅଡିଟ୍ ପାଶ୍ ବଂଦ ।

ଏକଥା ସିନା କହନ୍ତି ହେଲେ କଣ୍ଡକ୍ଟରଙ୍କଠାରୁ କହି ବୋଲି ଦୁଇ ତିନିଶ ଟଙ୍କା ଆଦାୟ କରିଦିଅନ୍ତି । କଲିକତାର ପୂର୍ବାଞ୍ଚଳ ଯୁବଲେଖକ ସମ୍ମେଳନ ବେଳକୁ ସେ ବୁଲିବୁଲି ଆମ ସଂଗରେ ଚାଂଦା ଆଦାୟ କରିଛନ୍ତି ।

ସିଏ ବେଶୀ ଲେଖୁନଥିଲେ । ହେଲେ ପଢ଼ନ୍ତି ବହୁତ । ଘରେ ନେଇ ମ୍ୟାଗାଜିନ ଠାରୁ ବହି ସାଇତି ରଖେ । ସେଇଟା ଥିଲ ତାର ଅଜବ ନିଶା । କଥା କଥାକେ ଦକ୍ଷିଣିଆ ବୋଲିରେ ଟାହି ଟାପରା କରିବ । ତାପରେ କେବେ ଅଡିଟର ପଦରୁ ଇସ୍ତଫା ଦେଇ ଅଧ୍ୟାପକ ହୋଇଗଲା । ଆମେ ସବୁ ତା'ର ସାଙ୍ଗମାନେ ଭାବିଲୁ ବୋଧହୁଏ ଗୁଣପୁର

ସୀମାନ୍ତ ଅଂଚଳକୁ କେହି ଗଲେ ନାହିଁ । ତେଣୁ ସେ ଚାଲିଗଲା । ବୋଧହୁଏ ତାର ଅଧ୍ୟାପକ ଚାକିରୀ ଜୀବନ ଗୁଣୁପୁର କଲେଜରୁ ଆରମ୍ଭ ହୋଇଥିଲା । ଗୁଣୁପୁରରେ ଥିଲାବେଳେ ଯୁବଲେଖକ ସମ୍ମେଳନର ଉତ୍ସବ ଜୟପୁର, କାଶୀନଗର, ରାୟଗଡ଼ା, ପାରଳାଖେମୁଣ୍ଡିରେ ବହୁଥର ହୋଇଛି । ସବୁ ମିଟିଂ ଦେଖି ଶିବରାମ ଛୁଟିନେଇ ସେଠି ହାଜର । ସତେ ସିଏ ଯେପରି ଚଳଚଂଚଳ ସାହିତ୍ୟର ବାର୍ତ୍ତା ବହଟିଏ । ମୁଁ ଓ ପ୍ରସନ୍ନ (ପାଟଣାଣୀ) ସେତେବେଳେ ଏକାଠି ଆଭା ଓ ବେଳା ନାମକ ଦୁଇଟି ପତ୍ରିକା ପ୍ରକାଶ କରୁଥିଲା । ସେ ମ୍ୟାଗାଜିନ୍‌ର ପ୍ରମୁଖ ବିକ୍ରେତା ଥିଲେ ବ୍ରହ୍ମପୁର ରାଜୁ ବୁକ୍‌ଷ୍ଟଲର ମାଲିକ । ସେ ଆନ୍ଧ୍ରର ଲୋକଥିଲେ ବି ଓଡ଼ିଆ ପତ୍ରିକାର ପ୍ରସାର ପାଇଁ ବହୁତ କାମ କରିଥିଲେ । ଶିବରାମ ପ୍ରତି ମାସରେ ରାଜୁ ଠାରୁ ଅନ୍ୟୂନ ୧୦ଖଣ୍ଡ ପତ୍ରିକା ନେଇ ବ୍ରହ୍ମପୁର/ଗୁଣୁପୁର/ଆସ୍କା ଇତ୍ୟାଦିରେ ବିକ୍ରୀ କରିଦେଉଥିଲେ । କହୁଥିଲେ କଣ ହେ.. ଓଡ଼ିଆ ପତ୍ରିକା ନ କିଣିଲେ ସାହିତ୍ୟ ବଂଚିବ ହେ । ଭାଷା ସାହିତ୍ୟ ନବଂଚିଲେ ଯେତେ ପାଠ ପଢ଼ି କି ଲାଭ ।

କେତେ ଥର ଯାଇଛି ତାଙ୍କ ଘରକୁ । ସେଇ ନଛୋଡ଼ବଂଧା ଆଦର । ଖୁଇମ ଖୁଲା କଥାବାର୍ତ୍ତା । ଛାତି ଛାତିଏ ମମତା ସତେ ଯେପରି ଆଦର କରିବାର, ସଂଖୋଳିବାର ଚିରସ୍ରାବୀ ଛଳଛଳ ଝରଣାଟିଏ ।

ଏବେ ଭୁବନେଶ୍ୱର ପୁସ୍ତକମେଳା ଆରମ୍ଭ ହେବା ଦିନଠୁ ପ୍ରାୟ ୨୦/୨୧ ବର୍ଷ ହେଲାଣି । ସବୁତକ ପୁସ୍ତକ ମେଳାରେ ଗୋଟାଏ ବାରି ହେଇ ପଡୁଥିବା ମଣିଷ ଥିଲା ଶିବରାମ । ଯେମିତି ହେଲେ ମୋ ଚିତ୍ରୋତ୍ପଳା ଷ୍ଟଲରେ ଦୁଇ ଚାରିଥର ଅଧଘଣ୍ଟାଏ କଟାଇବ । ବହି ବସି ମନ ଲଗାଇ ପଢ଼ିବ । ବହି ବି କିଣିବ । ଯଦି କିଏ ତାର ପ୍ରିୟ ବଂଧୁ ଆସିଗଲେ ତାଙ୍କ ସଂଗେ ଚିହ୍ନା କରେଇଦେଇ ବହି କି ନେବାକୁ ବାଧ୍ୟ କରିବ ।

ସେ ଥିଲେ ସୁରେନ୍ଦ୍ର ମହାନ୍ତିଙ୍କର ସାହିତ୍ୟ ଧାରାର ଅନୁରକ୍ତ... ସ୍ତାବକ । ମଧୁମହାନ୍ତି, ଗୋକୁଳି ମହାନ୍ତି, ଇତ୍ୟାଦିଙ୍କୁ ଖୁବ୍ ନିକଟରୁ ସେ ଅନୁଭବ ଥିଲେ ।

ଶିବରାମ ଆଜି ଆମ ଭିତରେ ନାହିଁ । ସିଏ ଯେଉଁଠି ଥିଲେ କି ଚୁପ୍ ହୋଇ ବସିନଥିବ । ଗପୁଥିବ .. ଯେ ଗପୁଥିବ । ଗପର କଥା ସରିବ ନାହିଁ । ସତରେ ତା ବିନା ଭୁବନେଶ୍ୱର ପୁସ୍ତକ ମେଳା ଖାଁ ଖାଁ ଲାଗିବ ।

ଶିବରାମ ମୋର ଏପରି ଏକ ବଂଧୁ ଥିଲା ଯାହାପାଇଁ ଦୁଇ ବୁଂଦା ଲୁହ ଢାଳିଲେ ମନର ଓରିମାନା ମେଣ୍ଟି ପାରେନା । ସତରେ କାହିଁକି ତା କଥାମନେ ପଡ଼ିଲେ ଆଖିରେ ଲୁହ ଆସେନା ବରଂ ଛାତି ଭିତରଟାକୁ କିଏ କୋରି ପକାଏ । ହୃଦୟ ଭିତରେ ଜମାଟ ବାଂଧିଯାଏ ବେଦନାଭରା ଦୀର୍ଘଶ୍ୱାସ । ଶିବରାମ କେବଳ ଲୁହର ସାଥି ନଥିଲା ବରଂ ସେ ଥିଲା ହୃଦୟର କୋରକିତ ଆବେଗ ।

ଥା..ଯୁଆଡ଼େ ଯାଇଛୁ ଭଲରେ ଥା ଗପୁଥା..ଅପେକ୍ଷାରେ ଆମେ ବି ଦିନେ ପଂହଚିଯିବୁ ତୋ' ପାଖରେ ।

# ସାହିତ୍ୟ ପ୍ରାଣ ଶିବରାମ : ଅନ୍ତିମ ପ୍ରଣାମ

ଅଧ୍ୟାପକ ବିଶ୍ୱରଂଜନ

ମନେପଡୁଥିଲା, ୧୯୯୯ ମହାବାତ୍ୟା ସମୟର କଥା । ରବିଟକିଜ୍ ଛକ ପାଖରେ ଏକ ଭଡ଼ା ଘରେ ମୁଁ ସେତେବେଳେ ରହୁଥାଏ । ଦିନକ ପୂର୍ବରୁ ବାତ୍ୟାର ବିପର୍ଯ୍ୟୟରେ ସମସ୍ତେ ତ୍ରସ୍ତ । ଦୈନନ୍ଦିନ ଚଳଣିର ଖାଦ୍ୟ ସାମଗ୍ରୀ ହଠାତ୍ ଦୋକାନରୁ ସରିଯାଇଥାଏ । କେବେ ସ୍ୱାଭାବିକତା ଫେରିଆସିବ, ତା'ର କୌଣସି ଠିକ୍-ଠିକଣା ନଥାଏ । ବିଜୁଳି ସରବରାହ ବନ୍ଦ । ଆପଣ ହଠାତ୍ ପହଞ୍ଚିଗଲେ ମୋ ବସାରେ । ଘରେ ଚାଉଳ, ପନିପରିବା, ମହମବତୀ ଅଛି କି ନାହିଁ ପଚାରି ବୁଝିଲେ । ତା'ପରେ ଡାକି ନେଇଗଲେ ଆପଣଙ୍କ ବସାକୁ ମୋ ବ୍ୟାଗ୍‌ରେ ଆପଣଙ୍କ ଘରେ ମହଜୁଦ୍ ଥିବା କିଛି ପରିବା, ଚାଉଳ ସହ ନିଜ ସଂପର୍କୀୟଙ୍କ ଏକ ଦୋକାନରୁ ଅନ୍ୟାନ୍ୟ ଆବଶ୍ୟକ ସରଞ୍ଜାମ ଭର୍ତ୍ତି କରି ଆପଣ ମୋତେ ଘରେ ଛାଡ଼ି ଦେଇଗଲେ । ସାହିତ୍ୟ ପ୍ରାଣର ଏକ ସ୍ୱତନ୍ତ୍ର ପରିଚୟ ମୁଁ ସେଦିନ ପାଇଥିଲି । ଶୋଭନାର ବୃତ୍ତିଗତ ଜୀବନ ଓ ସଂସାରକୁ ନେଇ ଆପଣଙ୍କ ଭାବ ଓ ଭାବନା । ତାର ସରଳ, ନିରାଡ଼ମ୍ବର ବିବାହ ଉତ୍ସବ । 'ସୁରେନ୍ଦ୍ର ବିଚାର ମଂଜୁଷା'ର ପ୍ରକାଶନ । 'ସରସ୍ୱତୀ' ପ୍ରକାଶନ ସଂସ୍ଥାର ଉନ୍ମେଷ । ଏକାମ୍ର କଲେଜରେ ଉପାଧ୍ୟକ୍ଷ ପଦରେ ଥାଇ ମୋତେ ଆପଣଙ୍କ କଲେଜ ଉତ୍ସବକୁ ନିମନ୍ତ୍ରଣ । ସବୁକିଛି ମନେପଡ଼ି ଯାଉଥିଲା । ମାତ୍ର ଆପଣଙ୍କ ନିମନ୍ତ୍ରଣ ରକ୍ଷାକରି ନା ମୁଁ ଆପଣଙ୍କ କଲେଜକୁ ଯାଇପାରିଥିଲି ନା ଆପଣଙ୍କ ଅନୁରୋଧରେ 'ସୁରେନ୍ଦ୍ର ବିଚାର ମଂଜୁଷା'ର ଆଲୋଚନାଟିଏ ଲେଖିପାରିଥିଲି । ଆପଣଙ୍କ ଆତ୍ମୀୟତାର ପ୍ରତ୍ୟୁତ୍ତର ଦେବାପାଇଁ ସୁଯୋଗ ନଦେଇ ଆପଣ କିନ୍ତୁ ଚାଲିଗଲେ ।

ଆପଣ ହୁଏତ ମୋତେ ଖୋଜିଥିବେ । ଖୋଜୁଥିଲେ ମଧ୍ୟ । ମାତ୍ର ଯେ ମୁଁ ଯେ ସରକାରୀ ବସା ଛାଡ଼ି ସ୍ୱବାସକୁ ଆଦରି ନେଇଥିଲି, ତାର ଖବର ଆପଣଙ୍କ ପାଖରେ ନଥିଲା । ଆପଣଙ୍କୁ ନିଜ ଘରର ଠିକଣା ଦେଇପାରିଲି ନାହିଁ । କେତେ ଖୁସି ହୋଇନଥାନ୍ତେ ଆପଣ । କାରଣ, କେତେବାର ଆପଣ ମୋତେ କହିଛନ୍ତି, ବାରମ୍ବାର ଚେତେଇ ଦେଇଛନ୍ତି ନିଜର ଘରଖଣ୍ଡିଏ କରିନେବାପାଇଁ । ଖାଲି ଘର ନୁହେଁ, ଶେଷ ଥର ପାଇଁ ଜୟଦେବ ଭବନର ଏକ ସଭାରେ ଯୋଗ ଦେବା ଅବସରରେ ଆପଣ ମୋତେ କହିଥିଲେ- 'ଏଥର ଆପଣ ନିଜ କଲେଜ ଜୀବନର ଘଟଣା ବହୁଳ ଅଭିଜ୍ଞତାକୁ ସମ୍ବଳକରି ବେଶ୍ ବଡ଼ ଉପନ୍ୟାସଟିଏ ଲେଖନ୍ତୁ । ଆପଣଙ୍କ ପାଖରେ ମୋର ଏଇଟା ଏକ ବିଶେଷ ଲେଖକୀୟ ଦାବି ।'

ଆପଣଙ୍କ ଦାବି ପୂରଣ କରିବା ଭଳି ଲେଖକୀୟ ଶକ୍ତି ଓ ସାମର୍ଥ୍ୟ ମୋ ଭିତରେ ଅଛି କି ନାହିଁ ଜାଣେନା । ମାତ୍ର ଆପଣଙ୍କ ଅବର୍ତ୍ତମାନରେ ଏ ଦାବି ମୋ ପାଇଁ ଏକ ଦାୟିତ୍ୱ ପାଲଟିଯାଇଛି । ଆପଣଙ୍କ ଅନାବିଳ ଆତ୍ମୀୟତାର ଅନୁରୂପ ପ୍ରତିଦାନ ଦେବା ଲାଗି ଏକ ବିଶେଷ ଦାୟିତ୍ୱ ।

ମୋ ଦୃଷ୍ଟିରେ ଜୀବନକାଳ ଭିତରେ କିଏ କେତେ ବହି ଲେଖିଲା, ନିଜ ପାଇଁ କେତେ ମାନପତ୍ର ବା ପୁରସ୍କାର ସଂଗ୍ରହ କରିପାରିଲା, ସେଇଟା ଆଦୌ ବଡ଼ କଥା

ନୁହେଁ । ବଡ଼ କଥା ହେଉଛି, କିଏ ନିଜର ସଂସାରକୁ ସାହିତ୍ୟମୟ କରିଦେଇପାରିଲା । ସାହିତ୍ୟର ଭାବବୋଧରେ ନିଜ କାନ୍ଧର ଝୁଲାମୁଣିକୁ ଭରିଦେଇ ନିଜର କ୍ଲାନ୍ତିହୀନ ଯାତ୍ରା ଜାରି ରଖିପାରିଲା । ସୁଦୂର ଗୁଣପୁରରୁ ଗୌରୀନଗର । ସାହିତ୍ୟର ସୁରଭିରେ ସୁରଭିତ ଏକ ସଂସାରର ଅଜର ଅମର ସନ୍ନ୍ୟାସୀ ଓ ସାଧକ ଆପଣ । ଘୋର ସଂସାରୀ ଓ ପ୍ରେମିକ ଆପଣ । ମୋର ଅନ୍ତିମ ପ୍ରଣାମ ଗ୍ରହଣ କରନ୍ତୁ ।

ନେତାଜୀ ନିବାସ

ପ୍ଲଟ୍ ୧୯୯, ଏକାମ୍ର ମାର୍ଗ, ୟୁନିଟ୍ ୬ ଭୁବନେଶ୍ୱର

## ଯୁଗ ସନ୍ଧିର ଯୋଗଜନ୍ମା- ଶିବରାମ

ଅଭୟ ସିଂହ

ଶ୍ୟାମ ବର୍ଣ୍ଣର ଦେହ ଓ ତଦ୍ରୂପ ଶ୍ମଶ୍ରୁର ଗହଳି ମଧ୍ୟରେ ଠାଏ ଠାଏ କାଶତଣ୍ଡୀର ଚଅଁର ପରି ଫେନିଳ ଦାଢ଼ି, ଗମ୍ଭୀର ଓଠ ଫାଙ୍କରୁ ଝରି ପଡୁଥିବା ନିଷ୍ପାମ, ନିବିଡ଼ ହସ ଓ ପ୍ରାଣତନ୍ତ୍ରୀକୁ ଛୁଇଁଲା ଭଳି କଣ୍ଠସ୍ୱର । ଲୋକ ଗହଳି ଭିତରେ ବାରି ହୋଇ ପଡୁଥିଲେ ସେହି ଅନ୍ତରଂଗ ମଣିଷ ଜଣକ । ତାଙ୍କ ଅକସ୍ମାତ୍ ଅବର୍ତ୍ତମାନରେ ତାଙ୍କ ସ୍ମୃତିଚାରଣ ପାଇଁ କଲମ ଧଇଲେ ତାଙ୍କ ମୂର୍ତ୍ତିମାନ ଆବେଗ, ନିଷପଟ ଆଶ୍ଳେଷର ସ୍ପର୍ଶ ଏତେ ତୀବ୍ର, ଗଭୀର ଲାଗେ ଯେ ସ୍ୱତଃ କଲମ ଅଟକି ଯାଏ ।

ଶିବରାମ ପାତ୍ର ବୃତ୍ତିରେ ଥିଲେ ଅଧ୍ୟାପକ, ମାତ୍ର ପ୍ରବୃତ୍ତିରେ ଥିଲେ ବନ୍ଧୁବତ୍ସଳ, ଦରଦୀ ଓଡ଼ିଆ ପ୍ରାଣ, ଉତ୍କଳ ସାହିତ୍ୟ-ସଂସ୍କୃତିର ନମ୍ର ସଂଗଠକ ଏବଂ ସର୍ବୋପରି ଜଣେ ସକାରାତ୍ମକ ପ୍ରେରଣାଦାତା । ଛୋଟ ହେଉ କି ବଡ଼ ହେଉ,ଯେଉଁ ସାହିତ୍ୟ-ସଂସ୍କୃତି ସଭାକୁ ଆମନ୍ତ୍ରିତ ହୋଇଥିବେ ସେଠାରେ ଅନ୍ୟ ଶ୍ରୋତାଙ୍କ ପରି ନିରାପଦ ଦୂରତ୍ୱରେ ନିଜକୁ ରଖି ସେ ଆସରର ଆବେଗ ଓ ପ୍ରାଣସତ୍ତା ସହିତ ନିଜକୁ ଏକାକାର କରି ନେବେ । ଅନ୍ତତଃ ପକ୍ଷେ ଉପସ୍ଥିତ ଅନ୍ୟମାନଙ୍କ ସହିତ ମନଖୋଲି ଦି'ପଦ ଆଳାପ କରିବେ । ଏ କ୍ଷେତ୍ରରେ ସେ ଅଧିକ ସେ ଅଧିକ ଉଦାର ଓ ଆତ୍ମ ଖୋଲା ହେଉଥିଲେ ତାଙ୍କଠାରୁ କନିଷ୍ଠ ସୃଜନଶୀଳ ପ୍ରତିଭାଙ୍କ ସହିତ ଏବଂ ପାଲଟି ଯାଉଥିଲେ ଉପନିଷଦୀୟ ଭାଷାରେ ଜଣେ ବାସ୍ତବ 'ସୁହୃଦ' ।

ଏ ଲେଖକର ମନେ ହୁଏ, ଶିବରାମ ପାତ୍ର ଥିଲେ ବାହାରକୁ ସଁବାଳୁଆ ପରି ଦିଶୁଥିବା ଜଣେ ଚିତ୍ରିତ ପ୍ରଜାପତି- ତାଙ୍କର ଥିଲା ଓଡ଼ିଶାର ସଂସ୍କୃତି ଓ ଐତିହ୍ୟକୁ ସନ୍ନିବଦ୍ଧ କରିବାର ତୃଷ୍ଣା, ଏହି ମହାର୍ଘ ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ପରି କାମ କରୁଥିବା ତରୁଣମାନଙ୍କ ପିଠିରେ ସେ ବୁଲାଇ ଦେଉଥିଲେ ଶ୍ରଦ୍ଧାମୟ ରାମାଙ୍ଗୁଳି ।

ସେହି ଶ୍ରଦ୍ଧାମୟ ବ୍ୟକ୍ତିତ୍ୱଙ୍କ ସହ ପରିଚିତ ଅନେକଦିନ ତଳେ ଘଟିଥିବା ସତ୍ତ୍ୱେ ତାହା ନିବିଡ଼, ଘନିଷ୍ଠ ହୋଇଥିଲା ତାଙ୍କ ଜୀବଦ୍ଦଶାର ଶେଷ କେତୋଟି ବର୍ଷରେ । ଥରେ ସେଇମିତି ଏକ ଆସରରେ ଆମେ ପାଖାପାଖି ବସିଥିଲୁ ଏବଂ ସେ ଅତ୍ୟନ୍ତ ଆତ୍ମୀୟତାର ସହିତ ପଚାରିଲେ ଏବେ କ'ଣ କିପରି ବଞ୍ଚୁଛି ଓ ସୃଜନଶୀଳ କାର୍ଯ୍ୟ କିପରି ଚାଲିଛି । ତାଙ୍କର ଅକୃତ୍ରିମ ଆନ୍ତରିକତା ମୋତେ ମୁଗ୍‌ଧ ବିହ୍ୱଳିତ କଲା । ଏହା ହେଉଛି 'ସଚିତ୍ର ବିଦାୟ'ର ସଂପାଦନା ଛାଡ଼ି ଭୁବନେଶ୍ୱରରେ ଅବସ୍ଥାନ କରିବାର ସମୟ । ଆହୁରି

ଆନ୍ତରିକତାର ସ୍ନିଗ୍ଧତମ ସ୍ପର୍ଶ ମିଳିଲା ଯେତେବେଳେ କେଉଁ କେଉଁ ସମ୍ବାଦପତ୍ରରେ, ବିଶେଷ ଭାବେ 'ଅନୁପମ ଭାରତ'ରେ ରାମକୃଷ୍ଣ, ମାଳତୀ ଚୌଧୁରୀ କି ବିବେକାନନ୍ଦଙ୍କ ସଂପର୍କିତ ପ୍ରକାଶିତ ମୋର ଲେଖାଟିଏ ପଢ଼ି ସେହିଦିନ ରାତିରେ ସେ ଗଦ୍‌ଗଦ୍ କଣ୍ଠରେ ବଧେଇ ଜଣେଇବେ- 'ଚମତ୍କାର ହୋଇଛି ଲେଖା, ଏସବୁକୁ ସଂକଳିତ କରି ପୁସ୍ତକଟିଏ ଶୀଘ୍ର ପ୍ରକାଶ କରନ୍ତୁ ।' ତାତ୍‌କାଳିକ ସ୍ୱାଗତିକାରେ ଅଟକି ରହିଯାଏ ନାହିଁ ତାଙ୍କର ଅନନ୍ୟ ସୁହୃଦ-ଉଷ୍ଣତା, କେବେ ରାସ୍ତାଘାଟରେ, ପୁରୁଣା ବସ୍‌ଷ୍ଟାଣ୍ଡର ପତ୍ରପତ୍ରିକା ଷ୍ଟଲ୍ ପାଖରେ ଦେଖା ହେଲେ ସେ ସେହି ଅପରୂପ ଉଷ୍ଣତା ସହ ଦୋହରାନ୍ତି ତାଙ୍କ ଅନୁରୋଧ, ବରଂ କହି ହେବ ଅଗ୍ରଜ ପ୍ରତିମ ଆକଟ । ଥରେ ମନେପଡୁଛି ଏମିତି ଏକ ଅବସରରେ ଆମେ ପୁରୁଣା ବସ୍‌ଷ୍ଟାଣ୍ଡରୁ ସିଧାଗଲୁ ରାମକୃଷ୍ଣ ମିଶନ୍ ଏବଂ ସେଠାରୁ ସେ ଆକଟକରି ଟାଣି ନେଲେ ତାଙ୍କ ଘରକୁ ରାତ୍ର ଭୋଜନ ପାଇଁ, ଯେହେତୁ ସେ ଜାଣନ୍ତି ମୁଁ ଏକୁଟିଆ ରହେ ଓ ହାତରେ ରୋଷେଇ କରି ଖାଏ । ଫେରିବା ବେଳକୁ ଦେଲେ କୌରସି ଏକ ଗ୍ରାମ୍ୟ ହାଟରୁ ସେ କିଣିକରି ଆଣିଥିବା ଜୈବିକ ପନିପରିବାରୁ କିଛି ଏବଂ ବଡ଼ ବୋତଲ ଭର୍ତ୍ତି କେଦାରଗୌରୀ ପାଣି । କହିଲେ, "ଏ ପାଣିରେ ଅନ୍ତତଃ ଭାତ ରାନ୍ଧି ଦେଖନ୍ତୁ ତାହାର କିପରି ଅନନ୍ୟ ଏବଂ ସ୍ୱାସ୍ଥ୍ୟ ଉପରେ ରହୁଛି ଅନୁକୂଳ ପ୍ରଭାବ ।" ବାସ୍ତବରେ ଲକ୍ଷ୍ୟ କଲି ତାଙ୍କ ବକ୍ତବ୍ୟ କେଡ଼େ ଯଥାର୍ଥ । ଏବଂ ଅନୁଭବ କଲି ସେଦିନ, ଶିବରାମବାବୁ ହେଉଛନ୍ତି ଅନ୍ୟମାନଙ୍କ ପରି ଉଚ୍ଚାରଣସର୍ବସ୍ୱ ଜଣେ ହାଲୁକା ବ୍ୟକ୍ତି ନୁହଁନ୍ତି, ଆଚରଣସିଦ୍ଧ ଜଣେ କର୍ମଯୋଗୀ ।

ସେ ଏ ପୃଥିବୀରୁ ବିଦାୟ ନେଇ ଯିବାର ବର୍ଷେ ଦୁଇବର୍ଷ ପୂର୍ବରୁ ଆମ ସଂପର୍କର ଆସ୍ତରଣ ଅଧିକ ବହଳ ଓ ସ୍ନିଗ୍ଧ ହୋଇ ଯାଇଥିଲା । ଅନେକ ନିଃସ୍ୱାର୍ଥପର ସମାଜକର୍ମୀ ଓ ସଂଗଠକଙ୍କୁ ସେ ନିଃସର୍ତ୍ତ ନିଷ୍କାମ ଶ୍ରଦ୍ଧାରେ ଘରକୁ ନେଇ ଖୁଆଇବାର ଆଗ୍ରହ ରଖୁଥିଲେ । ଥରେ ଦେଖିଛି, ବିଶିଷ୍ଟ ସମାଜକର୍ମୀ ଏବଂ 'ଓଡ଼ିଶା ଜାଗୃତି ପ୍ରବାହ'ର ପ୍ରତିଷ୍ଠାତା ଶ୍ରୀ ସୁରସିଂହ ପଟ୍ଟନାୟକଙ୍କୁ 'କୃଷକ ସମାଜ'ଠାରେ ଅନୁଷ୍ଠିତ ଏକ ସଭାସ୍ଥଳରୁ ନେଇ ଘରକୁ ଚାଲିଗଲେ । ସେଭଳି ଜଣେ ବ୍ୟକ୍ତିଙ୍କୁ ନେଇ ଘରେ ଆତିଥ୍ୟ ଦେବାର ଆଗ୍ରହ କହେ ଶିବରାମବାବୁଙ୍କ ହୃଦୟର ଗଭୀରତା ଓ ବ୍ୟାପକତା । ତାଙ୍କ ଛଳ ଛଳ ହୃଦୟର ଭାଷା ପଢ଼ିହୁଏ ତାଙ୍କ ଉଜ୍ଜ୍ୱଳ ଦୁଇଟି ଆଖିରୁ ଏବଂ ଆବେଗ ଘନ ଉଚ୍ଚାରଣରୁ ।

ସେହି ସୁରସିଂହ ପଟ୍ଟନାୟକଙ୍କ ସହିତ ମିଶି 'ଓଡ଼ିଶା ନାଗରିକ ପରିଷଦ' ପକ୍ଷରୁ ମିଳିତ ଭାବେ ପାଳନ କରୁଥାଉ ଆମେ ଓଡ଼ିଶା ସହିତ ସମ୍ବଲପୁର ଓ ପଶ୍ଚିମାଞ୍ଚଳର ସାତଟି ଗଡ଼ଜାତ ରାଜ୍ୟ ମିଶ୍ରଣର ଶତାବ୍ଦୀ ସମାରୋହ । ଆମର ସେଦିନର ଅତିଥି ଥା'ନ୍ତି ପୂର୍ବତନ ଲୋକପାଳ ଜଷ୍ଟିସ୍ କୃଷ୍ଣପ୍ରସାଦ ମହାପାତ୍ର ଓ ବିଶିଷ୍ଟ ଅଭିନେତା ତଥା ଶିକ୍ଷାବିତ୍ ଶ୍ରୀ ଶରତ ପୂଜାରୀ । ଏହି ଉତ୍କଳ ରାଜ୍ୟ ଗଠନ ଓ ଭାଷା ସଂଗ୍ରାମର ଆଠଜଣ ମହାରଥୀଙ୍କୁ ଶ୍ରଦ୍ଧାସୁମନ ଓ ଦୀପଦାନ ବେଳେ ଶ୍ରୋତା ଗହଳିରୁ ଉଠି ଆସି ଶିବରାମବାବୁ ଏପରି ଅନ୍ତରଙ୍ଗ ସହାୟତା ପ୍ରଦାନ କଲେ ଯେ ମୁଁ କେବଳ ବିସ୍ମିତ ହତବାକ୍ ହୋଇଗଲି ନାହିଁ, ତାଙ୍କ ବିଶାଳ, ସମ୍ବେଦନଶୀଳ ବ୍ୟକ୍ତିତ୍ୱର ଏକ ନୂତନ ଦିଗନ୍ତ ମୋ ଆଗରେ ଉନ୍ମୋଚିତ ହୋଇଗଲା । ତାଙ୍କ ପ୍ରତି ମୋର ସମ୍ମାନ ବହୁଗୁଣିତ ହୋଇଗଲା । ସେଠାରେ ଅନ୍ୟ ଅନେକ ଅଧ୍ୟାପକ, ବୁଦ୍ଧିଜୀବୀ ଉପସ୍ଥିତ ଥିଲେ ବି ମଞ୍ଚ ପରିଚାଳନାରେ ମୁଁ ଏକାକୀ ସମର୍ଥ

ହୋଇପାରୁନାହିଁ ବୋଲି ଅବସ୍ଥାକୁ ଅନୁଭବ କରିପାରିଲେ ଏବଂ ସହାୟତାର କରତଳ ପ୍ରସାରି ଦେଲେ ଏକମାତ୍ର ଶିବରାମ ପାତ୍ର । ସେଇଥିପାଇଁ ଆଉ ଥରେ ଦୋହରାଇବାକୁ ପଡୁଛି ବୁଦ୍ଧିଜିବୀ-ସଁବାଳୁଆରୁ ରୂପାନ୍ତରିତ ହୋଇଥିବା ସେ ଏକମାତ୍ର ଚିନ୍ତିତ ପ୍ରଜାପତି । କୌଣସି ପ୍ରାପ୍ତିର ପ୍ରତ୍ୟାଶା ତାଙ୍କର ନଥିଲା, କେବଳ ଓଡ଼ିଶାର ସଂସ୍କୃତିକୁ ପ୍ରସାରିତ, ପ୍ରତିଷ୍ଠିତ କରିବାକୁ ରହିଥିଲା ତୀବ୍ର, ଶାଣିତ, ସୁରଭିତ ଅଭୀପ୍ସା ।

ହଠାତ୍ ଦିନେ ଧୂ ଧୂ ଖରାବେଳେ ଜଣେ ଅଧ୍ୟାପକଙ୍କ ସହିତ ଆସି ପହଞ୍ଚିଲେ ଶିବରାମ ବାବୁ । ଅଧ୍ୟାପକ ଜଣକ ଏକାମ୍ର କଲେଜରେ ସାମାଜିକ ସେବା ଗୋଷ୍ଠୀ (ଏସ୍.ଏସ୍.ଏସ୍) ଦାୟିତ୍ୱରେ ଥାଆନ୍ତି । ଉଦ୍ଦେଶ୍ୟ ହେଉଛି ଏକାମ୍ର କଲେଜରେ ଏକ ଭେଷଜୀୟ ଉଦ୍ୟାନ ପ୍ରତିଷ୍ଠା । ଏ ଲେଖକ କିଛି ବର୍ଷ ପାଇଁ ଏକ ସଂକଳ୍ପ ଗ୍ରହଣ କରିଥିଲା ଯେ ଯେଉଁଠାରେ ତାକୁ ବକ୍ତବ୍ୟ ପ୍ରଦାନ ପାଇଁ ଆମନ୍ତ୍ରଣ କରାଯିବ, ସେଠାରେ ଗୋଟିଏ ଆୟୁର୍ବେଦୀୟ ବା ଔଷଧୀୟ ଉଦ୍ୟାନ ପ୍ରତିଷ୍ଠା ହେଲେ ଯାଇଁ ସେ ତାହା ନିର୍ବାହ କରିବ ଏବଂ ଭେଷଜୀୟ ଉଦ୍ଭିଦଗୁଡ଼ିକ ଏ ଲେଖକ ବିନା ମୂଲ୍ୟରେ ଯୋଗାଇ ଦେଇଥାଏ । ଅଘୋଷିତ ଏହି ସଂକଳ୍ପ କଥା ଜାଣିଥିଲେ ଶିବରାମ ବାବୁ । ସେଦିନ ମଧ୍ୟାହ୍ନରେ ସେ ଦୁଇ ଅଧ୍ୟାପକ ତାଙ୍କ ଗାଡ଼ିରେ ନେଇଗଲେ ପ୍ରତିଷ୍ଠା ପାଇଁ ବୃକ୍ଷରାଜି । ଶିବରାମବାବୁଙ୍କ ବିଶେଷ ଆଗ୍ରହ ଥାଏ ଶାଳଗଛ ଓ ବେଲଗଛରେ । ଆଗକୁ ଗ୍ରୀଷ୍ମଋତୁ ଆସୁଥିବାରୁ କିଛି କୁଣ୍ଡାର ସହିତ ଏ ଲେଖକ ମୂଲ୍ୟବାନ ଗଛଗୁଡ଼ିକ ସେମାନଙ୍କ ହାତକୁ ଟେକି ଦେଲା- ଖାସ୍ ଶିବରାମ ବାବୁଙ୍କ ଅକୃପଣ ଶ୍ରଦ୍ଧା ଓ ଗଛ ବଞ୍ଚାଇ ରଖିବାର ପ୍ରତିଶ୍ରୁତି ପାଇଁ । ଅବଶେଷରେ ଏକାମ୍ର କଲେଜରେ ପହଞ୍ଚିଲି 'ସମାଜ, ପରିବେଶ ଓ ଆଧ୍ୟାତ୍ମିକତା' ଶୀର୍ଷକ ବକ୍ତବ୍ୟ ଦେବାକୁ ଏବଂ ବିକୃତ ସାମାଜିକ ପରିସ୍ଥିତି, ସଂସ୍କୃତି ଓ ଭ୍ରଷ୍ଟ ପ୍ରଶାସନ ଉପରେ କିଛି କଟୁ ମନ୍ତବ୍ୟ ସତ୍ତ୍ୱେ ସେମାନେ ସହ୍ୟ କଲେ ମୋର ଶାଣିତ ସ୍ପଷ୍ଟ ବକ୍ତବ୍ୟ । ଶିବରାମବାବୁ ସେ କଲେଜରେ ଉପାଧ୍ୟକ୍ଷ ଥିବାରୁ ମୋର ଏପରି ମନ୍ତବ୍ୟ ପାଇଁ ଜାଣିପାରୁଥିଲି ସେ କିଛି ଭର୍ତ୍ସନା ହଜମ କରିଥିବେ । ତଥାପି ନିର୍ଲିପ୍ତ ଅବିଚଳିତ ରହି ତାଙ୍କ ଅଭିଭାଷଣରେ ସେ ବରଂ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ମୋର ଉଚ୍ଚାରିତ କିଛି ବୈଦିକ ମନ୍ତ୍ର, ଉପସ୍ଥାପିତ ସାଂପ୍ରତିକ ତଥ୍ୟାବଳୀ ଓ ସାମଗ୍ରିକ ପରିବେଶ ସଂପର୍କିତ ଆଲୋକପାତ । ସେଦିନ ବକ୍ତବ୍ୟ ପରେ ସେ ହିଁ ଦାୟିତ୍ୱ ନେଇଥିଲେ ତାଙ୍କ ଘରେ ମଧ୍ୟାହ୍ନ ଭୋଜନ ପରଷିବାର ଏବଂ ଅତ୍ୟନ୍ତ ଚମତ୍କାର ଥିଲା ଜୈବିକ ପନିପରିବା ସହ ଓଡ଼ିଆ ଘରର ରାନ୍ଧଣା । ଆଜି ବି ସେ ସ୍ୱାଦ ମନେ ପଡ଼େ- ମଞ୍ଜା ରାଇ, କାନ୍ଦୁଲ ଡାଲି ଓ ଅପୂର୍ବ କଖାରୁ ଫୁଲ ବରା, ଶାଗ ପ୍ରଭୃତିର । ସେ ନିଜେ ଯେପରି ଖାଦ୍ୟପ୍ରିୟ, ସେହିପରି ଅନ୍ୟକୁ ଖୁଆଇବାରେ ଥାଏ ତାଙ୍କର ପରମ ପରିତୃପ୍ତି । ଜଣେ ମହତର ମଣିଷ ପାଖରୁ ହିଁ ଏପରି ଚମତ୍କାର ଆଚରଣର ସୁରଭି ମିଳିପାରେ ।

ସେଦିନ ସେ ତାଙ୍କର ପ୍ରଶସ୍ତ ବଗିଚାଟି ବୁଲାଇ ଦେଖାଇଥିଲେ । ତାଙ୍କ ବଗିଚାରେ ଥିବା ଔଷଧୀୟ ବୃକ୍ଷଲତାରୁ ଅଧିକାଂଶ ମୋ ବଗିଚାରେ ମଧ୍ୟ ରହିଛି । ଗୋଟିଏ ଗଛ ନଥିଲା- 'ହାଡ଼ଭଙ୍ଗା' । ସେଥିରୁ ସେ ଗୋଟିଏ ଦେଲେ ଏବଂ ଆଜି ଯାଏ ତାହା ମୋ ବଗିଚାରେ ବଞ୍ଚି ରହିଛି, ତାଙ୍କ ଅପୂର୍ବ ସ୍ମୃତିକୁ ବଞ୍ଚାଇ ରଖିଛି । ଯେଉଁଦିନ ସେ ଆମମାନଙ୍କ ଗହଣରୁ ଚାଲିଗଲେ, ଅନୁଭବ କଲି ଛାତି ତଳେ ଏକ ବେଦନା ଓ ଶୂନ୍ୟତା । ଚାଲିଲି

ତାଙ୍କ ଗୌରୀନଗର ଘର । ବହୁ ଚିହ୍ନା ଅଚିହ୍ନା ଲୋକଙ୍କ ଗହଳି- ସତେଜ ପ୍ରାୟ ପ୍ରଶାନ୍ତ ମୁଖମଣ୍ଡଳରେ ଶୋଇଛନ୍ତି ଏହି ସନ୍ନ୍ୟାସୀ ପ୍ରାୟ ବ୍ୟକ୍ତିତ୍ୱ । ଛାତି ଉପରେ ତାଙ୍କର ବିଛେଇଲି ସଂଗରେ ନେଇଥିବା କୁସୁମ ଏବଂ ଜାଳିଲି ଧୂପବତୀ । ଅଖଣ୍ଡ ଗୀତା ପାଠ ଚାଲିଥାଏ । ସେ ଉଚ୍ଚାରଣ ପାଖରୁ କିଛିଟା ଦୂରେଇ ଆସି ତାଙ୍କ ମର ଦେହ ଆଡ଼େ ଚାହିଁ ଗାଇବାକୁ ଇଚ୍ଛା ହେଲା ଈଶା ଉପନିଷଦ । ନିରବରେ ଗାଇଲି । ତାହା ହିଁ ଥିଲା ମୋର ତାଙ୍କ ପ୍ରତି ଶେଷ କୃତ୍ୟ । ଘରେ ପହଞ୍ଚି ସେ ଦେଇଥିବା 'ହାଡ଼ଭଙ୍ଗା' ଗଛ ଉପରେ ସିଞ୍ଚିଲି ଜଳ- ମନେ ହେଲା ଶିବରାମଙ୍କୁ ନୁହେଁ ସ୍ୱୟଂ ଶିବଙ୍କୁ ଗାଧୋଇ ଦେଉଛି ଶ୍ରଦ୍ଧା, ସମ୍ମାନ, ସମ୍ମୋହନର ପବିତ୍ର ଜଳରେ, ସବୁଦିନେ ସାହିତ୍ୟ-ସଂସ୍କୃତିର ସମ୍ମୋହିତ ସତ୍ତା ଶିବରାମ ହେଉଛନ୍ତି ଖାଣ୍ଟି ଓଡ଼ିଆର ଶ୍ରଦ୍ଧା ସୁଜଳରେ ସ୍ନାନାୟିତ ହେବାକୁ ଯୋଗ୍ୟ - ସେ ଯୁଗସନ୍ଧିର ଯୋଗଜନ୍ମା ସୁପୁରୁଷ ।

୧୩୭୪, ଗଣ୍ଡମୁଣ୍ଡା, ଭୁବନେଶ୍ୱର-୩୦

## ନିବିଡ଼ ସାରସ୍ୱତ ସମ୍ପର୍କର ସେତୁ- ଶିବରାମ

ସୁରସିଂହ ପଟ୍ଟନାୟକ

ଭୁବନେଶ୍ୱରର ବର୍ଣ୍ଣାଢ଼୍ୟ ସାଂସ୍କୃତିକ ପରିସରରେ ଦକ୍ଷିଣ ଓଡ଼ିଶାର, ବିଶେଷତଃ ଗଞ୍ଜାମ ପାଇଁ ନିବିଡ଼ ପ୍ରାଣ ଉଚ୍ଛଳ ସାରସ୍ୱତ ସମ୍ପର୍କର ଅନବଦ୍ୟ ସେତୁ ଥିଲେ ଅପାସୋରା ଅଧ୍ୟାପକ ଶିବରାମ ପାତ୍ର । ପ୍ରଶାସନିକ କାର୍ଯ୍ୟଭାରରୁ, ବହୁ ମହାବିଦ୍ୟାଳୟର ସାହିତ୍ୟ ଅଧ୍ୟାପକ ପଦବୀରୁ ଉତ୍ତରଣ ପର୍ଯ୍ୟାୟରେ ସେ ଉଚ୍ଚକିତ ଆଉ ବିଚ୍ଛୁରିତ କରୁଥିଲେ ସାହିତ୍ୟିକ ରାଗାନୁସାରେ ପ୍ରାଣଛୁଆଁ ଉତ୍ତରଳ ଆବେଗ ଆଉ ଆବେଶ । କଳିଙ୍ଗ ସାହିତ୍ୟ ସମାଜଠାରୁ ଆରମ୍ଭ କରି ଗୁଣପୁର, ନବରଙ୍ଗପୁର ଆଉ ଶେଷରେ ଭୁବନେଶ୍ୱରର କିଛି ସାହିତ୍ୟିକ ଅନୁଷ୍ଠାନର ଉନ୍ମେଷ, ପ୍ରତିଷ୍ଠା ଆଉ ଅଭିବୃଦ୍ଧି ସ୍ତରରେ ସେ ପ୍ରମୁଖ ନିର୍ଣ୍ଣାୟକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ତାହାଙ୍କର ନିଜସ୍ୱ ରଚନାବଳୀ ସହ ସେ ବହୁ ଖ୍ୟାତିପ୍ରାପ୍ତ କାଳଜୟୀ ସ୍ରଷ୍ଟାଙ୍କର ଅନବଦ୍ୟଶୈଳୀ, ଆପ୍ତ ଉଦ୍ଧୃତି ଆଉ ଅନୁପମ ଶବ୍ଦ ସମ୍ଭାରକୁ ଘେନି ଯେଉଁ ଅନନ୍ୟ ସଙ୍କଳନ ସବୁ କରି ଯାଇଛନ୍ତି, ତାହା ମଧ୍ୟରେ ପ୍ରଥିତଯଶା ସୁରେନ୍ଦ୍ର ମହାନ୍ତିଙ୍କ ଲେଖାବଳୀର ଚୟନ ଅନ୍ୟତମ । ସେ ଏବେ ନିମଗ୍ନ ରହିଥିଲେ ବ୍ୟାସକବି ଫକୀରମୋହନଙ୍କ ସୁବିଶାଳ ରଚନାବଳୀରୁ ଶୌକ୍ତିକ ମୁକ୍ତାବଳୀର ଆହରଣରେ ।

ଭୁବନେଶ୍ୱରର ସାହିତ୍ୟିକ ପରିବେଶରେ ସ୍ୱୟଂ ଶିବରାମ ପାତ୍ର, ତାହାଙ୍କର ପରିବାରର ସଦସ୍ୟଙ୍କୁ ଘେନି ଥିଲେ ସ୍ୱୟଂସମ୍ପୂର୍ଣ୍ଣ, ସୁବିନ୍ୟସ୍ତ ଏକ ମହାନ ସାଂସ୍କୃତିକ ଅନୁଷ୍ଠାନ । ଅଧ୍ୟାପିକା ପତ୍ନୀ, ସାହିତ୍ୟ ଅଧ୍ୟାପିକା କନ୍ୟା ଆଉ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଜାମାତାଙ୍କୁ ଘେନି ଅଧ୍ୟାପକ ପାତ୍ର ଯେଉଁଠି ପହଞ୍ଚି ଯାଉଥିଲେ, ଅନୁଷ୍ଠାନଟି ପୂର୍ଣ୍ଣତାର ଚରମ ଶିଖରରେ ପହଞ୍ଚି ଯାଉଥିଲା । ସଭାମଞ୍ଚର ଅପରୂପ କଳାପ୍ରାଣ ସାଜସଜ୍ଜା, ପ୍ରାକ୍ ସ୍ୱାଗତ ଭାଷଣ, ଭିତ୍ତି ପ୍ରବନ୍ଧର ଉପସ୍ଥାପନା, ଧନ୍ୟବାଦ ଅର୍ପଣ ପରେ ସାଂସ୍କୃତିକ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ଅଙ୍ଗାଙ୍ଗୀ ରୂପରେ ଜଡ଼ିତ ରହୁଥିଲେ ଅଧ୍ୟାପକ ପାତ୍ରଙ୍କ ପରିବାର ।

ଭୁବନେଶ୍ୱରରେ ବିଗତ କିଛିମାସର ସାଂସ୍କୃତିକ ଅନୁଷ୍ଠାନ ଯେପରିକି ଦିନନାଥ ପାଠୀଙ୍କର 'ଚିତ୍ରଚତୁର୍ଥୀ' ଉପନ୍ୟାସ ମାନଙ୍କର ପର୍ଯ୍ୟାଲୋଚନା ସମ୍ଭାର, ଉମାଚରଣ ଓ ବାଞ୍ଛାନିଧିଙ୍କର ଶତବାର୍ଷିକୀ ଉତ୍ସବ, ଉପେନ୍ଦ୍ରଭଞ୍ଜ ଫାଉଣ୍ଡେସନ୍ ସମାରୋହ, ନିଜସ୍ୱ ସାରସ୍ୱତ ପ୍ରକାଶନର 'ସରସ୍ୱତୀ' ଶୁଭାରମ୍ଭ ଅବା ଓଡ଼ିଶା ଜାଗୃତି ପ୍ରବାହର 'ନବ ଓଡ଼ିଶାର ଶତାବ୍ଦୀ ସମାରୋହ'ର ସମ୍ମେଳନରେ ପରିବାର ସହ ଅଧ୍ୟାପକ ପାତ୍ରଙ୍କର ସୌହାର୍ଦ୍ଦ୍ୟପୂର୍ଣ୍ଣ ଅନ୍ତରଙ୍ଗ ଯୋଗଦାନ ସମଗ୍ର ଉତ୍ସବକୁ ରସାଣିତ ଆଉ ଅପୂର୍ବ ଉତ୍କର୍ଷତାରେ ବିଭାମଣ୍ଡିତ କରିଥିଲା । ଏହିଭଳି ଆତ୍ମୀୟତା, ପ୍ରାଣଭୁଲା, ତଲ୍ଲୀନତା ଆଉ ଅନ୍ତରାତ୍ମାର ନିବିଡ଼ ଆଶ୍ଳେଷ ଅଧ୍ୟାପକ ପାତ୍ରଙ୍କ ଛଡ଼ା ଆଉ କାହାଠାରେ କଣ ସହଜରେ ଉପଲବ୍ଧ ହୋଇପାରେ ? ବିରଳତାରେ ବିରଳ, ସଘନ ପ୍ରାଣ ସଞ୍ଚାରୀ, ରସସିକ୍ତ ଅନୁଭବ ଆଉ କାହା ସାନିଧ୍ୟରେ କ'ଣ ମିଳିପାରେ । ତେଣୁ ହେ ବନ୍ଧୁ ! ବିଦାୟ ଲଗ୍ନରେ ଏହି ଅନ୍ତର ଗଣତି ଘେନା କର ।

ବଡୀଘର ଛକ, ଗୋପାଳପୁର, ଗଞ୍ଜାମ

## ମୋ ସ୍ମୃତିରେ ଶିବରାମ ସାର୍

ଶ୍ରୀ ନରହରିଜାନି

ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀଙ୍କ ଘରେ, ମୋ ପରିଚୟ ଦେଲା ଉତ୍ତାରୁ ମୋତେ କୁଣ୍ଢେଇ ଦେଇ ନିଜର କରିଥିଲେ, ପୁଣି ତାଙ୍କ ଘରକୁ ନେଇ ତାଙ୍କ ପରିବାର ସହ ପରିଚୟ କରାଇଲେ ।

ନବରଂଗପୁର ଜିଲ୍ଲାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଯେଉଁମାନେ ଦେଶ ମାତୃକାର ସେବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଛନ୍ତି ସେଭଳି ସୁଯୋଗ୍ୟ ସନ୍ତାନମାନଙ୍କୁ ସେ ସମ୍ମାନ ନଜଣାଇ ରହିପାରୁନଥିଲେ, ସେମାନଙ୍କ ଭିତରୁ ଶ୍ରୀଯୁକ୍ତ ମହମ୍ମଦବାଜୀ, ଶ୍ରୀଯୁକ୍ତ ଜଗନ୍ନାଥ ତ୍ରିପାଠୀ, ସୀମାଞ୍ଚଳ ବେହେରା, ରବିସିଂ ମାଝୀ, ଏବଂ ଜିଲ୍ଲାର ସଂଗ୍ରାମରେ ସହିଦ ହୋଇଥିବା ବଗା ପୂଜାରୀଙ୍କ ଶ୍ରାଦ୍ଧ ସଭାରେ ଯୋଗ ଦେଇ ସହିଦ୍ ମାନଙ୍କର ଜୀବନରେ ଘଟିଥିବା ବିଶେଷ ଘଟଣାକୁ ସାହିତ୍ୟ ଏବଂ କବିତା ମାଧ୍ୟମରେ ଲୋକମାନଙ୍କୁ ଶୁଣାଉଥିଲେ ।

ସ୍ୱଦେଶୀ ବସ୍ତୁ ବ୍ୟବହାର କରୁଥିଲେ ଏବଂ ଖଦୀ ପିନ୍ଧୁଥିଲେ । ଆମ ନବରଂଗପୁର ଜିଲ୍ଲାରେ ଆଦିବାସୀ ସଂସ୍କୃତିରେ ପୂଜା ପାଉଥିବା ଲାଠି, କଳଶ, ଗଡୁ, ହାତୀ, ଘୋଡ଼ା, ଟିଙ୍ଗ୍ ଗଲଗଲିଆ, କଂସା, ପିତଳକୁ ତରଳେଇ ତିଆରି କରୁଥିବା ବିଜାପୁରର ରାମଚନ୍ଦ୍ର ହରିଜନଙ୍କ କଳା ଦ୍ୱାରା ପ୍ରଭାବିତ ହୋଇ, ତାଙ୍କୁ ଜିଲ୍ଲା ମହକୁମାକୁ ନେଇ ତାଙ୍କ କଳାକୁ ଉଜ୍ଜୀବିତ କରାଇ ପାରିଥିଲେ ଏବଂ ଜିଲ୍ଲାପାଳଙ୍କ ଦ୍ୱାରା ପୁରସ୍କୃତ କରାଇଥିଲେ ।

ଏହି ଜିଲ୍ଲାର ବହୁ ପରିଚିତ ନାଟଗୁରୁ ଚଇତନ ବିଶୋଇଙ୍କ ସହ ଘନିଷ୍ଠ ସଂପର୍କ ଥିଲା ତାଙ୍କଠାରୁ ଦେଶିଆ ଭାଷାରେ ଲେଖିଥିବା ଗୀତିନାଟ୍ୟ କବିତାକୁ ଆଣି ଗବେଷଣା କରୁଥିଲେ । ସମାଜସେବୀମାନଙ୍କୁ ସେ ତାଙ୍କ ପରିବାରର ବୋଲି ଭାବୁଥିଲେ । ସମାଜ ସେବୀ ଶ୍ରୀମତୀ ନୟନା ମାଝୀଙ୍କ ସହ ତାଙ୍କ ସୁସମ୍ପର୍କ ଥିଲା ।

ମୁଁ ଯେତେବେଳେ ବିଜାପୁର ଆଶ୍ରମରେ ଆଦିବାସୀ ଝିଅମାନଙ୍କୁ ନେଇ ବିଜାପୁର ଆଶ୍ରମରେ କନ୍ୟା ଆଶ୍ରମ ଚଲାଇଥିଲି, ସେ ମଝିରେ ମଝିରେ ଆସି ମୋତେ ଆଗକୁ

କାମ କରିବା ପାଇଁ ଉତ୍ସାହିତ କରାଉଥିଲେ । ଝିଅମାନଙ୍କ ପାଠ ପଢ଼ିବାପାଇଁ, ବହି, ଖାତା, ପେନ୍‌ସିଲ୍ କଲମ୍ ଇତ୍ୟାଦି ଯୋଗାଇ ଦେଉଥିଲେ ।

ସେ ଉଚ୍ଚ ଶିକ୍ଷିତ ପାଇ ମଧ୍ୟ ସାମାନ୍ୟତମ ଗରିବ ଲୋକ ଅଶିକ୍ଷିତଙ୍କୁ ଦେଖିଲେ ତାଙ୍କ ସହ ଶ୍ରଦ୍ଧାରେ କଥାବାର୍ତ୍ତା କରୁଥିଲେ । ଆବଶ୍ୟକ ସ୍ଥଳେ ସାହାଯ୍ୟ ମଧ୍ୟ କରୁଥିଲେ ।

ତାଙ୍କ ଘରେ ଫୁଟୁଥିବା ନିଶିପଦ୍ମ ଫୁଲକୁ ସହରର ବହୁ ଲୋକଙ୍କୁ ରାତିରେ ଡାକି ଦେଖାଇ ଆନନ୍ଦ ପାଉଥିଲେ ।

ଗ୍ରାମ. କୋଇଲାରୀ, ପୋ. ଜୁନାପାଣି
ଭାୟା. ଡାବୁଗାଁ,ଜିଲ୍ଲା. ନବରଙ୍ଗପୁର, ପିନ୍. ୭୬୪୦୭୨

## ଶିବରାମଙ୍କର ସାରସ୍ୱତ ବିଳାସ

ଦାଶରଥି ଦାସ

ଓଡ଼ିଶାରେ ଗୁଣୀ ବ୍ୟକ୍ତିଙ୍କର ଅଭାବ ନାହିଁ କିନ୍ତୁ ଗୁଣଗ୍ରାହୀ ଦେଖିବାକୁ ମିଳନ୍ତି କ୍ୱଚିତ୍ । ସାହିତ୍ୟକ୍ଷେତ୍ରରେ ରସ ସୃଷ୍ଟିକ୍ଷମ ଲେଖକଙ୍କର ଅଭାବ ନାହିଁ, କିନ୍ତୁ ରସଗ୍ରାହୀ ପାଠକଙ୍କ ସଂଖ୍ୟା ସ୍ୱଳ୍ପ ନିଶ୍ଚୟ । ସେହି ସବୁ ବିରଳ ବ୍ୟକ୍ତିଙ୍କ ମଧ୍ୟରେ ଓଡ଼ିଆ ଅଧ୍ୟାପକ ଶିବରାମ ପାତ୍ର ଅନ୍ୟତମ- ଉଦାର, ମହତ୍, ଗୁଣଗ୍ରାହୀ, ରସଗ୍ରାହୀ ଲୋକ ଥିଲେ ସେ- ଥିଲେ ବି ବହୁ ଲେଖକଙ୍କର ପକ୍ଷପାତୀ ପାଠକ, ବହୁ ଗୁଣୀ ବ୍ୟକ୍ତିଙ୍କର ମୁଗ୍ଧ ଉପାସକ । ସେ ଉପସ୍ଥିତ ଥିଲେ, ଭଲ ଲେଖକ ଓ ଭଲ ମଣିଷଙ୍କର ନିନ୍ଦା ଅନୁପସ୍ଥିତ ହେବାକୁ ବାଧ୍ୟ ହେଉଥିଲା । ସେ ଚାଲିଗଲେ ତାଙ୍କ ସ୍ଥାନ ସେମିତି ଶୂନ୍ୟ ପଡ଼ିଛି । ତାଙ୍କର ସ୍ୱଭାଷା ସାହିତ୍ୟ ପ୍ରୀତି ଅସାଧାରଣ । ଭଲ ବହିଟିଏ ପ୍ରକାଶିତ ହେଲେ ସେ କେବଳ ତାକୁ ଖୋଜି ନିଜେ ପଢ଼ନ୍ତି ନାହିଁ, ତାଙ୍କ ସ୍ତ୍ରୀପିଲାଙ୍କୁ ପଢ଼ାନ୍ତି, ଆଉ ଚାରିପାଖର ପାଠକମାନଙ୍କୁ ପଢ଼ିବାକୁ ପ୍ରବର୍ତ୍ତାଉଥାନ୍ତି । ସେଦିନ ମୋର 'କବିସୂର୍ଯ୍ୟ କାବ୍ୟବିଭା' ପ୍ରକାଶିତ ହୋଇଥାଏ । ସେ ତାହା କିଣି ପଢ଼ିଲେ ଓ ଗୁଡ଼ିଏ Inland letter କିଣି ସେଥିରେ ବହିଟିର ପ୍ରଶଂସା ଛପାଇ ବହୁ ଲୋକଙ୍କୁ ଚିଠି ଲେଖିଲେ । କେବଳ ମୋ ପାଇଁ ସେ କାମ କରିନାହାନ୍ତି, କରିଛନ୍ତି ବରିଷ୍ଠ ସାହିତ୍ୟିକ ଚନ୍ଦ୍ରଶେଖର ରଥଙ୍କ 'ଯନ୍ତ୍ରାରୂଢ଼' ପାଇଁ । ଯେଉଁଠି ଆମ ସାହିତ୍ୟିକମାନେ କୌଣସି ସମକାଳୀନ ଲେଖକଙ୍କୁ ମୁହଁରେ ସୁଦ୍ଧା ପ୍ରଶଂସା କରିବାକୁ କୁଣ୍ଠିତ । ସେଠାରେ ସେ ହାତରୁ ପଇସା ଖର୍ଚ୍ଚ କରି ବହିର ଲେଖକଙ୍କ ପ୍ରଶଂସା ଛାପି ପ୍ରଚାର କରିବା ଆଦୌ ସହଜ କି ସାଧାରଣ କଥା ନୁହେଁ । ଏ ଲେଖକ ବରଂ ବଡ଼ ଅକୃତଜ୍ଞ, ତାଙ୍କୁ କେବେ ଖଣ୍ଡେ ବହି ଉପହାର ସ୍ୱରୂପ ଦେଇ ନାହିଁ, ଅଥଚ ସେ ତାଙ୍କର 'ସୁରେନ୍ଦ୍ର ବିଚାର ମଞ୍ଜୁଷା' ମୋତେ ଉପହାର ଦେଇଛନ୍ତି ଓ ମୋର ଅଧିକାଂଶ ବହିର ପ୍ରଶଂସା ଗାଇ ବୁଲିଛନ୍ତି । ଓଡ଼ିଆ ଲେଖକମାନଙ୍କର ପ୍ରଶଂସା ଗାଇବା ଥିଲା, ତାଙ୍କର ସାରସ୍ୱତ ବିଳାସ ।

ଔପନ୍ୟାସିକ ଦିନନାଥ ପାଠୀଙ୍କର 'ଶ୍ଳୋକଛନ୍ଦ'ର ଲୋକାର୍ପଣ ଉତ୍ସବରେ ନାନ୍ଦୀପାଠ କରିଥିଲେ, ବିମଳ ଆନଂଦ ଉତ୍ସାହଭରା ଭାଷା, ସ୍ପଷ୍ଟ ଶାଣିତ କଣ୍ଠସ୍ୱର, କହିବାର

ନାଟକୀୟ ଭଂଗୀ ଓ ଉପସ୍ଥାପ୍ୟ ବିଷୟର ସାରବତ୍ତା ସବୁ ମିଶି ମନୋଜ୍ଞ ପରିବେଶଟିକୁ ସାରସ୍ୱତ ମହିମାରେ ଭରି ଦେଇଥିଲା । ତାଙ୍କୁ ସେଦିନ ଶୁଣିବାର ବିରଳ ସୌଭାଗ୍ୟ ଲାଭ କରି ଏହି ଲେଖକ କୃତାର୍ଥ ହୋଇଥିଲା । ଏବେ ବି ସେହିଦିନର ତାଙ୍କ ମୁଖ ଓ ସ୍ୱର ତାହା ପାଇଁ ସେମିତି ଜୀବନ୍ତ ଓ ସତେଜ ରହିଛି ।

୨୦୦୪ର ଡିସେମ୍ବର ମାସରେ ମୁଁ ଦୁର୍ଘଟଣାଗ୍ରସ୍ତ ହୋଇ ପଡ଼ିଥାଏ । ଶିବରାମ ପାତ୍ରଙ୍କ ଦ୍ୱାରା ଆୟୋଜିତ ଦିନନାଥ ପାଠୀଙ୍କ ରଚନା ସଂକ୍ରାନ୍ତ ସେମିନାରକୁ ଯାଉଥିବା ବେଳେ ଦୁର୍ଘଟଣା ଘଟିଥିବାରୁ ତାଙ୍କର ଅପରାଧବୋଧର ସୀମା ନଥାଏ । ମୋତେ ସେ ଦେଖିବାକୁ ଆସିବାକୁ ଉଦ୍ୟତ ହେବାରୁ ମୁଁ ତାଙ୍କୁ ବାରଣ କରିଥିଲି, ଭଲ ହୋଇଗଲେ ସେ ଆସିବେ । ଭଲ ହେଲି । କିନ୍ତୁ ସେ ଆସି ପାରିଲେ ନାହିଁ, ହଠାତ୍ ତାଙ୍କ ରାସ୍ତା ଶେଷ ହୋଇଗଲା । ସେ ଚାଲିଗଲେ । ଯାହା ହେଉ ସୁସ୍ଥ ବ୍ୟବସ୍ଥିତ ଥାଉଁ ଥାଉଁ ମୃତ୍ୟୁର ସମ୍ମୁଖୀନ ହୋଇଛନ୍ତି; ଅବଶ୍ୟ ଶୋକ ନ କରି ରହି ହେଲାନାହିଁ, ତେବେ ଭଲ ଲୋକଙ୍କ ପକ୍ଷରେ ଏହି ଭାବରେ ଯିବା ଭଲ ବୋଲି ମନେ ହେଲା ।

ଗୋଧୂଳି ଲେନ୍, ଦେଉଳ ସାହି , କଟକ-୮

## ଅଧ୍ୟାପକ ଶିବରାମ ପାତ୍ରଙ୍କ ସ୍ମୃତି

ଡକ୍ଟର ପ୍ରଦୀପ ମହାପାତ୍ର

୧୯୬୯-୭୦ ମସିହା ବେଳକୁ ମୋର ଉପର ଭାଇ ରମେଶ ମହାପାତ୍ର ଉଭୟ ଇଂଲିଶ୍, ଓଡ଼ିଆ ଗପ ଓ କବିତା ଲେଖୁଥାନ୍ତି ଏବଂ ସେଗୁଡ଼ିକ ପତ୍ରପତ୍ରିକାରେ ପ୍ରକାଶ ପାଉଥାଏ । ଶିବରାମ ଭାଇନା ମୋ' ଭାଇଙ୍କ ନିକଟରୁ ଲେଖା ସଂଗ୍ରହ କରିବାକୁ ଆମ ଘରକୁ ଆସନ୍ତି । ସେ ଭୁବନେଶ୍ୱରରେ ଅବସ୍ଥାପିତ ହୋଇ ଆସିକାରୁ ପ୍ରକାଶିତ 'ଆଲୋକ' ନାମକ ଏକ ସାହିତ୍ୟ ପତ୍ରିକାର ସମ୍ପାଦନାରେ ସଂପୃକ୍ତ ଥାଆନ୍ତି । ମୁଁ ସେତେବେଳକୁ ଦଶମ ଶ୍ରେଣୀର ଛାତ୍ର ଏବଂ ମାତୃଭୂମି, ପ୍ରଜାତନ୍ତ୍ର, ନବୀନ, ଅନୁପମା, ସୌରଭ, ଚିତ୍ର ସାରଥି ଭଳି ପତ୍ରିକା ଗୁଡ଼ିକରେ ମୋର ଲେଖା ପ୍ରକାଶନ ଆରମ୍ଭ ହୋଇଥାଏ । ଭାଇଙ୍କ ପାଖକୁ ଆସୁଥିବା ଅବସରରେ ସେ ମୋ' ସହ ମଧ୍ୟ ଥରେ ଅଧେ ଲେଖାଲେଖି ସମ୍ପର୍କରେ କଥାବାର୍ତ୍ତା ହୁଅନ୍ତି ।

ସେହି ସମୟରେ ସହରରେ ଏକାଥରକେ ପ୍ରାୟ ଦଶରୁ ଅଧିକ ସାମୟିକ ପତ୍ରିକା ବା 'ଲିଟିଲ ମ୍ୟାଗାଜିନ୍' ଆତ୍ମପ୍ରକାଶ କରୁଥିଲା । ଆମେ କେତେଜଣ ବନ୍ଧୁ ମିଳିତ ଉଦ୍ୟମରେ 'ସଂବିତ୍' ନାମରେ ଏକ ସାମୟିକ ପତ୍ରିକା ୧୯୭୦ରୁ ୭୫ ଯାଏଁ ପ୍ରକାଶ କରୁଥିଲୁ । ଶିବରାମ ଭାଇନା ନବପ୍ରତିଷ୍ଠିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ଅଧ୍ୟୟନ ପାଇଁ ଆସି ପହଞ୍ଚିଲେ । ସକାଳ ବେଳା ଓଡ଼ିଆ ଏମ୍.ଏ. ପଢ଼ା ସାଙ୍ଗକୁ ଓଡ଼ିଶା ରୋଡ଼ ଟ୍ରାନ୍ସପୋର୍ଟ କମ୍ପାନୀରେ ଅଡ଼ିଟର ଚାକିରୀ । ତାଙ୍କରି ଉଦ୍ୟମରେ କଳିଙ୍ଗ ସାହିତ୍ୟ ସମାଜ ପ୍ରତିଷ୍ଠିତ ହୁଏ ।

୧୯୭୩ ବେଳକୁ କଳିଙ୍ଗ ସାହିତ୍ୟ ସମାଜର ପ୍ରାଥମିକ ସାଂଗଠନିକ ଢାଞ୍ଚା ପ୍ରସ୍ତୁତ ହୋଇ ସାରିଥାଏ ଏବଂ ଶିବରାମ ଭାଇନା ଏମ୍.ଏ. ପଢ଼ା ସାରି ଗୁଣପୁର ମହାବିଦ୍ୟାଳୟରେ ଅଧ୍ୟାପନା କରିବାପାଇଁ ଚାଲିଯାଆନ୍ତି । ସେ ମୋତେ କଳିଙ୍ଗ ସାହିତ୍ୟ ସମାଜର ସାଂଗଠନିକ କାର୍ଯ୍ୟ ତୁଲାଇବାକୁ ଅନୁରୋଧ କରନ୍ତି ଏବଂ ୧୯୭୩ ରୁ ୧୯୮୩ ଯାଏଁ ଦୀର୍ଘ ବର୍ଷ ଧରି 'ସଂବିତ୍' ଗୋଷ୍ଠୀଭୁକ୍ତ ବନ୍ଧୁମାନଙ୍କ ସହ ଏଥିରେ ମୁଁ ସଂପୃକ୍ତ ରହେ ।

କଳିଙ୍ଗ ସାହିତ୍ୟ ସମାଜ ପକ୍ଷରୁ ସହରରେ ସାହିତ୍ୟ ଆସର ଆୟୋଜନରେ ସ୍ୱତନ୍ତ୍ରତା ରହୁଥିଲା । ଶିବରାମ ଭାଇନା ନୂତନ ଆୟୋଜନ ଶୈଳୀ ସଂପର୍କରେ ଅବଗତ ଥିଲେ ଏବଂ ପ୍ରାଥମିକ ସ୍ତରରେ ଆମେ ତାଙ୍କରି ଠାରୁ ଏହା ଶିଖିଥିଲୁ ବୋଲି କହିବାକୁ ହେବ । ସେ ସୃଜନଶୀଳତାକୁ ଉତ୍ସାହିତ କରୁଥିଲେ । ତାହା ଆମମାନଙ୍କ ବୌଦ୍ଧିକ ବିକାଶ ଦିଗରେ ସହାୟକ ହୋଇପାରୁଥିଲା । ମୋର ଉପର ତିନିଭାଇ ଲେଖାଲେଖି କରୁଥିବା ଯୋଗୁଁ ସମସ୍ତଙ୍କ ସହ ଶିବରାମ ଭାଇନା ସଂପର୍କ ରଖିଥିଲେ ।

କଳିଙ୍ଗ ସାହିତ୍ୟ ସମାଜର ତତ୍‌କାଳୀନ କୋଷାଧକ୍ଷ ଚିତ୍ରଶିଳ୍ପୀ ବିପିନ ବିହାରୀ ସାହୁଙ୍କ ତିରୋଧାନ ପରେ ବ୍ରହ୍ମପୁରରେ ଆୟୋଜିତ ସ୍ମୃତି ସଭାରେ ଯୋଗ ଦେବାପାଇଁ ଶିବରାମ ଭାଇନା ବ୍ରହ୍ମପୁର ଆସିଥିଲେ । ଭୁବନେଶ୍ୱରରୁ କେତେଟା ଚାରା ସାଥିରେ ଆଣିଥିଲେ ଏବଂ ସେଗୁଡ଼ିକ ଚିତ୍ରଶିଳ୍ପୀଙ୍କ ସ୍ମୃତିରେ ଉତ୍କଳ ଆଶ୍ରମ ପ୍ରାଙ୍ଗଣରେ ରୋପଣ କରାଗଲା । ତା' ଦୁଇଦିନ ପରେ ହଠାତ୍ ସକାଳେ ଆମ ଘରେ ହାଜର । 'ସୁରେନ୍ଦ୍ର ବିଚାର ମଂଜୁଷା' ଖଣ୍ଡେ ଦେଲେ । ଗତ ଦୁଇଚାରି ବର୍ଷ ମଧ୍ୟରେ ମୋର ପ୍ରକାଶିତ ପୁସ୍ତକ କେତେ ଖଣ୍ଡ ନେଲେ । ସଂକ୍ଷିପ୍ତ ସଂକ୍ଷିପ୍ତରେ କୁଶଳ ଜିଜ୍ଞାସା କରି ବିଦାୟ ନେଲେ । କହୁଥିଲେ ବହୁତ ଯୋଜନା ଅଛି, ପୁଣି ଆସିଲେ ଦୀର୍ଘ ଆଲୋଚନା କରିବା । ତାହାହିଁ ଥିଲା ଶିବରାମ ଭାଇନାଙ୍କ ସହ ମୋର ଶେଷ ସାକ୍ଷାତ ।

ବ୍ରହ୍ମପୁର

## ✓ ଲଗାଇବା କ'ଣ ଏତେ ସହଜ ?

ସତ୍ୟ ମହାପାତ୍ର

ଚାହୁଁ ଚାହୁଁ ବର୍ଷଟିଏ ହେଇଗଲା । ଭୁବନେଶ୍ୱର ସାହିତ୍ୟ ସମାଜର ମାସିକ ସାରସ୍ୱତ ଆସର ପାଇଁ ଚିଠି ଦେଲା ବେଳକୁ ଶିବରାମ ବାବୁଙ୍କ ନାମ ଆଗରେ 'ଶ୍ରୀ' ଲେଖି ଠିକଣା ଲେଖାଯାଏ । ସେ ଏହି ମାସିକ ସାରସ୍ୱତ ଆସରକୁ ନିୟମିତ ଆସୁନଥିଲେ । କିନ୍ତୁ ବିଶିଷ୍ଟ ଚିତ୍ରଶିଳ୍ପୀ ଦିନନାଥ ପାଠୀଙ୍କ ସାଙ୍ଗରେ ବହୁବାର ସେ ଆସିଛନ୍ତି । ଯେତେବେଳେ ତାଙ୍କୁ ଯେଉଁ ଦାୟିତ୍ୱ ନେବା ପାଇଁ ଅନୁରୋଧ କରାଯାଏ, ସେ ମନା କରନ୍ତି ନାହିଁ । ଥରେ ପୂଜା ବିଶେଷାଙ୍କ ସଂପର୍କରେ ତାଙ୍କୁ ସମୀକ୍ଷା କରିବା ପାଇଁ ଅନୁରୋଧ କରାଯାଇଥିଲା । ସେ ପ୍ରାୟ ସବୁ ପୂଜାସଂଖ୍ୟା ପଢ଼ି ତାଙ୍କର ସୁଚିନ୍ତିତ ମତାମତ ଦେଇଥିଲେ । ତାଙ୍କର ଆଲୋଚନା ସମସ୍ତଙ୍କୁ ପ୍ରଭାବିତ କରିଥିଲା । ସାରସ୍ୱତ ଆସରର ଅଧିବେଶନରେ ସେ

ସବୁବେଳେ ଗୋଟିଏ ବାର୍ଷିକ ବିଶେଷାଙ୍କ ପ୍ରକାଶ କରିବାପାଇଁ ମତ ଦେଉଥିଲେ । ପରେ ତାହା ଦାବୀରେ ପରିଣତ ହେଲା । ଏହି ଦାବୀ କ୍ରମେ ଆସରରେ ଯୋଗ ଦେଉଥିବା ନିୟମିତ ସଦସ୍ୟ ଓ ସଦସ୍ୟମାନଙ୍କୁ ମଧ୍ୟ ପ୍ରଭାବିତ କଲା । ଫଳରେ ଆମେ କବିତା-୨୦୦୧ ବାହାର କରିବା ପାଇଁ ଉଦ୍ୟୋଗୀ ହେଲୁ ଏବଂ ସେହିଦିନଠାରୁ ପ୍ରତ୍ୟେକ ବର୍ଷ ଭୁବନେଶ୍ୱର ସାହିତ୍ୟ ସମାଜ ପକ୍ଷରୁ ତାହା ପ୍ରକାଶିତ ହେଉଛି । କବିତା-୨୦୦୪ ଶିବରାମ ବାବୁ ପାଇଥିଲେ । କବିତା-୨୦୦୫ ଦେଖିବାକୁ ସେ ରହିଲେ ନାହିଁ ।

ଶିବରାମବାବୁ କହିଲା ବେଳେ ଅତ୍ୟନ୍ତ ସ୍ପଷ୍ଟ ଭାବରେ ମତ ଦିଅନ୍ତି । କାହାକୁ ତାହା ଭଲ କିମ୍ବା ଖରାପ ଲାଗିଲା ସେଥିପ୍ରତି ତାଙ୍କର ପରବାୟ ନଥାଏ । ତାଙ୍କର ଆଲୋଚନା ଓ ହସହସ ମୁହଁ ସହିତ ଆମର ପରିଚିତି ଓ ବୁଝାମଣା ଥିବାରୁ ତାଙ୍କର ସ୍ପଷ୍ଟୋକ୍ତି ମତେ ବିରକ୍ତ କରେ ନାହିଁ । ବରଂ ମୁଁ ଯେପରି ପ୍ରେରଣା ପାଏ । ସେହିପରି ଭିନ୍ନ ଭିନ୍ନ ସମୟରେ ବ୍ୟକ୍ତିଗତ ଆଲୋଚନା ବେଳେ ବାରମ୍ବାର ଡଞ୍ଚଠ ସାମୟିକ ପତ୍ରିକା ଓ ସେଥିରେ ପ୍ରକାଶ ପାଉଥିବା କବିତାର ଇସ୍ତାହାର କଥା କହନ୍ତି । ସେ ସବୁ ସଂଖ୍ୟାକୁ ଖୋଜି ଏକାଠି କରାଯାଇଛି ଏବଂ ଆମର ଗୋଷ୍ଠୀର ପ୍ରଶାନ୍ତ ପଟ୍ଟନାୟକ (ପ୍ରୀତମ୍)ଙ୍କ ପାଖରେ ରଖାଯାଇଛି । ସଂଗୀତଜ୍ଞ ଅକ୍ଷୟ ମହାନ୍ତି ଆମ ଗୋଷ୍ଠୀ ସହିତ ଅତି ଅନ୍ତରଙ୍ଗ ଭାବରେ ସଂପୃକ୍ତ ଥିଲେ ଓ ମୋର ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କର ମୃତ୍ୟୁ ପୂର୍ବରୁ ସେ ଡାକ୍ତରଖାନା ଯିବା ଆଗରୁ ମତେ ଟେଲିଫୋନ ଯୋଗେ ଖୋଜିଥିଲେ । ମତେ ନପାଇ ସେ ଶ୍ରୀ ଉମାଶଙ୍କର ମିଶ୍ରଙ୍କୁ ଫୋନ କରି ଡଞ୍ଚଠ ପତ୍ରିକାଟି ବହି ଆକରରେ ପ୍ରକାଶ କରିବା ପାଇଁ ମତେ ଅନୁରୋଧ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ।ତେଣୁ ଏହି ବର୍ଷ ଏହି ପତ୍ରିକାଟି ବହି ଆକାରରେ ପ୍ରକାଶ କରିବା ପାଇଁ ମୁଁ ଓ ଆମର ବନ୍ଧୁମାନେ ପ୍ରତିଜ୍ଞା କରିଛୁ । ଏହି ବହିଟି ପ୍ରକାଶିତ ହେଲେ ଶିବରାମ ବାବୁଙ୍କ ଗୋଟିଏ ଇଚ୍ଛା ପୂରଣ ହେବ ବୋଲି ମୁଁ ଭାବିବି ।

ଶିବରାମ ବାବୁଙ୍କର ତିରୋଧାନ ହଠାତ୍ ହେଲା । ମୁଁ ହୃଦରୋଗୀ ବୋଲି ବିଳମ୍ବରେ ଏବଂ ହାଲୁକା ପରିବେଶରେ ଏ ଖବର ଦିଆଗଲା । ତଥାପି ମୁଁ ନିରବ ହେଇଗଲି । ପରେ ପରେ ମୋର ମୋହ ଭଙ୍ଗ ବି ହେଲା । କିନ୍ତୁ ଭୁବନେଶ୍ୱର ସାହିତ୍ୟ ସମାଜର ଫେବୃୟାରୀ ମାସର ସାରସ୍ୱତ ଆସର ପାଇଁ ଲେଖାଯାଇଥିବା ପୋଷ୍ଟକାର୍ଡରେ ଶିବରାମ ବାବୁଙ୍କ ନାମ, ଗୌରୀନଗର, ଭୁବନେଶ୍ୱର-୨ ଲେଖା ସରିଥିଲା । ପୋଷ୍ଟକାର୍ଡଟି ଡାକ ଘରେ ପଡ଼ିବା ପୂର୍ବରୁ ମୁଁ ତାହାକୁ ଆବିଷ୍କାର କଲି । ଅନେକ ପ୍ରସ୍ତାବ ଦେଲେ ✓ ଲଗାଇ ଦେଇ ପୋଷ୍ଟ କରିଦେବା । କାରଣ ପୋଷ୍ଟକାର୍ଡ଼ ଲେଖା ସରିଛି । ମନା କଲି । କାରଣ ଆମକୁ ସବୁଦିନ ପାଇଁ ଛାଡ଼ି ଯାଇଥିବା ଲୋକ ପାଖକୁ କ'ଣ ପୋଷ୍ଟକାର୍ଡ଼ରେ ଚିଠି ଦିଆଯାଏ । ମନରେ ଆସିଲା ✓ ଲଗାଇ ଦେବା କଣ ଏତେ ସହଜ ! ସହଜ କଥାଟିଏ କିନ୍ତୁ କେତେ କଷ୍ଟ । ଚିତ୍ର ପ୍ରଦର୍ଶନୀ ହେଲା । ସମସ୍ତେ ଏକାଠି ହେଲେ । ଶୀତ ଆସର ଜମିଲା । କିନ୍ତୁ ଶିବରାମବାବୁଙ୍କ ନାମ ଆଗରେ ✓ ଲାଗି ନଥିବା ପୋଷ୍ଟକାର୍ଡ଼ଟି ସେପରି ରହିଯାଇଛି ।

୪୭.ଏକାମ୍ର ବିହାର
ଆଇ. ଆର୍. ସି. ଭିଲେଜ, ଭୁବନେଶ୍ୱର-୧୫

# ଅନ୍ୟର ସୁଖରେ ସୁଖୀ ହେବା ମଣିଷଟିଏ

ସାଧୁଚରଣ ପଟ୍ଟନାୟକ

ଦୀର୍ଘ ୩୭ ବର୍ଷର ପରିଚୟ ମଧ୍ୟରେ ଆମ ବନ୍ଧୁତାର ଘନିଷ୍ଠତା ବୃଦ୍ଧିପାଇଥିଲା । ତାଙ୍କ ସହିତ ପ୍ରଥମ ପରିଚୟ ଏପରି ଏକ ଅମୃତ ବେଳାରେ ହୋଇଥିଲା ଯେ, ତାଙ୍କୁ ଦେଖିଲେ ମୋର ମନେ ହେଉଥିଲା ସେ ମୋର ଜଣେ ପ୍ରିୟଜନ । ମୁଁ ତାଙ୍କ ବନ୍ଧୁତାର ନିଷ୍ଠାପରତା, ଉଦାରତା ଏବଂ ସହୃଦୟତା ମୋ ଅନ୍ତରରେ ଅନୁଭବ କରିଥିଲି । ବୟସରେ ସେ ମୋଠାରୁ ଅଠରବର୍ଷ କନିଷ୍ଠ ହେଲେ ବି ସାହିତ୍ୟ କ୍ଷେତ୍ରରେ ତାଙ୍କର ପରିପକ୍ୱତା, ମୁଁ ତାଙ୍କ ସହିତ ପ୍ରଥମ ପରିଚୟ ସମୟରୁ ଜାଣିପାରିଥିଲି ।

ବ୍ରହ୍ମପୁରରେ କୌଣସି ଏକ ସାହିତ୍ୟ ସଭାକୁ ଆମେ ଦୁହେଁ ନିମନ୍ତ୍ରିତ ହୋଇଥିଲୁ । ସଭା ଶେଷରେ ସେ ମୋ ନିକଟରେ ଆସି ବସିଲେ । ମୋର ପ୍ରଥମ ପ୍ରକାଶିତ ମୂଳିଆର ସମାଧି ବହିରେ ଥିବା ଗଳ୍ପଗୁଡ଼ିକର ପ୍ରଶଂସା କରି କହିଥିଲେ : "ସେଥିରେ ଲିଖିତ ଗଳ୍ପକୁଡ଼ିକ କ୍ଷୁଦ୍ରହେଲେ ବି ହୃଦୟସ୍ପର୍ଶୀ ହୋଇଛି । ଆପଣ ସେହି ଲେଖା ଅଭ୍ୟାସଟିକୁ ଚାଲୁ ରଖନ୍ତୁ । ନୂତନ ଭାବେ ପ୍ରକାଶ ପାଉଥିବା ଆମର 'ଆଲୋକ' ମାଗାଜିନ୍ ପାଇଁ ଗଳ୍ପଲେଖି ପଠାନ୍ତୁ ।" ମୁଁ ତାଙ୍କୁ କହିଥିଲି : ମୁଁ ଜଣେ ମୁକ୍ତହସ୍ତ ଲେଖକ । ଅନୁପ୍ରେରଣା ଯେପରି ଯେତେବେଳେ ପାଏ, ସେହିଭଳି ଲେଖେ । ତାହା ଆପଣଙ୍କ ମାଗାଜିନ୍ ପାଇଁ ଉପଯୁକ୍ତ ବିବେଚିତ ହେବକି ନାହିଁ-- ସେ ମୋ ପାଟିରୁ କଥା ଛଡ଼ାଇନେଇ କହିଥିଲେ : ଆପଣ ଅନୁଭୂତି ସମ୍ବଳିତ ଗଳ୍ପ ଲେଖନ୍ତି । ତାହା ଆମ ମାଗାଜିନ୍ ପାଇଁ ବେଶ୍ ଉପଯୁକ୍ତ ହେବ ।

ମୋର ପ୍ରଥମ ବହି ୧୯୫୩ରେ ପ୍ରକାଶ ପରେ ବହିର ମାର୍କେଟିଂରେ ଅନଭିଜ୍ଞତା ଏବଂ ବହିଦୋକାନୀମାନଙ୍କର ଅତିରିକ୍ତ ଲାଭଖୋର ମନୋଭାବ ଲକ୍ଷ୍ୟ କରି ବହିଲେଖା ଓ ପ୍ରକାଶ ପାଇଁ ମୁଁ ସାମୟିକ ଭାବେ ବିତସ୍ପୃହ ହୋଇଯାଇଥିଲି । ଶିବରାମ ବାବୁଙ୍କ କଥାରେ ପୁନର୍ବାର ଗଳ୍ପ ଲେଖିବା ପାଇଁ ଉତ୍ସାହିତ ହୋଇଥିଲି ଏବଂ ତାଙ୍କ ମାଗାଜିନ୍ ଖଣ୍ଡିଏ କପି ମୋ ହାତରେ ଦେଇ କହିଥିଲେ : "ଆପଣଙ୍କ 'ଶାସ୍ତି' ଗଳ୍ପଟି ଚମତ୍କାର ହୋଇଛି । କେବଳ ମୁଁ ନୁହେଁ, ମୋର ସମସ୍ତ ଲେଖକବନ୍ଧୁ ଲେଖାର ଶୈଳୀ ଏବଂ ପ୍ଲଟ ନିର୍ବାଚନର ବେଶ୍ ତାରିଫ କରିଛନ୍ତି ।" ଘଟଣାଟି ୧୯୬୭ ମସିହାର କଥା । ମୋ ଭଳି ଏକ ନବୀନ ଲେଖକୁ ଉତ୍ସାହିତ କରିବାପାଇଁ ସେ ଏପରି କହୁଛନ୍ତି ଭାବି ମୁଁ ଅଧିକ ଉତ୍ସାହ ପ୍ରକାଶ କରିନଥିଲି । ମୋର ନିରାସକ୍ତ ଭାବ ସେ ଲକ୍ଷ୍ୟ କଲେ, କିଛି କହିଲେ ନାହିଁ, କିନ୍ତୁ ସେଥିରୁ ଖଣ୍ଡିଏ କପି ନେଇ ଲବ୍ଧ ପ୍ରତିଷ୍ଠ ଲେଖକ ସୁରେନ୍ଦ୍ର ମହାନ୍ତିଙ୍କୁ ଦେଇଥିଲେ । ସୁରେନ୍ଦ୍ର ମହାନ୍ତି ତାହା ପଢ଼ି ତାଙ୍କ ମତ ଦେଇଥିଲେ "ଶାସ୍ତି ଗଳ୍ପଟି ଭଲ ହୋଇଛି, ଗଳ୍ପ ଲେଖକ ଯେ ଦିନେ ଏକ ନାମକରା ଗାଳ୍ପିକ ହେବେ, ଏହା ମୁଁ ନିଶ୍ଚିତଭାବେ କହିପାରେ ।"

ପରବର୍ତ୍ତୀ ସମୟରେ ଶିବରାମବାବୁଙ୍କ ସହିତ ଦେଖାହେଲାକ୍ଷଣି, ସୁରେନ୍ଦ୍ର ମହାନ୍ତିଙ୍କ ମନ୍ତବ୍ୟ ମୋତେ ଶୁଣାଇଥିଲେ । ସେହି ମନ୍ତବ୍ୟ ଶୁଣି, ମୁଁ ଲେଖିବା ପାଇଁ ଅଧିକ ଉତ୍ସାହିତ ହୋଇଥିଲି । କେତେକ ଗଳ୍ପ ଲେଖି 'ଆଲୋକ' ପତ୍ରିକା ପାଇଁ ଦେଇଥିଲି ।

'ଆଲୋକ' ପତ୍ରିକା କିଛିଦିନ ପରେ ବନ୍ଦ ହୋଇଯାଇଥିଲା । କିନ୍ତୁ ମୋର ଗଳ୍ପଲେଖା ବନ୍ଦ ହୋଇନଥିଲା । ସେହି ସମୟର ଗଳ୍ପଗୁଡ଼ିକ 'ଫୁଲତୋଡ଼ା', 'ସପ୍ତସ୍ୱର' ଓ 'ଷୋଡ଼ଶୀ' ବହି ଆକାରରେ ପ୍ରକାଶ ପାଇଥିଲା । ମୁଁ ସେହି ବହିରୁ ଖଣ୍ଡେ ଲେଖା ଶିବରାମବାବୁଙ୍କୁ ଦେଇଥିଲି । ସେ ତାହା ପଢ଼ି ଖୁବ୍ ଆନନ୍ଦିତ ହୋଇଥିଲେ ଏବଂ ଉପନ୍ୟାସ ଲେଖିବା ପାଇଁ ମୋତେ ଉତ୍ସାହିତ କରିଥିଲେ । ମୁଁ କେତୋଟି ଉପନ୍ୟାସ, 'ସନ୍ଧାନ','ବଧୂ' ଲେଖି ପ୍ରକାଶ କରିଥିଲି । ସେ ମୋର ପ୍ରକାଶିତ ଉପନ୍ୟାସଗୁଡ଼ିକ ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ତାଙ୍କ ବନ୍ଧୁ ମହଲରେ ମୋତେ ଏକ ଉଚ୍ଚଧରଣର ଲେଖକ ଭାବେ ପରିଚୟ କରାଇଦେଇଥିଲେ । ତାଙ୍କ ସହିତ ମୋର ବାହ୍ୟ ସମ୍ପର୍କ କେତେବର୍ଷ ଯାଏଁ ଛିନ୍ନ ହୋଇ ଯାଇଥିଲା, କିନ୍ତୁ ଅନ୍ତରର ସମ୍ପର୍କ ଅତୁଟ ରହିଥିଲା । ସେହି ସମୟରେ ମୁଁ ବହି ଲେଖିବାରେ ଶିଥିଳ ହୋଇଯାଇଥିଲି । ୧୯୭୧ରେ ମୋର ପୁନର୍ବାର ବ୍ରହ୍ମପୁରରେ ପୋଷ୍ଟିଂ ହେଲାପରେ ତାଙ୍କ ସହିତ ଦେଖାହେଲା । ଶିବରାମବାବୁ ସେତେବେଳେ ଗୁଣପୁରରେ ଥିଲେ । ସେ ବ୍ରହ୍ମପୁର ଆସିଲେ ସେ ମୋର ସାହିତ୍ୟ ଲେଖା ସମ୍ବନ୍ଧେ ପ୍ରଶ୍ନକରି ମୋର ସେ ଦିଗରେ ସାମୟିକ ନିରୁତ୍ସାହ ନଜର କରି ଏକ ନୂତନ ଉପାୟ ଅବଲମ୍ବନ କରିଥିଲେ । ଏକ ଅବସର ମୁହୂର୍ତ୍ତରେ ମୋତେ ସେ କହିଥିଲେ : ''ଆପଣ ଏତେବାର ଶ୍ରୀଅରବିନ୍ଦ ଆଶ୍ରମ ଯାଉଛନ୍ତି ଏବଂ ଶ୍ରୀମାଙ୍କୁ ଦର୍ଶନ କରିବା ସୌଭାଗ୍ୟ ପ୍ରାପ୍ତ କରୁଛନ୍ତି । ସେହି ଦିଗରେ ଆପଣଙ୍କ ଅଭିଜ୍ଞତାଗୁଡ଼ିକ ଲିପିବଦ୍ଧ କଲେ ବହୁତ ଉତ୍ତମ ହୁଅନ୍ତା ।'' ମୁଁ ତାଙ୍କଠାରୁ ସେ କଥା ଶୁଣି ପୁନର୍ବାର ବହି ଲେଖାରେ ନିଜକୁ ନିୟୋଜିତ କରିଥିଲି । ଜଣେ ବନ୍ଧୁର ସାଫଲ୍ୟ ଓ ସମୃଦ୍ଧିରେ ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଇବା ଭଳି ସେ ଜଣେ ହୃଦୟବାନ ବ୍ୟକ୍ତି ଥିଲେ । ଅନ୍ୟର ସୁଖ ସମୃଦ୍ଧିରେ ଆନନ୍ଦ ଲାଭ କରିବା ଭଳି ସେ ଜଣେ ବିରଳ ବନ୍ଧୁ ।

ପଣ୍ଡିଚେରୀରେ ରହିବାପରେ ବାବାଜୀ ମହାରାଜ 'ଶ୍ରୀ ରାମକୃଷ୍ଣ ଦାସ' ଅଯୋଧ୍ୟାରେ ରେଲିକ୍ସ୍ ମନ୍ଦିର ନିର୍ମାଣ ପାଇଁ ମୋତେ ୧୯୮୮ରେ ପଠାଇଥିଲେ । ମୁଁ ସେହି ରେଲିକ୍ସ୍ ମନ୍ଦିର ୧୯୮୯ରେ ଶେଷ କରିଥିଲି ଏବଂ ସେଠାରେ ରେଲିକ୍ସ୍ ପ୍ରତିଷ୍ଠା ହୋଇଥିଲା । ଏ ଭିତରେ ବ୍ରହ୍ମପୁରରେ ଶିବରାମବାବୁଙ୍କ ସହିତ ଦେଖା ହୋଇଥିଲା । ମୁଁ ତାଙ୍କୁ ମୋର ଅଯୋଧ୍ୟା ଯାତ୍ରା, ସେଠାରେ ହୋଇଥିବା କର୍ମକଥା କହିଥିଲି । ସେ ସେହି ଅଭିଜ୍ଞତାଟି ଏକ ବହି ଆକାରରେ ଲେଖି ପ୍ରକାଶ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ପରବର୍ତ୍ତୀ ବର୍ଷ ମୋର ସେହି ଅନୁଭୂତି ସମ୍ବଳିତ ଏକ ବହି 'ଅଯୋଧ୍ୟା ଡାଏରୀ' ପ୍ରକାଶ କରିଥିଲି । ବହିଟି ଦେଖି ସେ ଖୁବ୍ ଆନନ୍ଦିତ ହୋଇଥିଲେ ।

ହଠାତ୍ ଦିନେ (୨୦୦୪) ଆଶ୍ରମରେ ଶିବରାମବାବୁଙ୍କୁ ତାଙ୍କ ପରିବାର ସହ ଦେଖି ମୁଁ ଅତ୍ୟନ୍ତ ପ୍ରୀତ ହୋଇଥିଲି । ଆମ ଘରେ ଜଳଖିଆ ଖାଇଲାବେଳେ କଥାଛଳରେ ପଚାରିଥିଲେ, 'ଆପଣ କେବେ ଓଡ଼ିଶା ଆସୁଛନ୍ତି ?' ମୁଁ ତାଙ୍କୁ ଜଣାଇଥିଲି, ''ମୁଁ ଓଡ଼ିଶା ସବୁଦିନ ପାଇଁ ଛାଡ଼ିଲି ।''

ସେ ମୋତେ ବୁଝାଇବା ପାଇଁ କହିଥିଲେ ! ''ଆପଣ ଓଡ଼ିଶା ଛାଡ଼ିଲେ, ସେଥିପାଇଁ ମୋ ମନରେ ଦୁଃଖ ନାହିଁ । ଭଲ କଥା, ଆପଣ ପଣ୍ଡିଚେରୀରେ ତୀର୍ଥବାସୀ ହୋଇଗଲେ । କିନ୍ତୁ ମାତୃଭୂମିକୁ କେବେ ଭୁଲିଯିବେନାହିଁ ।'' ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲି ଯେ ଲେଖାରୁ ମୁଁ କେବେ ଅବସର ନେବି ନାହିଁ । ସେ ପଣ୍ଡିଚେରୀରେ ଦୁଇଚାରିଦିନ ବୁଲାବୁଲି କରି ଶ୍ରୀଅରବିନ୍ଦ

ଲାଇବ୍ରେରୀରେ ପହଞ୍ଚିଲେ । ପରଦିନ ସେ ମୋତେ ଜଣାଇଥିଲେ : ''ମୁଁ ଏଠାରେ ଶ୍ରୀଅରବିନ୍ଦ ଲାଇବ୍ରେରୀକୁ ଯାଇଥିଲି । ଦେଖିଲି ବଙ୍ଗଳା ଓ ହିନ୍ଦୀ ଭାଷାର ବହି ତୁଳନାରେ ଓଡ଼ିଆ ବହିର ସଂଖ୍ୟା କମ୍ । ଆପଣ ସେ ଦିଗରେ କିଛି ଉଦ୍ୟମ କରନ୍ତୁ ଏବଂ ଓଡ଼ିଆ ବହି ସଂଖ୍ୟା କିପରି ବୃଦ୍ଧି ପାଇବ ସେ ଦିଗରେ କିଛି ପଦକ୍ଷେପ ନିଅନ୍ତୁ ।'' ମୁଁ ସେତେବେଳେ ବୁଝିପାରିଲି ଓଡ଼ିଆ ଭାଷାର ଟେକ ରଖିବାପାଇଁ ସେ ସର୍ବଦା ଯତ୍ନବାନ ଏବଂ ସେ ଦିଗରେ ବରାବର ଚେଷ୍ଟା କରିଛନ୍ତି । ତାଙ୍କ ଚିନ୍ତାଧାରା ସର୍ବଦା ସେ ଦିଗରେ ହିଁ ପରିଚାଳିତ ।

ସେ ମୋତେ ଜଣାଇଥିଲେ : ''ଆଶ୍ରମରେ ରହିବାପାଇଁ ଅତିଥିଭବନରେ ରୁମ୍ ପାଇବା ବଡ଼ କଷ୍ଟକର ହେଲାଣି । ବହୁ କଷ୍ଟରେ ଏଥର ପାଇଲି । ପରବର୍ତ୍ତୀ ସମୟରେ କଣ ହେବ କିଏ ଜାଣେ ?'' ସେଠୁ ମୁଁ କହିଲି, ତେବେ ଆପଣଙ୍କ ପାଇଁ ଏହି ସମସ୍ୟା ରହିବ ନାହିଁ । ମୋ ବାସଭବନରେ ଅତିଥିମାନଙ୍କ ପାଇଁ ଗୋଟିଏ ରୁମ୍ ରହିଛି, ଆପଣ ଯେତେବେଳେ ଆସିବେ, ସେଠାରେ ରହିପାରନ୍ତି ।'' ସେ ଖୁସି ହୋଇଗଲେ ।

୨୭ ଫେବୃୟାରୀ ଦିନ ମନୋଜ ବାବୁଙ୍କ ଜନ୍ମଦିନ ଉପଲକ୍ଷେ, ତାଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ମୁଁ ସକାଳ ୮ଟା ବେଳେ ଫୁଲତୋଡ଼ାଟି ନେଇ ତାଙ୍କ ଘରେ ପହଞ୍ଚିଥିଲି, ମନୋଜବାବୁ ଫୁଲତୋଡ଼ାଟି ମୋ ହାତରୁ ନେଇ ମୋତେ ଜଣାଇଥିଲେ : ''ପ୍ରିୟମ୍ବଦା ଟେଲିଫୋନ୍‌ରେ ମୋତେ ଜଣାଇଥିଲା ଯେ ଶିବରାମବାବୁ କାଲି ରାତିରେ ଇହଧାମ ତ୍ୟାଗ କରିଛନ୍ତି, ହାର୍ଟଏଟେକ୍‌ରେ ।'' ମୁଁ ଅତ୍ୟନ୍ତ ମର୍ମାହତ ହୋଇଥିଲି ।
ମୃତ୍ୟୁ ସମ୍ବନ୍ଧେ ଶ୍ରୀଅରବିନ୍ଦ ଦେଇଥିବା ବାଣୀ ମୋର ମନେ ପଡ଼େ :

''ଏକ ସାଧକ ପାଇଁ ମୃତ୍ୟୁ ହେଲା ଏକ ଯାତ୍ରା, ଗୋଟିଏ ଜୀବନରୁ ଅନ୍ୟ ଏକ ଜୀବନ ଦିଗରେ ଯାତ୍ରା । କେହି ବାସ୍ତବରେ ମରେ ନାହିଁ, ସେ କେବଳ ପ୍ରସ୍ଥାନ କରିଥାଏ ।''

ଶ୍ରୀମା ଏ ସଂପର୍କରେ କହନ୍ତି : ''ମୃତ୍ୟୁକୁ ଶାନ୍ତିପୂର୍ଣ୍ଣ ଓ ଘଟଣାପୂର୍ଣ୍ଣ ଭାବେ ସ୍ୱାଗତ କରିବା ପାଇଁ ବ୍ୟକ୍ତି ନିଜକୁ ପ୍ରସ୍ତୁତ କରିବା ଦରକାର । ସେହି ଦିଗରେ ଏକ ଫଳପ୍ରଦ ପ୍ରସ୍ତୁତି ହେଲା ସକଳ କାମନା ବାସନାର ବିଲୋପ ସାଧନ ଏବଂ କର୍ମଫଳ ପ୍ରତି ଅନାସକ୍ତି । ଶରୀର ରହିଥିବା ବ୍ୟକ୍ତି କର୍ମ ଉପ୍ରର ରହିବ, କିଛିନା କିଛି କର୍ମ କରିବ । କିନ୍ତୁ ସେ ଯଦି କେବଳ କର୍ମପାଇଁ କର୍ମ କରେ, କୌଣସି ଫଳାଫଳର ଆଶା ନରଖି କର୍ମ କରେ, କିମ୍ବା କର୍ମର ଫଳ ଏପରି ହେଉ ବା ସେପରି ହେଉ ବୋଲି ପ୍ରତ୍ୟାଶା ରଖେ ନାହିଁ, ତେବେ ବ୍ୟକ୍ତି ଧୀରେ ଧୀରେ ଅନାସକ୍ତ ଭାବର ଉନ୍ନୟନ କରେ ଏବଂ ଆସ୍ତେ ଆସ୍ତେ ନିଜକୁ ବାସ୍ତବ ଶାନ୍ତିପ୍ରଦ ମୃତ୍ୟୁ ପାଇଁ ପ୍ରଗତିଶୀଳ ଭାବେ ପ୍ରସ୍ତୁତି କରିପାରେ ।''

ଖେଳ ମଝିରେ ହଠାତ୍ ଯେପରି ଏକ ଚପଳ ବାଳକ ଖେଳ ଛାଡ଼ି ଚାଲିଯାଇ ଗୋପନରେ ରହି ଅନ୍ୟମାନଙ୍କ ପ୍ରତିକ୍ରିୟା ଦେଖୁଥାଏ, ଆଜି ସେଭଳି ଶିବରାମ ବାବୁ, ଆମମାନଙ୍କ ଗହଣରୁ ଚାଲିଯାଇ ଗୋପନରେ ରହି ମଜା ଦେଖୁଛନ୍ତି । ତାଙ୍କ ସହିତ ଦୀର୍ଘ ଅବଧିର ପରିଚୟ ଭିତରେ ମୁଁ ଜାଣେ, ସେ ଜଣେ ସଦାନନ୍ଦ ବ୍ୟକ୍ତି ଥିଲେ ଏବଂ ବିପର୍ଯ୍ୟୟ ଭିତରେ ବି ନିଜର ହାସ୍ୟରସାତ୍ମକ ମିଜାଜ୍‌ଟି ଅତୁଟ ରଖି ପାରୁଥିଲେ ।

ମୋର ମନେହୁଏ ଶିବରାମ ବାବୁ ମାନବ ଜୀବନର ଚରମ ଲକ୍ଷ୍ୟ ଭଗବତ୍ ପ୍ରାପ୍ତି ଦିଗରେ ଆଉ ଏକ ପାଦ ଅଗ୍ରସର ହୋଇ ପୁନର୍ବାର ଏକ ଆଧାର ଗ୍ରହଣ କରିବା ପାଇଁ ଚୈତ୍ୟ ଜଗତରେ ପ୍ରତୀକ୍ଷା କରିଛନ୍ତି ।

ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ

# ସ୍ମୃତି ତର୍ପଣ

**ସଂଘମିତ୍ରା ମିଶ୍ର**

ଚାହୁଁ ଚାହୁଁ ବର୍ଷେ ହେବ । ଅଧ୍ୟାପକ ଶିବରାମ ପାତ୍ର ଆମ ଗହଣରୁ ବିଦାୟ ନେଲେଣି । ତାଙ୍କ ପାଇଁ ସ୍ମୃତି ସମ୍ବଳିତ ଲେଖା ପ୍ରସ୍ତୁତ କରିବାକୁ ଶ୍ରଦ୍ଧେୟା ପ୍ରିୟମ୍ବଦାଙ୍କର ଅନୁରୋଧ । କେମିତି ଲେଖିବି ? ଯେଉଁଦିନ ଏ ମର୍ମନ୍ତୁଦ ଖବର ମିଳିଲା ଆମେ ତାଙ୍କର ସମଧର୍ମାମାନେ କଥାବାର୍ତ୍ତା ହେଲୁ ଓଡ଼ିଆ ସାହିତ୍ୟକୁ ନିବୁଡ଼ ଭଲ ପାଉଥିବା ମଣିଷଟିଏ ଚାଲିଗଲା ଆଉ ଓଡ଼ିଆ ସାହିତ୍ୟ ଜଗତରୁ 'ଶ୍ରଦ୍ଧା'ର ପରିମାଣ ଉଣା ହୋଇଗଲା । ଶିବରାମ ବାବୁ ଆମ ବିଭାଗର ବରିଷ୍ଠ ଅଧ୍ୟାପକ । ତାଙ୍କ କନ୍ୟା ପ୍ରିୟମ୍ବଦା ମୋର ଛାତ୍ରୀ । ଖୁବ୍ ବୁଝେ ସାହିତ୍ୟ । ମଣିଷକୁ ଭଲପାଏ । ଲେଖାଲେଖି ବି କରେ । ବାପାଙ୍କ ଗୁଣ ନେଇ ସମସ୍ତଙ୍କୁ ସାହାଯ୍ୟ କରିବାକୁ ଅଣ୍ଟା ଭିଡ଼େ । ଏହି ସୂତ୍ରରେ ସେ ରମାକାନ୍ତ ସହିତ ପରିଚିତ ହୁଏ । (ରମାକାନ୍ତ ବି ମୋର ଛାତ୍ର) ଦିନେ ସକାଳୁ ଉଭୟେ ଆମ ଘରେ ପହଞ୍ଚି ଯାଆନ୍ତି । "ମ୍ୟାଡ଼ାମ୍, ମୁଁ ରମାକାନ୍ତକୁ ପସନ୍ଦ କରେ ଆଉ ତାକୁ ବାହା ହେବି ବୋଲି ଠିକ୍ କରିଛି ।" କହିଲା ପ୍ରିୟମ୍ବଦା । ମୁଁ ସତରେ ଆକାଶରୁ ଖସିଲି । ଏଭଳି କଥା ଶୁଣିବାକୁ ହୁଏତ ମୁଁ ପ୍ରସ୍ତୁତ ନଥିଲି । ଦିନେ ଶିବରାମବାବୁ ଆମ ଘରେ ଆସି ପହଞ୍ଚିଲେ । ମୋତେ କହିଲେ ଆପଣ ମୋ ଝିଅକୁ ବୁଝାନ୍ତୁ । ସେ ଆମ ଜାତିର ପୁଅଟିଏ ବାହାହେବ । ତାକୁ ଆପଣ ଏକୁଟିଆ ଡାକି ବୁଝାଇବେ । ମୋ ଝିଅଟା ସୁନାଝିଅ । ଆମ ସମାଜରେ ତା ପାଇଁ ମୋତେ ଅସୁବିଧାରେ ପଡ଼ିବାକୁ ହେବ ।" ଏମିତି ପ୍ରାୟ ଘଣ୍ଟାକରୁ ଊର୍ଦ୍ଧ୍ୱ ସେ ନିଜ ପରିବାର, ପ୍ରିୟମ୍ବଦାର ସାହିତ୍ୟ ପ୍ରୀତି, ଲେଖାଲେଖି, ଭାଷଣ ଇତ୍ୟାଦି କଥା ଗପ କଲେ । ସବୁ କଥା ଯାଇ ପହଞ୍ଚି ଯାଉଥାଏ ସେହି ଗୋଟିଏ ସମସ୍ୟା ପାଖରେ । ମୁଁ ସୂଚନା ଦେଲି ଯେ ଉଭୟେ ମୋ ପାଖକୁ ଆସିଥିଲେ ଆଉ ସେମାନଙ୍କ ମନକଥା ଜଣାଇଛନ୍ତି ମୋତେ । ତଥାପି ସେ ମୋତେ ଅନୁରୋଧ କରି ବିଦାୟ ନେଲେ । ମୁଁ ତା ପରଦିନ ପ୍ରିୟମ୍ବଦାକୁ ମୋ ପାଖକୁ ଡାକିଲି । "ତୁମ ବାପା କାଲି ଆମ ଘରକୁ ଆସିଥିଲେ ।" ମୋ କଥା ଛଡ଼ାଇ ନେଇ ପ୍ରିୟମ୍ବଦା କହିଲା "ହଁ, ମୁଁ ଜାଣେ ମୋ କଥା ଆଉ ରମାକାନ୍ତ କଥା କହିଥିବେ ତ ? ଆପଣ କହନ୍ତୁ ମ୍ୟାଡ଼ାମ୍ । ମୁଁ ସାହିତ୍ୟ କରିବି । ସଭାସମିତିରେ କବିତା ପଢ଼ିବି । ଲେଖିବି । ସେଇଠୁ କେଉଁ ବସ୍ତୁବାଦୀ ମଣିଷକୁ ବାହା ହୋଇ ସଂସାର କରିବି । ଏ କେମିତି କଥା ?" ମୋର ବା କ'ଣ କହିବାକୁ ଥିଲା ? ମୁଁ ଖାଲି ଏତିକି କହିଲି "ମାଆ, ମୋର ବୟସ ଅନୁଭୂତି ଓ ଅଭିଜ୍ଞତା ନେଇ ମୁଁ ତୁମ ବାପାଙ୍କ ପାଖରେ ହିଁ ଠିଆହେବି । ଏତିକି ମନେରଖିବ ଏମିତି ବାପା ପାଇବା ଭାଗ୍ୟର କଥା । କିଏ ନିଜ ଝିଅର ଭବିଷ୍ୟତ ପାଇଁ ଅଧାଜଣା ସ୍ତ୍ରୀଲୋକଟି ପାଖରେ ଏତେ ବ୍ୟାକୁଳତା ପ୍ରକାଶ କରିପାରେ ?" ପ୍ରିୟମ୍ବଦା ପାଠ ସାରିଛି । ବାପାଙ୍କୁ ମଣାଇ ବୁଝାଇ ରମାକାନ୍ତକୁ ବାହା ହୋଇଛି । ଆମେ ସମସ୍ତେ ତା ବାହାଘର ଭୋଜି ଖାଇଲୁ । ରମାକାନ୍ତ ବି ଶ୍ୱଶୁରଙ୍କ କଷଟି ପଥରରେ କଷି ହୋଇ ଉତ୍ତୀର୍ଣ୍ଣ ହୋଇଛି ।

ଶିବରାମ ବାବୁଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଦେଖିଛୁ । ଫୋନଟିଏ କରିଦେଲେ ସ୍ୱାମୀ ସ୍ତ୍ରୀ ସାଂଗ ହୋଇ ସାହିତ୍ୟ ସଭାରେ ପହଞ୍ଚି ଯାଆନ୍ତି ନିଶ୍ଚୟ । ସାଂଗରେ ଡାକି ନିଅନ୍ତି ସମ୍ମାନନୀୟ ଦିନନାଥ ପାଠୀ ମହୋଦୟଙ୍କୁ ।

୧୯୯୮ରେ ମୁଁ ବିଭାଗୀୟ ମୁଖ୍ୟ ଥିବା ସମୟରେ ଶିବରାମବାବୁ ରିଫ୍ରେସରର୍ସ କୋର୍ସ କରୁଥାଆନ୍ତି । ଅଧିକାଂଶ ଦିନ ମୁଁ ରିସୋର୍ସ ପର୍ସନ୍‌ମାନଙ୍କୁ ପରିଚିତ କରାଇବାର ଭାର ତାଙ୍କୁ ଦେଇଦିଏ ଆଉ ସେ ଖୁବ୍ ଆଗ୍ରହର ସହିତ ସେ କାମଟି କରନ୍ତି । ଯେଉଁଦିନ ସେମିନାର୍ ହେଲା ସେଦିନ ସେ କେତେ ସୁନ୍ଦର ଗୀତ ଗାଇଥିଲେ ଆଉ ତାଙ୍କ ଅଞ୍ଚଳ ସଂପର୍କରେ ଭାଷଣ ଦେଇଥିଲେ, ଆମେ ସମସ୍ତେ ଖୁବ୍ ପ୍ରଭାବିତ ହୋଇଥିଲୁ ।

ବହୁ ବିଶିଷ୍ଟ ସାହିତ୍ୟିକଙ୍କ ସହିତ ଘନିଷ୍ଠ ସଂପର୍କ ଥିଲା । 'ସୁରେନ୍ଦ୍ର ବିଚାର ମଂଜୁଷା' ତାଙ୍କର ସୁରେନ୍ଦ୍ର ମହାନ୍ତିଙ୍କ ସାହିତ୍ୟ ସୃଷ୍ଟି ପ୍ରତି ଥିବା ଗଭୀର ଅନୁରାଗର ଫଳଶ୍ରୁତି । ସେ ଯାହାକୁ ପ୍ରଶଂସା କରୁଥିଲେ ମନ ଭରି ଆଉ ନିନ୍ଦା ମଧ କରୁଥିଲେ ଖୁବ୍ ରୋକ୍‌ଠୋକ୍ ଭାବରେ । ଶିବରାମ ପାତ୍ର କେବଳ ଜଣେ ଓଡ଼ିଆ ଅଧାପକ ନଥିଲେ । ସେ ଥିଲେ ଭାଷା ସାହିତ୍ୟର ପରମ ଅନୁରାଗୀ, ଦାୟବଦ୍ଧ ମଣିଷ ।

ଯେଉଁ ଝିଅପାଇଁ ସେ ବେଶି ଚିନ୍ତା କରୁଥିଲେ ସେଇ ଝିଅ ଆଜି ଅଣ୍ଟା ଭିଡ଼ି ତାଙ୍କ ସ୍ମୃତିଚାରଣ ପାଇଁ-ପୁସ୍ତକଟିଏ ପ୍ରକାଶ କରିବ । ମୁଁ ଜାଣେ ତାଙ୍କର ଅଗଣିତ ଗୁଣଗ୍ରାହୀ ତାଙ୍କ ସଂପର୍କରେ ବହୁ ତଥ୍ୟ ଦେବେ । କିନ୍ତୁ ମୁଁ ଏ' ସୁଯୋଗ ପାଇଥିବାରୁ କୃତଜ୍ଞ । ଈଶ୍ୱର ତାଙ୍କ ପତ୍ନୀଙ୍କୁ ସାହସ ଓ ଧୈର୍ଯ୍ୟ ଦିଅନ୍ତୁ । ତାଙ୍କ ପିଲାମାନେ ଉତ୍ତରୋତ୍ତର ଉନ୍ନତି କରନ୍ତୁ ।

## ମୋ ସ୍ମୃତିରେ ଶିବରାମ ପାତ୍ର

ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ

ଖଦଡ଼ ପଞ୍ଜାବୀ ପିନ୍ଧି ଝୁଲାମୁଣିଟିଏ କାନ୍ଧରେ ପକାଇ ସାଇକେଲରେ ଘୁରି ବୁଲୁଥିବା ସ୍ୱଚ୍ଛ ଶ୍ମଶ୍ରୁବାନ୍ ମଣିଷଟିଏ । ଶିବରାମ ପାତ୍ର କହିଲେ ଏଇଭଳି ଜଣେ ମଣିଷର ଚିତ୍ର ଆଖିରେ ଭାସିଉଠେ ।

ମୋ ଘର ଭୁବନେଶ୍ୱରର ଏକାମ୍ର କଲେଜର ଅତି ନିକଟରେ । କଲେଜରେ କ୍ଲାସ୍ ନଥିଲେ ସେ ଅସଙ୍କୋଚରେ ଅସମୟରେ ଆସି ପହଞ୍ଚି ଯାଆନ୍ତି ଦଆର ମୁହଁରେ । ଯେ କୌଣସି ପ୍ରସଙ୍ଗରେ ଅଯାଚିତ ଭାବରେ ବହୁ ପ୍ରସ୍ତାବ ବାଢ଼ି ବସନ୍ତି ଶିବରାମ ବାବୁ ।

କର୍ମଜୀବନର ଆଦ୍ୟ କାଳରେ ଯୁବଲେଖକ ସମ୍ମେଳନ ମଞ୍ଚରେ ମୋର ତାଙ୍କ ସହିତ ପରିଚୟ ହୋଇଥିଲା । ଖାଣ୍ଟି ଗଞ୍ଜାମୀ ଉଚ୍ଚାରଣ ସହିତ ରୋକ୍‌ଠୋକ୍ କଥା କହିବାର ଶୈଳୀ ଆମ ସମସ୍ତଙ୍କୁ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା । ଯୁବ ଲେଖକ ସମ୍ମେଳନର ସେ ଜଣେ ସକ୍ରିୟ ସଭ୍ୟ ଥିଲେ ଓ ସୁଦୂର କୋରାପୁଟ ଜିଲ୍ଲାରେ ଥାଇ ସେ ଯୁବଲେଖକ ସମ୍ମେଳନ ପାଇଁ ବହୁତ କିଛି କାର୍ଯ୍ୟ କରିଥିଲେ ।

ସେ ସାହିତ୍ୟର ଅଧ୍ୟାପକ ଥିଲେ ବି ସାହିତ୍ୟ କେବଳ ଅଧ୍ୟାପନାରେ ସୀମିତ ନଥିଲା ତାଙ୍କ ପାଇଁ । ତାହା ଥିଲା ତାଙ୍କ ବଞ୍ଚିବାର ଗଭୀର ଆନନ୍ଦ ଓ ପ୍ରେରଣାର ଆଧାର । ସାହିତ୍ୟିକମାନଙ୍କୁ ସେ ଛୋଟବଡ଼ ନିର୍ବିଶେଷରେ ଶ୍ରଦ୍ଧା ଓ ସମ୍ମାନ ଦେଉଥିଲେ । ସେ ସମ୍ପର୍କ ଥିଲା ଆନ୍ତରିକତା, ଗଭୀର ସ୍ନେହ ଓ ସହାନୁଭୂତିର ।

ସାହିତ୍ୟ ପ୍ରତି ସଚେତନତା ଓ ଅନୁରାଗ ସୃଷ୍ଟି କରିବାପାଇଁ ସେ ସବୁବେଳେ ଚେଷ୍ଟିତ ଥିଲେ । ଭୁବନେଶ୍ୱରର ପ୍ରାୟ ସବୁ ସାହିତ୍ୟ ସଭାରେ ଯୋଗଦେଉଥିଲେ ଏବଂ ନିର୍ଭୀକ ଭାବରେ ତାଙ୍କ ମତ ଉପସ୍ଥାପନ କରୁଥିଲେ । ଏକାମ୍ର କଲେଜରେ ଓଡ଼ିଆ ସାହିତ୍ୟ ସମିତି ଗଠନ କରି କବି ଶ୍ରୀ ରମାକାନ୍ତ ରଥଙ୍କୁ ନିମନ୍ତ୍ରଣ କରି ନେଇଥିଲେ । ଛାତ୍ରଛାତ୍ରୀମାନଙ୍କୁ ନିଜେ ଯାଇ ଡାକି ଆଣି ସେ ସଭାରେ ବସାଉଥିଲେ ଓ ସାହିତ୍ୟ ଆଲୋଚନା ପ୍ରତି ସେମାନଙ୍କୁ ଆକୃଷ୍ଟ କରାଉଥିଲେ ।

କେବଳ ସାହିତ୍ୟ ନୁହେଁ, କଳାପ୍ରତି ମଧ୍ୟ ଥିଲା ତାଙ୍କର ଗଭୀର ଅନୁରାଗ । ବନ୍ଧୁ ଡଃ ଦିନନାଥ ପାଠୀ ଓ ଅନ୍ୟ ଚିତ୍ରଶିଳ୍ପୀମାନଙ୍କ ବହୁ କାର୍ଯ୍ୟକ୍ରମରେ ସେ ଯୋଗ ଦେଉଥିଲେ । ଭୁବନେଶ୍ୱରରେ ଡଃ ଦିନନାଥ ପାଠୀ ଓ ଶିବରାମ ପାତ୍ରଙ୍କ ବନ୍ଧୁତା ସାହିତ୍ୟ ଓ ଚିତ୍ରକଳା ମଧ୍ୟରେ ଗୋଟିଏ ସେତୁବନ୍ଧ ଭଳି ସାହିତ୍ୟିକ ଓ ଚିତ୍ରଶିଳ୍ପୀମାନଙ୍କୁ ସମନ୍ୱିତ କରିବା ଦିଗରେ ସହାୟକ ହୋଇଥିଲା ।

୨୦୦୧ ମସିହାରେ ସ୍ୱାଧୀନତା ସଂଗ୍ରାମୀ ୰ବାଞ୍ଛାନିଧି ପଟ୍ଟନାୟକ (ମୋର ପିତା)ଙ୍କ ଜନ୍ମ ଶତବାର୍ଷିକୀ ପାଳନ ଅବସରରେ ମୁଁ ଶିବରାମ ବାବୁଙ୍କୁ ଅନୁରୋଧ କରିଥିଲି ପିତାଙ୍କ ଆତ୍ମଜୀବନୀ 'ମୋ କଥା'ର ସମୀକ୍ଷା ଲେଖିବା ପାଇଁ । ମୁଁ ଆଶା କରିନଥିଲି ଯେ ସେ ଏହି କାର୍ଯ୍ୟକୁ ଏତେ ନିଷ୍ଠାର ସହିତ ନେଇ ଓଡ଼ିଆ ସାହିତ୍ୟରେ ଅଦ୍ୟାବଧି ପ୍ରକାଶ ପାଇଥିବା ଆତ୍ମ ଜୀବନୀ ପରିପ୍ରେକ୍ଷୀରେ ଏକ ତୁଳନାତ୍ମକ ପ୍ରାମାଣିକ ପ୍ରବନ୍ଧ ଲେଖିବାର କଷ୍ଟ ସ୍ୱୀକାର କରିବେ ବୋଲି । ଏପରିକି ବହି ଛାପା ହେବା ପୂର୍ବ ପର୍ଯ୍ୟନ୍ତ ସେ ତାଙ୍କ ପ୍ରବନ୍ଧରେ କେଉଁଠି କିଛି ଉହ୍ୟ ରହିଯାଇଥିବା ତଥ୍ୟକୁ ସଂଗ୍ରହ କରି ସଂଯୋଗ କରିଥିଲେ । ତାଙ୍କର ଏହି ପ୍ରବନ୍ଧଟି ଏକ ଉଚ୍ଚକୋଟୀର ପୁସ୍ତକ ସମୀକ୍ଷା ଥିଲା ।

ଶିବରାମ ବାବୁ ମୋର ପିତାଙ୍କ ଆତ୍ମଜୀବନୀ ପାଠ କରି ଏତେ ଅନୁପ୍ରାଣିତ ହୋଇଥିଲେ ଯେ ତାଙ୍କର ଦେହାନ୍ତର ପୂର୍ବବର୍ଷ ଅନୁଷ୍ଠିତ ବାଞ୍ଛାନିଧି ପଟ୍ଟନାୟକଙ୍କ ୧୦୪ତମ ଜୟନ୍ତୀ ସଭାରେ ସ୍ୱତଃ ସେ ମୁଖ୍ୟ ଭୂମିକା ନେଇଥିଲେ । ସେ ଓ ତାଙ୍କ ସହଧର୍ମିଣୀ ଉଭୟେ ସଭାରେ ଆତ୍ମ ଜୀବନୀର ଅଂଶ ଓ କବିତା ପାଠ କରିଥିଲେ । ସେ ଗଭୀର ଆଗ୍ରହ ଓ ଉତ୍ସାହର ସହ ପ୍ରସ୍ତାବ ଦେଇଥିଲେ ଯେ ପରବର୍ତ୍ତୀ ବର୍ଷ ଜୟନ୍ତୀ ଉତ୍ସବ ବେଳକୁ ଗୋଟିଏ ସ୍ମୃତିଚାରଣ ପତ୍ରିକା ପ୍ରକାଶ କରାଯିବ ଓ ସେ ନିଜେ ତା'ର ସମ୍ପାଦନା କରିବେ । କିନ୍ତୁ ଦୁଃଖର କଥା ସେ ଆଉ ତା ପରବର୍ଷ ପର୍ଯ୍ୟନ୍ତ ଅପେକ୍ଷା ନକରି ଇହଲୀଳା ସମ୍ବରଣ କରିଥିଲେ ।

ଶିବରାମ ବାବୁଙ୍କ ଗଭୀର ଆଗ୍ରହ ଥିଲା ଦକ୍ଷିଣ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଉନ୍ନୟନ ବିଷୟରେ । ଦକ୍ଷିଣ ଓଡ଼ିଶା ଉନ୍ନୟନ ପରିଷଦ ଗଠିତ ହେବାପରେ ସେ ତା'ର ସଂସ୍କୃତି ସୁରକ୍ଷା ଉପ ସମିତିର ସଭ୍ୟ ଭାବରେ ଅନେକ କଳ୍ପନା ଓ ଯୋଜନାର ପ୍ରସ୍ତାବ

ଦେଇଥିଲେ । ସେ ଦିଗରେ ସେ ଆଶାତୀତ ଉତ୍ସାହ ପ୍ରଦର୍ଶନ କରି ଦକ୍ଷିଣ ଓଡ଼ିଶାର ଅବହେଳିତ ଦିଗ ବିଷୟରେ ଗଭୀର ଆବେଗ ପ୍ରକାଶ କରିଥିଲେ ।

ଶିବରାମ ବାବୁ ତାଙ୍କର ବହୁବିଧ କର୍ମରେ ବ୍ୟସ୍ତ ଥିବା ଭିତରେ କାହା ବଗିଚାରେ ଫୁଲଟିଏ ଫୁଟିଥିବା ଦେଖିଲେ ଅଟକି ଯାଆନ୍ତି ଓ ଫୁଲଚାରା ଓ ତାଙ୍କସବୁ ସଂଗ୍ରହ କରନ୍ତି । ଗଛଲତା ପ୍ରତି ଆଗ୍ରହ ତାଙ୍କ ବ୍ୟକ୍ତିତ୍ୱର ଏକ କୋମଳ ଓ କମନୀୟ ଅଭିବ୍ୟକ୍ତି ଥିଲା ।

ଶିବରାମ ବାବୁ ସ୍ୱଦେହରେ ନଥିଲେ ବି ମନେହୁଏ ସେ ଝୁଲାମୁଣି ଧରି ସାଇକଲ ଚଢ଼ି ଆସି ଆମ ଦୁଆର ମୁହଁରେ ପହଞ୍ଚି ଯାଉଛନ୍ତି ଏବଂ ତାଙ୍କ ଝୁଲାମୁଣିରୁ ଅଜାଡ଼ି ଦେଉଛନ୍ତି ଅବାରିତ ଅନ୍ତରଙ୍ଗ ସ୍ନେହ ଓ ଶୁଭେଚ୍ଛା ନିରନ୍ତର ଆମ ସମସ୍ତଙ୍କ ପାଇଁ ।

ମୃତ୍ୟୁ ଯାହାଙ୍କୁ ଆମ ହୃଦୟରୁ ନେଇ ପାରିନାହିଁ, ସେଇ ଅମ୍ଳାନ ଜୀବନ୍ତ ସ୍ମୃତିର ଅତି ଆପଣାର ଅନ୍ତରଙ୍ଗ ମଣିଷଟି ପାଇଁ ଅନ୍ତରର ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ।

ଏମ୍-୪୪,ଭୀମଟାଙ୍ଗୀ
ଭୁବନେଶ୍ୱର-୨

## ମୋର ପ୍ରିୟ ନା'ନା

ବିଶ୍ୱାମିତ୍ର ପାତ୍ର

ନା'ନା, ତୁମେ ଚାଲିଯିବାର ଏବେ ପ୍ରାୟ ବର୍ଷେ ହେଲାଣି । ମୋତେ ଏବେବି ଲାଗୁଛି ତୁମେ ଅଛ କିଛି ଦୂରରେ । ତୁମକୁ ଶେଷ ଥର ଯାହା ବମ୍ବେ ଏୟାର୍‌ପୋର୍ଟରେ ଦେଖିଥିଲି । ତୁମେ ଓ ଆମା ଆସିଥିଲ ମୋତେ ବିଦାୟ ଦେବାପାଇଁ । ତୁମେ କେତେ ଖୁସିଥିଲ ମୁଁ ଆମେରିକା ଆସୁଛି ବୋଲି । ତା ପୂର୍ବଦିନ ମୁଁ ଫ୍ଲାଇଟ୍‌ରେ ଆସିପାରିଲିନି ବୋଲି ଦୁଃଖ କଲାବେଳେ ସବୁ ଠିକ୍ ହୋଇଯିବ ବୋଲି ସାନ୍ତ୍ୱନା ଦେଇଥିଲ । ତୁମେ ଚାହୁଁଥିଲ ମୁଁ ଭାରତରେ ରହି ଚାକିରୀ କରେ । ତଥାପି ମୋ ଖୁସିରେ ତୁମେ ଖୁସି ଥିଲ ।

ପିଲାବେଳେ ଆମେ ସମସ୍ତେ ତୁମକୁ ବହୁତ ଡରୁଥିଲୁ ଓ ଭଲ ବି ପାଉଥିଲୁ । ଆମେ ଭୁଲ କଲେ ଆମକୁ ଚେତେଇ ଦେବାରେ ହେଳା କରୁନଥିଲ । ସର୍ବଦା କହୁଥିଲ ଉଚ୍ଚାଭିଳାଷ ରଖ ଓ ତା'ସହ କଠୋର ପରିଶ୍ରମ କର । ଆମ ଆଳସ୍ୟପରାୟଣତା ସହ୍ୟ କରୁନଥିଲ । ଆମମାନଙ୍କ ହସ୍ତାକ୍ଷର ଯେମିତି ସୁନ୍ଦର ହୁଏ ସେଥିପ୍ରତି ଧ୍ୟାନ ଦେଉଥିଲ । ଯଦିଓ ଆମେ ସେତେବେଳେ ତୁମ ଉପରେ ମନେମନେ ଖୁବ୍ ରାଗୁଥିଲୁ, ପରେ ସେହି ହସ୍ତାକ୍ଷର ନେଇ କେହି ପ୍ରଶଂସା କଲେ ତୁମକୁ ମନେ ପକାଉଥିଲୁ । ଆମେ କେମିତି ଭଲ ପଢ଼ିବୁ ଓ ଭଲ ମଣିଷ ହେବୁ ସେଥିପାଇଁ ବହୁତ ଯତ୍ନ ନେଉଥିଲ । ବହି ସଂଗ୍ରହ କରି ଘର ଭରି ଦେଉଥିଲ । ଆମମାନଙ୍କୁ ଭଲ ବହି ପ୍ରଚୁର ପଢ଼ିବାପାଇଁ ଉତ୍ସାହିତ କରୁଥିଲ । ଆମ ଘରେ ଥିବା ବହି ଦେଖି ସମସ୍ତେ କହୁଥିଲେ ଯେ ଆମ ଘର ଗୋଟିଏ ମିନି ଲାଇବ୍ରେରୀ । ସମସ୍ତେ ଧନସମ୍ପତ୍ତି ନେଇ ଗର୍ବ କଲାବେଳେ ବହି ତୁମର ସବୁଠୁ ମୂଲ୍ୟବାନ ସମ୍ପତ୍ତି ଥିଲା । ଖେଳ ହେଉ ବା ଭାଷଣ ହେଉ ସବୁ ପ୍ରତିଯୋଗିତାରେ ଭାଗ ନେବାପାଇଁ ଆମକୁ ଉତ୍ସାହିତ କରୁଥିଲେ । ଯେବେ ଆମକୁ ପ୍ରାଇଜ୍ ମିଳୁନଥିଲା ତୁମେ ଗେଲ କରିଦେଉଥିଲ ।

ଗୁଣପୁରରେ ଆମେ ଭାଇଭଉଣୀ ନିଜ କ୍ଲାସ୍‌ରେ ପ୍ରଥମ ବା ଦ୍ୱିତୀୟ ହେଉଥିଲୁ । ସେ ସମୟରେ ଆମେ ଭାରି ଟିଭି ପ୍ରିୟ ଥିଲୁ । ତେଣୁ ତୁମେ ଗୋଟିଏ ରଙ୍ଗୀନ୍ ଟିଭିପାଇଁ ବରାଦ ଦେଇଥିଲ । ଟିଭି ମୁନିଗୁଡ଼ାରୁ ଆସିଥାନ୍ତା, କିନ୍ତୁ ଆମେ ସମସ୍ତେ ପରୀକ୍ଷାରେ ଖରାପ କଲୁ ଓ ଆମର ପୋଜିସନ୍ ଖସିଗଲା । ତତ୍‌କ୍ଷଣାତ୍ ତୁମେ ମୁନିଗୁଡ଼ା ଜଣାଇଦେଲ ଯେ ଆମର ଆଉ ଟିଭି ଦରକାର ନାହିଁ । ତା'ପରେ ଆମେ ପ୍ରାୟ ୩/୪ ବର୍ଷ ପର୍ଯ୍ୟନ୍ତ ଟିଭି କିଣିବା କଥା ଉଠେଇ ନାହୁଁ । ତୁମେ ଚାହୁଁନଥିଲ ଯେ ଟିଭି ଦେଖି ଆମେ ଆହୁରି ପରୀକ୍ଷାରେ ଖରାପ କରୁ । ସତକୁ ସତ ଆମେ ପରେ ସବୁ ପରୀକ୍ଷାରେ ଭଲ କଲୁ ।

ପିଲାବେଳେ ମୋତେ ନେଇ ତୁମେ ବହୁତ ଜାଗା ବୁଲିଥିଲ ଓ ବହୁତ ବିଖ୍ୟାତ ବ୍ୟକ୍ତିଙ୍କ ସହ ପରିଚୟ କରାଇଥିଲ । ସବୁଠୁ ସ୍ମରଣୀୟ ଘଟଣା ଥିଲା ଯେବେ କଟକ ଆମେ ଯାଇଥିଲେ ବାରବାଟୀ ଷ୍ଟାଡିୟମ୍ ଓ ମହାନଦୀ ପ୍ରଥମ ଥର ପାଇଁ ଦେଖିଥିଲି । ଜ୍ଞାନମଣ୍ଡଳ ଥିଲା ମୋର ପ୍ରିୟ ପୁସ୍ତକ ମାଳା । ମୋତେ ତୁମେ ସେଠି ପରିଚୟ କରାଇଥିଲ ଜ୍ଞାନ ମଣ୍ଡଳର ରଚୟିତା ବିନୋଦ କାନୁନ୍‌ଗୋଙ୍କ ସହ । ମୋତେ ଲାଗିଥିଲା ମୁଁ ଯେମିତି ଦ୍ୱିତୀୟ ଗାନ୍ଧିଙ୍କୁ ଦେଖୁଛି । ଫେରିଲାବେଳେ ସେ ମୋତେ ଆଶୀର୍ବାଦ ସହ କିଛି ବହି ଦେଇଥିଲେ । ବହୁ ବର୍ଷ ପର୍ଯ୍ୟନ୍ତ ମୁଁ ସେସବୁ ସାଇତି ରଖିଥିଲି ଓ ସାଙ୍ଗମାନଙ୍କ ଆଗରେ ବଡ଼େଇ ବି କରୁଥିଲି । ମୁଁ ସବୁଠୁ ଖୁସି ଓ ବିସ୍ମିତ ହେଉଥିଲି ସେଇ ବିଖ୍ୟାତ ବ୍ୟକ୍ତିମାନଙ୍କର ତୁମ ପ୍ରତି ଗଭୀର ସ୍ନେହ ଦେଖି ।

ସତ୍ୟବାଦୀତା, ନିର୍ଭୀକତା ଓ ଅଧ୍ୟବସାୟ ଉପରେ ତୁମେ ବହୁତ ଗୁରୁତ୍ୱ ଦେଉଥିଲ । ବଡ଼ଲୋକଙ୍କ ଜୀବନୀ ପଢ଼ି ସେମାନଙ୍କ ଦ୍ୱାରା ଆମେ କେମିତି ଅନୁପ୍ରାଣିତ ହେବୁ ତୁମେ ନିରନ୍ତର ଚେଷ୍ଟା କରୁଥିଲ । ମୁଁ ବାହାରେ ରହି ପଢ଼ିଲାବେଳେ ତୁମେ ଦୀର୍ଘ ଉପଦେଶମୂଳକ ଚିଠି ଦେଉଥିଲ ଯାହା ମୁଁ ପରେ ବାରମ୍ବାର ପଢ଼ିଛି ଓ ସାଇତି ରଖିଛି । ତୁମ ମତରେ ପଠନ ଓ ଭ୍ରମଣ ଛାତ୍ରଜୀବନରେ ଏକାନ୍ତ ଆବଶ୍ୟକ । ସରଳ ଜୀବନଯାପନରେ ତୁମେ ବିଶ୍ୱାସ କରୁଥିଲ ।

ଆମେ ନବରଙ୍ଗପୁରରେ ଥିଲାବେଳେ ଥରେ କିଛି ଛାତ୍ର ମଦପିଇ ଆମ ଘରକୁ ଆସିଥିଲେ । ସେମାନଙ୍କ ସାଙ୍ଗ ବା ସଂପର୍କୀୟ କାହାକୁ ତୁମେ ପରୀକ୍ଷାରେ ପାଶ୍ କରେଇ ଦେବାପାଇଁ ସେମାନେ ଚାହୁଁଥିଲେ । ମୁଁ ବହୁତ ଡରିଯାଇଥିଲି କାରଣ ସେମାନେ ପ୍ରବଳ ହଟଗୋଳ କରୁଥିଲେ ତୁମେ କିନ୍ତୁ ସେମାନଙ୍କୁ ବସାଇ ଧୀରେ ସୁସ୍ଥେ ବୁଝାଇ ଶାନ୍ତ କରିଦେଇଥିଲ । ସେମାନେ ଚୁପ୍‌ଚାପ ଫେରିଯାଇଥିଲେ । ସେତେବେଳେ ମୁଁ ତୁମଠି ତିଳେ ମାତ୍ର ଅଶ୍ୱସ୍ତି ଭାବ କିମ୍ବା ବ୍ୟସ୍ତତା ଦେଖିବାକୁ ପାଇ ନଥିଲି । ସେଦିନ ମୁଁ ତୁମର ଛାତ୍ରବତ୍ସଳତା ଓ ଦୃଢ଼ତାର ତାରିଫ୍ ନକରି ରହିପାରିନଥିଲି ।

ନବରଙ୍ଗପୁରରେ ଥିଲାବେଳେ ତୁମେ ଅତି ସୁନ୍ଦର ବଗିଚା ବନେଇଥିଲ । ଗାଇମାନେ ଯେପରି ଗଛ ଖାଇ ନଯାନ୍ତି ସେଥିପାଇଁ ଫୁଲଗଛର ବାଡ଼ କରିଥିଲ । ବର୍ଷା ସମୟରେ ପଡ଼ିଶା ଘର ଗୁହାଳରୁ ଆମ ବାରିକୁ ପାଣି ନଆସିବାପାଇଁ ଛୋଟ ହିଡ଼ଟିଏ ତିଆରି କରିଥିଲ । ପଡ଼ିଶା ଘର ମଉସା ତାହାକୁ ନେଇ ପ୍ରବଳ ଗଣ୍ଡଗୋଳ କରିଥିଲେ ଓ ଅକଥ୍ୟ ଭାଷାରେ ଗାଳି ଦେଇଥିଲେ । କିନ୍ତୁ ତୁମେ ତାଙ୍କୁ କିଛି କଟୁ କଥା କହିନଥିଲ ଓ ବୁଝେଇବାରେ ଲାଗିଯାଇଥିଲ । ମୁଁ ସେତେବେଳେ ଖୁବ୍ ରାଗିଥିଲି ଓ ଭାବୁଥିଲି ତୁମେ

ଚାହିଁଥିଲେ ତାଙ୍କୁ ଉଚିତ୍ ଶିକ୍ଷା ଦେଇପାରିଥାନ୍ତ । କିଛିଦିନ ପରେ ସବୁକିଛି ସ୍ୱାଭାବିକ ହୋଇଯାଇଥିଲା । ତୁମେ ଜାଣିଥିଲ କାହା ସହ କଳିଗୋଳ କରି କେହି ବଡ଼ ହୋଇଯାଏନି । ବରଂ ସମସ୍ତଙ୍କ ସହ ମିଳିମିଶି ଓ ସୌହାର୍ଦ୍ଦ୍ୟର ସହ ରହିବାରେ ବିଶ୍ୱାସ କରୁଥିଲ ।

ଥରେ ତୁମେ, ଆମା ଓ ମୁଁ ଭଞ୍ଜନଗରରୁ ବୋଲଗଡ଼ ଫେରୁଥିଲେ । ବସ୍‌ରେ ପ୍ରବଳ ଗହଳି ଥିଲା କିନ୍ତୁ ସୌଭାଗ୍ୟକୁ ଆମକୁ ସିଟ୍ ମିଳିଯାଇଥିଲା । ଜଣେ ବୁଢ଼ୀ ବହୁତ ସମୟ ପର୍ଯ୍ୟନ୍ତ ଠିଆ ହୋଇ କଷ୍ଟ ପାଉଥିଲେ । ମୁଁ ତାହା ଦେଖି ନଦେଖିଲା ଭଳି ରହିଥିଲି । ତୁମେ ତତ୍‌କ୍ଷଣାତ୍ ନିଜ ସିଟ୍ ଛାଡ଼ିଦେଇଥିଲ ତାଙ୍କ ପାଇଁ । ମୋତେ ଖୁବ୍ ଖରାପ ଲାଗିଲା ମୋ ସିଟ୍ ଛାଡ଼ିଦେଲି, କିନ୍ତୁ ତୁମେ ମୋତେ ବସିବାପାଇଁ କହିଲ । ନିଜେ ପୂରା ରାସ୍ତା ବସ୍‌ରେ ଠିଆହୋଇ ରହିଥିଲ । ସେ ଘଟଣା ବିଷୟରେ ଭାବିଲେ ଏବେ ବି ମୋତେ ଲାଜ ମାଡ଼େ ଓ ଭାବେ ମୁଁ ସେଦିନ ପ୍ରଥମେ ସିଟ୍‌ଟି ଛାଡ଼ିଦେଇଥାନ୍ତି କି ! ତୁମର ପରୋପକାର ଓ ସେବା ମନୋଭାବ ଯୋଗୁଁ ବହୁ ଜଣଙ୍କୁ ଆପଣାର କରି ନେଇଥିଲ ।

ବହି ଓ ଗଛ ତୁମର ଅତି ପ୍ରିୟ ଥିଲେ । ଏ ଦୁଇଟି ସଂଗ୍ରହ କରିବା ଓ ବାଣ୍ଟିବା ତୁମର ଯେମିତି ନିଶା ଥିଲା । ଏବେବି ବହୁ ଜଣ ତୁମେ ଦେଇଥିବା ବହି ଓ ଗଛଯୋଗୁଁ ତୁମକୁ ଝୁରୁଥିବେ । ଫୋନ୍‌ରେ କଥାହେଲାବେଳେ କହୁଥିଲ ମୋର ଆମେରିକା ରହଣିର ଅନୁଭୂତି ଲେଖିବାକୁ ଓ ଭଲ ଫଟୋ ଉଠାଇବାକୁ । ମୋର ଡିଜିଟାଲ୍ କ୍ୟାମେରା କିଣିବା ଶୁଣି ପଚାରିଥିଲ ଯେ ସେଥିରେ ବହି ଅକ୍ଷରର ଫଟୋ ନେଇ ହେବ କି ? ତୁମେ ଚାହୁଁଥିଲ ଯେଉଁ ଗୁରୁତ୍ୱପୂର୍ଣ୍ଣ ଦୁର୍ଲ୍ଲଭ ପୁରୁଣା ବହିପତ୍ରର ଜେରକ୍ସ କରିହେବନି ତାର ଫଟୋ ନେବାପାଇଁ । କିନ୍ତୁ ମୋର ଭାରତ ଯିବା ପୂର୍ବରୁ ତୁମେ ଚାଲିଗଲ । ଏବେବି ମୋତେ ଲାଗେ ତୁମେ ଯେମିତି କୌଣସି ମିଟିଂ ପାଇଁ କୁଆଡ଼େ ଯାଇଛ । ତେଣୁ ମୁଁ ତୁମ ସହ କଥା ହେଇପାରୁନି । ଭଗବାନଙ୍କୁ ମୁଁ ପ୍ରାର୍ଥନା କରୁଛି ତୁମେ ଯେଉଁଠି ବି ଥାଅ ଶାନ୍ତିରେ ଥାଅ ଓ ତୁମର ଆଶୀର୍ବାଦ ଆମ ଉପରେ ସର୍ବଦା ରହୁ ।

ଲୁଇସିଆନା ଷ୍ଟେଟ୍ ୟୁନିଭର୍‌ସିଟୀ,ଆମେରିକା

## ବନ୍ଧୁ ଶିବରାମ ବାବୁ-ଏକ ଅମ୍ଳାନ ପ୍ରତିଭା

ଡକ୍ଟର କିଶୋରଚନ୍ଦ୍ର ଦାସ

୧୯୭୫ ମସିହା, ମୁଁ ଯୋଗଦେଇଥାଏ ପାରଳାଖେମୁଣ୍ଡିର ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ । କିଛି ଦିନ ପରେ ମୋ ସହିତ ପରିଚିତ ହେଲେ ଅଧ୍ୟାପକ ବି. ଶିବରାମ ପାତ୍ର । ପ୍ରାୟ ୩୦ବର୍ଷ ତଳୁ ସେ ଆମ ପରିବାର ସହିତ ଅତି ଅନ୍ତରଂଗ ହୋଇଗଲେ । ସେ ଥିଲେ ବନ୍ଧୁପ୍ରେମୀ ଜଣେ ସ୍ନେହୀ, ସହାନୁଭୂତିଶୀଳ, ଦରଦୀ ମଣିଷ । ମୋର ବାହାଘର ପରେ ବୋଉ ଓ ନବବିବାହିତା ପତ୍ନୀ ସହ ସେଠାରେ ଥାଏ । ହଠାତ୍ ଦିନେ ବନ୍ଧୁ ପାତ୍ର ମହୋଦୟ, ଆମ ଘରେ ପହଞ୍ଚିଲେ । କ୍ରମେ ଉଭୟ ପରିବାରର ବନ୍ଧନ ସ୍ନେହ ଓ ପ୍ରେମ ରଜ୍ଜୁରେ ନିବିଡ଼ ଭାବରେ ବାନ୍ଧି ହୋଇଯାଏ ।

ସେ ଯେଉଁଠି ରହିବେ, ସେଠାରେ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି କରିବେ । ଏହା ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟ । ତାଙ୍କର ସାହିତ୍ୟ ପ୍ରୀତି ଓ ସାଙ୍ଗଠନିକ ଦକ୍ଷତା ଥିଲା ଅନନ୍ୟ । ବଂଶଧାରା ନଦୀ କୂଳରେ ଅବସ୍ଥିତ ଗୁଣପୁରରେ ସେ ଗଢ଼ିଥିଲେ 'ବଂଶଧାରା ସାହିତ୍ୟ ସମାଜ ।' ସେଇ ସାହିତ୍ୟ ସମାଜର ମୁଖପତ୍ର 'ବଂଶଧାରା'ତାଙ୍କ ସଂପାଦନାରେ ପ୍ରକାଶିତ ହେଉଥିଲା, ଏଠାରେ ଗୋଟିଏ ଘଟଣା ବର୍ଣ୍ଣନା କରିବା ଉଚିତ-

ବନ୍ଧୁ ଶିବରାମ ପାତ୍ରଙ୍କ ନିମନ୍ତ୍ରଣରେ ପଦ୍ମଶ୍ରୀ ଡଃ ସତ୍ୟନାରାୟଣ ରାଜଗୁରୁ ଏବଂ ମୁଁ ପଦ୍ମପୁରର ଏକ ପ୍ରାଚୀନ ମନ୍ଦିରକୁ ଯାଇଥିଲୁ । ଡଃ.ରାଜଗୁରୁ ଜଣେ ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ । ସେ ଅନେକ ଶିଳାଲିପିର ନିର୍ଭୁଲ ପାଠୋଦ୍ଧାର କରିଛନ୍ତି । ଅନେକ ପ୍ରାଚୀନ ଶିଳାଲିପିରେ ଲିପିବଦ୍ଧ ହୋଇଥିବା ଅକୁହା କଥାକୁ ଆମକୁ କହିଛନ୍ତି । ତାଙ୍କର ପ୍ରଚେଷ୍ଟାରେ ଆମ ଶିଳାଲିପି ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ପାଇଛି । ପଦ୍ମପୁରରେ ସେହି ମନ୍ଦିରରେ କିଛିଟା ବ୍ରାହ୍ମୀଲିପିର ଶିଳାଲିପି ଥିଲା । ଡଃ.ରାଜଗୁରୁ ସେହି ଲିପି ଏବଂ ସେହି ସ୍ଥାନକୁ ତନ୍ନ ତନ୍ନ କରି ଅନୁଧ୍ୟାନ କରି ତାହା ଏକ ଶୈବପୀଠ ଏବଂ ତାର ଅନେକ ବୈଶିଷ୍ଟ୍ୟ ସଂପର୍କରେ ବିବରଣୀ ଦେଇଥିଲେ । ଫେରିବାବେଳେ ସନ୍ଧ୍ୟାରେ ଶ୍ରୀଯୁକ୍ତ ପାତ୍ରଙ୍କ ପ୍ରତିଷ୍ଠିତ 'ବଂଶଧାରା ସାହିତ୍ୟ ସମାଜ'ରେ ଡଃ.ରାଜଗୁରୁ ମୁଖ୍ୟ ଅତିଥି ଏବଂ ମୁଁ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲୁ । ସେଦିନ ପଦ୍ମପୁରର ସେହି ମନ୍ଦିରର ବୈଶିଷ୍ଟ୍ୟ ଏବଂ ଆମ ସଂସ୍କୃତି ସଂପର୍କରେ ଏକ ତାତ୍ତ୍ୱିକଭାଷଣ ସେ ପ୍ରଦାନ କରିଥିଲେ । ଏଠାରେ ଶିବରାମ ପାତ୍ରଙ୍କର ଆଗ୍ରହ, ଉତ୍ସାହ ଓ ସଂସ୍କୃତି ପ୍ରୀତିର ସାର୍ଥକ ପରିଚୟ ମିଳେ । ସେ ନିଜେ ଗାଡ଼ିକରି ଆମକୁ ନେବା ସହିତ ନିକଟସ୍ଥ  ମନ୍ଦିରର ଶିଳାଲିପି ସଂପର୍କରେ ଆଲୋକପାତ ତଥା ତାଙ୍କ ଗଠିତ ସାହିତ୍ୟ ସମାଜର ଅଧିକ ପ୍ରତିଷ୍ଠା ପାଇଁ ନିଶ୍ଚିତ ଭାବରେ ଯଥାର୍ଥ ପ୍ରଚେଷ୍ଟା ଏକ ଅଭିନନ୍ଦନୀୟ ପଦକ୍ଷେପ ।

ସେତିକିବେଳେ ଡଃ. ସତ୍ୟନାରାୟଣ ରାଜଗୁରୁ ତାଙ୍କ ଜୀବନୀ ଡାକୁଥାନ୍ତି ଓ ମୁଁ ତାହା ଲେଖୁଥାଏ । ତାର ନକଲ ମୋ ପାଖରେ ଥାଏ । ବନ୍ଧୁ ଶିବରାମ ପାତ୍ର ସେପରି କାମଦେଖି ମୋତେ ଅନେକ ସାଧୁବାଦ ଜଣାଇଥିଲେ । ସେଇ ଜୀବନୀରୁ ଅନେକ ତଥ୍ୟ ସଂଗ୍ରହ କରି ତାହା ଡଃ. କୁଞ୍ଜବିହାରୀ ଦାଶଙ୍କୁ ଦେଇଥିଲେ, ଯାହା ଫଳରେ ପ୍ରକାଶ ପାଇଥିଲା 'ଚରିତ ଓ ଆତ୍ମଚରିତ' ପୁସ୍ତକ । ଏଠାରେ ପାତ୍ର ମହୋଦୟଙ୍କର ସାହିତ୍ୟପ୍ରୀତି ଓ ଡଃ.ରାଜଗୁରୁଙ୍କ ପରି ଶ୍ରେଷ୍ଠ ବ୍ୟକ୍ତିଙ୍କର ନାମ, ଯଶ ପ୍ରଚାର କରାଇବା ପାଇଁ ବ୍ୟାକୁଳତା ସହଜରେ ଅନୁମେୟ ।

ମୁଁ ୧୯୯୦ରେ ଯୋଗଦେଲି ବିକ୍ରମଦେବ କଲେଜ, ଜୟପୁରରେ । କିଛି ଦିନ ପରେ ଶିବରାମ ପାତ୍ର ମୋତେ ଜୟପୁରରେ ଦେଖାକରନ୍ତି । ପୁରୁଣା ବନ୍ଧୁତ୍ୱ ପୁଣି ନିବିଡ଼ ହୁଏ । ସେତେବେଳେ ସେ ଥାନ୍ତି ନବରଙ୍ଗପୁର ମହାବିଦ୍ୟାଳୟରେ  । ଫକୀରମୋହନଙ୍କ ୧୫୦ ତମ ଜୟନ୍ତୀ ଅବସରରେ ତାଙ୍କ 'ଓଡ଼ିଆ ସାହିତ୍ୟ ସମାଜ'ର ବାର୍ଷିକ ଉତ୍ସବରେ ମୋତେ ମୁଖ୍ୟବକ୍ତା କରି ଏକ ଲିଖିତ ପ୍ରବନ୍ଧ ପାଠ କରିବାକୁ କହନ୍ତି । ବିଷୟର ନାମ ସେ ନିର୍ବାଚନ କରିଥିଲେ । 'ବ୍ୟାସକବିଙ୍କ ରାଜନୀତି ଓ ସାହିତ୍ୟ' । ସବୁବେଳେ ତାଙ୍କ ଚିନ୍ତାଧାରା ପାରମ୍ପରିକ ନୁହେଁ ବରଂ ଅନେକଟା ନୂତନଧର୍ମି, ସ୍ୱତନ୍ତ୍ର । ପ୍ରବନ୍ଧଟି କିଛିଟା ଅଲଗା ଓ ସ୍ୱତନ୍ତ୍ର

ହୋଇଥିବାରୁ, ମୁଁ ତାହାକୁ 'ଭିନ୍ନ ସ୍ୱାଦରୁ ଫକୀରମୋହନ' ନାମ ଦେଇ ପ୍ରକାଶ କରିଥିଲି । ତେଣୁ କିଛି ନୂଆ, କିଛି ଅଲଗା, ଅନ୍ୟଠାରୁ ପୃଥକ କରିବା-ଏହା ଥିଲା ବନ୍ଧୁଙ୍କର ଦୃଷ୍ଟିକୋଣ ।

ନୂଆ ନୂଆ ବିଶିଷ୍ଟ ଲୋକଙ୍କ ସହ ମୁଁ ତାଙ୍କରି ଯୋଗୁ ମିଳିତ ହେବାର ସୁଯୋଗ ପାଇଛି । ଏପରିକି ତାଙ୍କ ଖଦଡ଼ ପ୍ରୀତି, ପଞ୍ଜାବୀ ପ୍ରେମ ମୋତେ ସଂକ୍ରମିତ ହୋଇଛି । ତାଙ୍କ ସହିତ ଯାଇ ଖଦୀ ଭଣ୍ଡାରରୁ ଅନେକ ଜିନିଷ ମୁଁ କିଣିଛି । ସେଠି ଖଦୀ ଭଣ୍ଡାରର ମାଲିକ ଥାଆନ୍ତି, ସେଠିକାର, ସର୍ବୋଦୟ ପ୍ରତିଷ୍ଠାତା ୰ବୃନ୍ଦାବନ ଚନ୍ଦ୍ର ଜେନା । ସେ ମଧ୍ୟ ମାର୍‌ମୁନିଂ ଆଶ୍ରମର ପ୍ରତିଷ୍ଠାତା । ପରେ ସେହି ଆଶ୍ରମର କନ୍ୟାଶ୍ରମ, ବାଳାଶ୍ରମ ସହିତ ମୁଁ ଅଧିକ ଭାବରେ ଜଡ଼ିତ ହୋଇଛି । କିନ୍ତୁ ପ୍ରଥମେ ବନ୍ଧୁ ଶିବରାମବାବୁହିଁ ମୋତେ ନେଇ ଯାଇଥିଲେ । ସେହି ମହାନ୍ ତୀର୍ଥକ୍ଷେତ୍ରକୁ । ସେଇ ପରିବାରର ଜଣେ ଅତି ଅନ୍ତରଙ୍ଗ ସଦସ୍ୟ ଥିଲେ ବନ୍ଧୁ ପାତ୍ର । ଅନେକ ସମୟରେ ସିଏ ସେଇ ପରିବାରରେ ଅବସ୍ଥାନ କରୁଥିଲେ ।

ଜୟପୁରରେ ଅନେକଥର ସେ ଆମଘରର ଅତିଥି ହୁଅନ୍ତି । ଯଦି ଆମିଷ ତରକାରୀ, ତା ହେଲେ ତାଙ୍କର ଆନନ୍ଦ କହିଲେ ନସରେ । କିନ୍ତୁ ହଠାତ୍ ଥରେ, ମୁଁ ଆଶ୍ଚର୍ଯ୍ୟ ହେଲି, ସେ ଆମିଷ ଛାଡ଼ିଦେଇଛନ୍ତି । କାରଣ ସ୍ୱରୂପ କହିଲେ - ଥରେ କେତେଜଣ ଜୈନ ସାଧୁ ଓ ସାଧ୍ୱୀ ତାଙ୍କ ଘରକୁ ଯାଇଥିଲେ । ତାଙ୍କର ଆତିଥ୍ୟ ପାଇବା ପରେ, ସେମାନେ କହିଥିଲେ - 'ଆମ ପାଇଁ ଗୋଟାଏ କଥା କରିପାରିବେ ?'' ଉତ୍ତରରେ ବନ୍ଧୁ କହିଥିଲେ-'ହଁ', 'ଫଳରେ ତାଙ୍କୁ ତାଙ୍କର ଏକ ପ୍ରିୟ ବସ୍ତୁକୁ ଛାଡ଼ିବାକୁ ପଡ଼ିଥିଲା, ତାହା' ଆମିଷ ଭୋଜନ । ସତରେ କେତେ ନିଷ୍ଠା, କେତେ ତ୍ୟାଗ, କେତେ ସାଧନା ଓ ଧର୍ମପ୍ରେମ ।

ଥରେ ମୁଁ ସପରିବାର ନିମନ୍ତ୍ରିତ ହୋଇ ଯାଇଥାଏ ତାଙ୍କ ନବରଙ୍ଗପୁର ଭଡ଼ାଘରକୁ । ସେଠାରେ ଖାଦ୍ୟ ମଧ୍ୟରେ ସୁଆଁ ଚାଉଳରେ ଅତି ଆଗ୍ରହର ସହିତ ତିଆରି କରାଯାଇଥିବା ଖିରୀ ଆମମାନଙ୍କ ପାଇଁ ଥିଲା, ଏକ ନୂଆ ଅନୁଭୂତି ଓ ତାହା ମନେ ରହିବ ସବୁଦିନ । ପରେ ପରେ ସେ ବୋଲଗଡ଼ ବଦଳି ହୋଇଗଲେ । ବେଳେବେଳେ ତାଙ୍କଠାରୁ ଚିଠି ପାଏ, ସେଥିରେ ଅନୁରୋଧ ଥାଏ, ବିକ୍ରମଦେବ କଲେଜର ଲାଇବ୍ରେରୀର କିଛିଟା ଦୁର୍ମୂଲ୍ୟ ତଥା ପୁରୁଣା ବହିର ଜେରକ୍ସ ନକଲ ପାଇଁ, ଖରା ଛୁଟିରେ ଦେଖାହୁଏ ଏବଂ କେତେ କେତେ ବିଷୟରେ ଆଲୋଚନା ଚାଲେ ।

ହଠାତ୍ ୨୦୦୩ ମସିହାରେ +୨ ଖାତା ଦେଖିବା ପାଇଁ ସେ ଜୟପୁରରେ ପହଞ୍ଚନ୍ତି । ସାଙ୍ଗରେ ଥାଏ ତିନି କାଗଜ ପେଟି ବହି । ତାହା 'ନୀଳକଣ୍ଠ ସ୍ମୃତି ସଂସଦ' ଆନୁକୂଲ୍ୟରେ ପ୍ରକାଶିତ ହୋଇଥିବା ପ୍ରାୟ ୧୦/୧୨ ଖଣ୍ଡ ଭିନ୍ନ ଭିନ୍ନ ପୁସ୍ତକ । ଯାର ଅନେକ ସେଟ୍ ସେ ନେଇଥାନ୍ତି । ସେତେବେଳେ ମୋ ପିଲାମାନେ କଟକ ଯାଇଥାନ୍ତି । ତେଣୁ ଆମ ଘରେ ତାଙ୍କର ଏଗାର ଦିନ ଅବସ୍ଥାନ ଫଳରେ ଅନ୍ତରଙ୍ଗ ଆସର ଗଢ଼ି ଉଠେ । ହାତରେ ରୋଷାଇ କରି ଖାଇବା ବେଶ୍ ଜମେ । କେତେ ଗପ, ବେଳେ ବେଳେ କେତେ ରାତି ହୋଇଯାଏ । ତା ସହିତ ବନ୍ଧୁ ହରିଶଙ୍କର ମିଶ୍ର ଆମ ଗହଣରେ ୨ଟି ରାତି କଟାନ୍ତି । ଆସର ଆହୁରି ଜମିଯାଏ । ସନ୍ଧ୍ୟାରେ ବିଭିନ୍ନ ହୋଟେଲରେ ଜଳଖିଆ ଖିଆ,ରାତି ଓ ଦିନ ରୋଷାଇ, କେତେଗପ, ଏପରି ନିବିଡ଼ ସାନ୍ନିଧ ବୋଧହୁଏ ପୂର୍ବରୁ ମିଳି ନଥିଲା । ବନ୍ଧୁଦ୍ୱୟ ମୋର ଘର ସଜାଡ଼ିବା ପାଇଁ ମୋତେ ଏକ ବଡ଼ ଷ୍ଟିଲ ର୍‌ୟାକ କିଣାଇ ତାଙ୍କୁ

ନିଚ୍ଛେ କଣ୍ଟା ମାରି ଟାଙ୍ଗିବା, ରୋଷାଇଘର ସଫା ସୁତୁରାକରି, ତା'ର ଭୂଗୋଳ ବଦଳାଇ ଏକ୍‌ବାର ପରିଚ୍ଛନ୍ନ ଓ ସୁସଜ୍ଜିତ କରିଦେବା ଫଳରେ ପରେ ଶ୍ରୀମତୀ ଆସି ଆଶ୍ଚର୍ଯ୍ୟ ହେବା ସହ ପାତ୍ରସାର ଓ ହରିଶଙ୍କର ବାବୁଙ୍କୁ ଅନେକ ଅନେକ ବଧେଇ ଜଣେଇଥିଲେ ମନେ ମନେ । ସେତେବେଳେ ସାଙ୍ଗରେ ନେଇଥିବା ବହିଗୁଡ଼ିକ ସେ ବିଭିନ୍ନ ସ୍କୁଲ, କଲେଜ, ଅନୁଷ୍ଠାନ ତଥା ଯୋଗ୍ୟ ଆଗ୍ରହୀ ବ୍ୟକ୍ତିଙ୍କୁ ଦାନ କରିଥିଲେ ।

ସେ ଏକାମ୍ର କଲେଜକୁ ଆସିଥାନ୍ତି । ମୁଁ ରେଭେନ୍‌ସାରେ । ଦିନେ ତାଙ୍କ ଗୌରୀନଗର ଘରକୁ ଗଲି । ସେଠାରେ ରାତିରେ ରହଣି, ସକାଳେ ତାଙ୍କ ବଗିଚାର ଫୁଲ, ଫଳଦେଖା, ବିଭିନ୍ନ ଗଛର ବିବରଣୀ ଶୁଣା, କୁନ୍ଦୁରି-ତୋଳା, କଇମୀ ପାଚିଲା ଆମ୍ବ ତୋଳି ଖିଆ, କୁନ୍ଦୁରି ନେଇ ବନ୍ଧୁ ଲମ୍ବୋଦର ବାବୁଙ୍କ ଘରେ ଉଭୟେ ପହଞ୍ଚିବା ଓ ଗପର ଆସର, ବହୁତ ଆନନ୍ଦ ଦେଲା । ମୋ ପାଇଁ ଅନେକ ଆଡ଼େ ସେ ଜମି ଦେଖୁଥିଲେ, କିଣିବାପାଇଁ । ଦିବ୍ୟ ବିହାରରେ ମୋର ଜମି କିଣା ହେବା ପରେ ସେ କହିଥିଲେ, ଘର କଲେ ଗଛ ଲଗାଇବା ତାଙ୍କର ଦାୟିତ୍ୱ । ପ୍ରକୃତରେ ସେ ଥିଲେ ବନ୍ଧୁପ୍ରିୟ, ବହିପ୍ରିୟ ଓ ଗଛପ୍ରିୟ ।

ଫେବୃୟାରୀ ୨୭ ତାରିଖ ରବିବାର । ସକାଳ ଭ୍ରମଣରେ ୫ଟାରୁ ୬ଟା ପର୍ଯ୍ୟନ୍ତ ଯୋଡ୍ରା ଆନିକଟ ଆଡ଼େ ଯାଇ ପୁଣି ଟିକିଏ ଗଡ଼ି ପଡ଼ିଥାଏ ବିଛଣାରେ । ହଠାତ୍ ୭ଟା ବେଳକୁ ଫୋନ । ତାଙ୍କ ଝିଅ ଶୋଭନା କହିଲା: ମଉସା, ବାପା ଚାଲିଗଲେ ।' ଛାନିଆରେ ନିଦୁଆ ଭାବ କୁଆଡ଼େ କଟିଗଲା । 'କଣ କହିଲ ?'-ପଚାରିବାରୁ-ପୁଣି ସେଇକଥା । 'କଣ ହୋଇଥିଲା ?' ଉତ୍ତର ଆଉ ଦେବାକୁ ଶୋଭନାର ଧୈର୍ଯ୍ୟ ନଥିଲା । ମନରେ ଭରିଗଲା ଦୁଃଖ, ଉଦାସ ଉଦାସ ଲାଗିଲା । ଘରେ ହଠାତ୍ ଶୁଣି - କହିଲେ ବୀର ଓଡ଼ିଆ ଚାଲିଗଲେ । ଜୀବନଟା ଏଇଆ ' । ଶୀଘ୍ର କାମ ସାରି ଭୁବନେଶ୍ୱର ଧାଇଁଲି ।

ଏ କଣ ? 'ଅଜରମ୍'ରେ ଅନେକ ଲୋକ । ତାଙ୍କର ସେଇ ବିଶାଳ ଲମ୍ବ ପ୍ରକୋଷ୍ଠରେ ଚିତ୍ ହୋଇ ଶୋଇଛନ୍ତି ବନ୍ଧୁ । ପାଖରେ ଶ୍ରୀମତୀ ପାତ୍ର ମୁମୂର୍ଷୁ ଓ କନ୍ଦନରତା ହୋଇ ଶୋଇଛନ୍ତି । ରୁଣ୍ଡ ହୋଇଛନ୍ତି ଅନେକ ମହିଳା । ସମସ୍ତଙ୍କ ଆଖିରେ ଲୁହ । ଶ୍ରୀମାଙ୍କ ବାଣୀ ସହ ଅତି ଧୀର ସଙ୍ଗୀତର ଲହର ପରିବେଶକୁ ଶୋକାକୁଳ କରୁଥାଏ । ପାଖରେ ତୁଳସୀଗଛର କୁଡୁଆ । ଦୀପ ଜଳୁଥାଏ ଧୀରେ ଧୀରେ । ବଡ଼ପୁଅ ତ ବିଦେଶରେ । ବାଙ୍ଗାଲୋରରେ ଥିବା ସାନପୁଅର ଆସିବାକୁ ଅପେକ୍ଷା । ଲମ୍ବୋଦର ବାବୁ ପହଞ୍ଚିଲେ । କହିଲେ,'ସୁପ୍ତ ଆଗ୍ନେୟଗିରି ପରି ଶୋଇପଡ଼ିଛନ୍ତି ବନ୍ଧୁ ।' ଘର ଚାରିପଟରେ ଆଲମିରାମାନଙ୍କରେ ବହି ଭର୍ତ୍ତି । କେବଳ ବହି ନୁହେଁ । କେତେକଥା, କେତେ କାର୍ଡ଼ି । ମୁଖାଠାରୁ ଆରମ୍ଭ କରି । ପିତଳ, ପଥର ମୂର୍ତ୍ତି । ସେ କେଉଁ କଥାକୁ ଅଦରକାରୀ ମଣନ୍ତି ନାହିଁ । ସାମାନ୍ୟ ପଥର ଖଣ୍ଡିଏ, ଯଦି ଟିକିଏ ବୈଚିତ୍ର୍ୟ ଅଛି । ସଜାଡ଼ନ୍ତି ତାଙ୍କ ଡ୍ରଇଂ ରୁମ୍‌ରେ । ସବୁଯାକ ଏକତ୍ର କରିଦେଲେ ଏକ ମିନି ମ୍ୟୁଜିୟମ ହୋଇଯିବ । ଉଦୟପୁରର ଦାଶିଆ ଅଜାଙ୍କପରି, କେତେ ସଂଗ୍ରହ, କେତେ ନୂଆ ବହି, ପୁରୁଣା ଦୁଷ୍ପ୍ରାପ୍ୟ ବହି, ସବୁ କିଛିର ସମ୍ମେଳନ ।

ବନ୍ଧୁ ଶୋଇଗଲେ ଚିର ନିଦ୍ରାରେ । କେମିତି ଅବିଶ୍ୱାସ ଲାଗୁଥାଏ କଥାଟା । ମନେ ହେଉଥାଏ, ବନ୍ଧୁ ଉଠିବେ । ମୋତେ 'କଟିକିଆ' କହିବେ, ସଂଖୋଳିବେ । ତାଙ୍କ

'ଜଟିକିଆ' କହିବାରେ କେତେ ଯାଦୁ, କେତେ ମାଧୁରିମା ଥିଲା ସତେ ? ଆଉ କଣ ଶୁଣିହେବ ତାଙ୍କର ଠୋସ୍ କଥା ?

ସନ୍ଧ୍ୟାରେ ପୁଣି ଗଲି । ସାଙ୍ଗରେ ବନ୍ଧୁ ଲମ୍ୱୋଦର ବାବୁ । ତାଙ୍କୁ ବାହାରକୁ ଅଣାଗଲା । ପିନ୍ଧାଇ ଦିଆଗଲା ନୂଆ ଲୁଗା । ଦୁଇପଟେ ଦୁଇ ରଙ୍ଗର ଧଡ଼ିଥିବା ମଠା ନୂଆ ଉତ୍ତରୀୟରେ ଯୋଡ଼ାଇ ଦିଆଗଲା ଦେହ । ବଡ଼ଝିଅ ଆଣିଦେଲା ହଳଦିଆ ଶାନ୍ତି ନିକେତନ ଝୁଲା । କାନ୍ଧରେ ଝୁଲାଇ ଦିଆଗଲା । ଏଥର ଠିକ୍ ସାଜିଲା । ଟିକିଏ ଦୂରରେ ଥାଇ ଦେଖୁଥାଏ ଏ ଦୃଶ୍ୟ, ମନେ ହେଉଥାଏ ସେ ନିଦରେ ଶୋଇପଡ଼ିଛନ୍ତି, ଟିକିଏ ପରେ ଉଠିବେ । କିନ୍ତୁ ତାଙ୍କୁ ଶୁଆଇ ଦିଆଗଲା ଛଅଖଣ୍ଡ କାଠର ଶେଯରେ । ପାଖରେ ଫୁଲର ସମ୍ଭାର । ଆଖିରୁ ଗଡ଼ିପଡ଼ିଲା ଲୁହ । ବାରଣ୍ଡାରେ ଟଙ୍ଗା ଯାଇଛି ବାୟାବସା । ମନେହେଲା ଉଡ଼ିଯାଇଛି ଆତ୍ମାପକ୍ଷୀ । ଶୂନ୍ୟ ପଡ଼ିଛି ସେ ବାୟାବସା, ସେଇ ନିବାସ 'ଅଳରମ୍' ।

କେତେ କଥା ଦେଇଥିଲେ ମୋତେ । ଝିଅ ବାହାଘର । ମୋର ଘରତୋଳା ଏ ସବୁରେ ତ ସାହାଯ୍ୟ କରିବେ । ପୁଣି କେତେକେତେ ସାହିତ୍ୟିକ ତଥ୍ୟ ସେ ସଂଗ୍ରହ କରିଛନ୍ତି ସେ ସବୁର ଉପଯୋଗ କରିବେ ଅବସର ପରେ । ଦୀର୍ଘ ତିରିଶ ବର୍ଷରେ କେତେ ଅନ୍ତରଙ୍ଗ ଆଳାପ, କେତେ ମିଳନ, କେତେ ଚର୍ଚ୍ଚା, ଆଜିସବୁ ମନେ ପଡୁଛି । ଗୋଟି ଗୋଟି ।

ଧନ୍ୟ ତୁମେ ବନ୍ଧୁ ! କେତେ ସୁଖଦ ବିଦାୟ ଜୀବନରୁ । ସେତିକି ପୁଣ୍ୟକରି ନଥିଲେ, କଣ ଏପରି ଅନ୍ତିମ ବିଦାୟ ଘଟିଥାନ୍ତା ? କୁହାଯାଏ, ହୃଦ୍‌ଘାତ ଅତି ରାଜକୀୟ ଦେହତ୍ୟାଗ ଆଣିଦିଏ । ସେହିପରି ଆପଣଙ୍କର ଦେହାବସାନ । ଆଜି ଏହି ଅବସରରେ ମୁଁ କାମନା କରେ ଆପଣଙ୍କର ଅମର ଆତ୍ମାର ସଦ୍‌ଗତି ହେଉ, ଆପଣଙ୍କ ଶୋକ ସନ୍ତପ୍ତ ପରିବାରକୁ ଭଗବାନ ସହାୟ ହୁଅନ୍ତୁ । ଆପଣ ଯଶୋଦେହରେ ଚିରଦିନ ପାଇଁ ଆୟୁଷ୍ମାନ ହୋଇ ରହିଥାନ୍ତୁ ।

ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ରେଭେନ୍ସା ମହାବିଦ୍ୟାଳୟ, କଟକ

## ସ୍ମୃତିଚାରଣ : କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତର

ପ୍ରଫେସର ଫକୀରମୋହନ ସାହୁ

ଅନେକ ବ୍ୟକ୍ତିଙ୍କର ଧାରଣା ଯେ ଅନ୍ତରଙ୍ଗତା ସମ୍ପର୍କର ଦୀର୍ଘତା ଉପରେ ପ୍ରତିଷ୍ଠିତ । ସମ୍ପର୍କ ଯେତେ ଦୀର୍ଘ ହୁଏ ଭାବର ଆଦାନ ପ୍ରଦାନ ସେତିକି ପ୍ରସାରିତ ହୁଏ । ଭାବନାର ବିନିମୟ ଅଧିକ ଗଭୀର ହୁଏ, ପୁରାତନ ସମ୍ପର୍କ ଅଧିକ ନିବିଡ଼ ଏବଂ ଅଧିକ ସୁଦୃଢ଼, ଏହା ଏକ ସାଧାରଣ ବିଶ୍ୱାସ । ବହୁ ପରିମାଣରେ ସତ ହେଲେ ମଧ୍ୟ ଆକସ୍ମିକ ଭେଟାଭେଟି ଏବଂ ସ୍ୱତନ୍ତ୍ର ମୁହୂର୍ତ୍ତସବୁର ଯେ ମଧୁରତା ରହିଛି, ତାହା ଅସ୍ୱୀକାର କରିହେବନାହିଁ । ସମ୍ଭବତଃ ଶିବରାମବାବୁଙ୍କ ସହିତ ଅଳ୍ପ କେତୋଟି ମୁହୂର୍ତ୍ତର ସାକ୍ଷାତ ଓ ଭାବର ବିନିମୟ ନ ହୋଇଥିଲେ ମୋର ଏପରି ଅନୁଭବ ଗଭୀର ହୋଇନଥାନ୍ତା ।

ଶିବରାମ ବାବୁଙ୍କ ସହିତ ମୋର ଆଳାପ ଦୀର୍ଘ ଦିନର ନୁହେଁ କି ଦୀର୍ଘ ସମୟର ନୁହେଁ, ଏହା ନିହାତି ସତ ଯେ ଶିବରାମ ବାବୁ ଗଭୀର ଭାବରେ ଜଣେ ସ୍ନେହପ୍ରବଣ ବ୍ୟକ୍ତି । ବହୁଥର ସେ ଘରକୁ ଡାକିଛନ୍ତି । ଏକାଠି ବସି ଚା'ପାନ ଏବଂ ଗପ କରିବାର ଆମନ୍ତ୍ରଣ ଜଣାଇଛନ୍ତି, ମୁଁ ମଧ ତାଙ୍କୁ କେତେଥର ଘରକୁ ଡାକିଛି । ମାତ୍ର ସେସବୁ କାର୍ଯ୍ୟକାରୀ ହୋଇପାରିନାହିଁ, 'ପରେ କେବେ ବସିବା' ଉକ୍ତିଟିର ବାରମ୍ବାର ପୁନରାବୃତ୍ତି ଘଟିଛି । କିନ୍ତୁ ଏକାଠି ବସି ଘଣ୍ଟା ଘଣ୍ଟା ଧରି ଗପ କରିବାର ସୁଯୋଗ ଆସିନାହିଁ । ତଥାପି ଯେଉଁ ଅଳ୍ପ କେତୋଟି ମୁହୂର୍ତ୍ତର ବନ୍ଧନୀ ମଧରେ ଭେଟାଭେଟିର ସୁଯୋଗ ଆସିଛି, ସେଗୁଡ଼ିକର ସ୍ମୃତି ଅଲିଭା ଓ ଅମଳିନ ।

ବେଶ୍ କିଛି ବର୍ଷ ତଳେ ଓଡ଼ିଆ ଗବେଷଣା ପରିଷଦର ବାର୍ଷିକ ଉତ୍ସବରେ ଶିବରାମ ବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା । ସଭା କାର୍ଯ୍ୟ ଶେଷ ପରେ ଆମର ବ୍ୟକ୍ତିଗତ ପରିଚୟ ପ୍ରଦାନ ପରେ ଅଳ୍ପ ସମୟ ପାଇଁ ଔପଚାରିକ ଭାବରେ ସାହିତ୍ୟର କଥା ପଡ଼ିଲା । ମାତ୍ର କେତୋଟି ମିନିଟ୍ ପରେ ତାଙ୍କର ସ୍ୱର, ତାଙ୍କର ଅଭିବ୍ୟକ୍ତି ଆତ୍ମୀୟତାପୂର୍ଣ୍ଣ ହୋଇପଡ଼ିଲା । ମୋର ଆଦୌ ମନେହେଲାନାହିଁ ଯେ ଶିବରାମ ବାବୁଙ୍କୁ ମୁଁ ପ୍ରଥମଥର ସାକ୍ଷାତ କରୁଛି ।

ଶିବରାମବାବୁ ମୋତେ ବେଳେବେଳେ ଟେଲିଫୋନ୍ କରନ୍ତି । କୌଣସି ବ୍ୟକ୍ତିଗତ ଚାହିଦାର ପରିପୂରଣ ପାଇଁ ଏସବୁ ଟେଲିଫୋନ୍ ଉଦ୍ଦିଷ୍ଟ ନୁହେଁ । କୌଣସି ପତ୍ରିକାରେ ଭିନ୍ନ ସ୍ୱାଦର ଲେଖାଟିଏ ଦେଖିଲେ ସେ ଟେଲିଫୋନ୍ କରନ୍ତି, କୌଣସି ନବପ୍ରକାଶିତ ପୁସ୍ତକରେ ନୂତନ ଦିଗ୍‌ଦର୍ଶନ ଥିଲେ ତାହା ଜଣାନ୍ତି । ପୁଣି କୌଣସି ଏକ ଲେଖକଙ୍କର ସୃଜନ ପ୍ରତିଭା ତାଙ୍କୁ ମୁଗ୍ଧ କଲେ, ସେ ତାଙ୍କ ବିଷୟରେ ପ୍ରଶଂସାସୂଚକ ମନ୍ତବ୍ୟ ଦେଇଥାନ୍ତି । ଶିବରାମବାବୁଙ୍କ ବ୍ୟକ୍ତିତ୍ୱର ଏ ଏକ କମନୀୟ ଦିଗ । ମମତାପୂର୍ଣ୍ଣ ବ୍ୟକ୍ତି ନିଜର ପ୍ରିୟବସ୍ତୁଟି ପ୍ରିୟଜନଙ୍କୁ ବାଣ୍ଟିଲାପରି ଶିବରାମବାବୁ ତାଙ୍କର ସମ୍ପଦକୁ ଅନ୍ୟମାନଙ୍କୁ ଦିଅନ୍ତି । ତାଙ୍କର ସ୍ମୃତିଚାରଣ କରିବା ସମୟରେ ତାଙ୍କର ବ୍ୟକ୍ତିତ୍ୱର ଏହି କମନୀୟତା ମନପ୍ରାଣକୁ ଆଚ୍ଛନ୍ନ କରିବା ସ୍ୱାଭାବିକ ।

ମନୋବିଜ୍ଞାନ ବିଭାଗ,ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

## ପ୍ରଣାମ ପରାର୍ଥ ପଥିକ

ନୃସିଂହ ଚରଣ ସାହୁ

ଏକାମ୍ର କଲେଜର ଉପାଧ୍ୟକ୍ଷ ପଦରୁ ଅବସର ଗ୍ରହଣ କରିଥିଲେ ଅଧ୍ୟାପକ ଶିବରାମ ପାତ୍ର । ମନ ଭିତରେ ଅସରନ୍ତି ସ୍ୱପ୍ନ, ଏମିତି କରିବା, ସେମିତି କରିବା, ବିଶେଷକରି ଆଦିବାସୀମାନଙ୍କର ଉଚ୍ଚାଙ୍ଗ ସାହିତ୍ୟ ସମ୍ପର୍କରେ ଗବେଷଣା କରିବା, ସେମାନଙ୍କ ମଧ୍ୟରୁ ଅନାଲୋଚିତ ଲୁପ୍ତ ପ୍ରତିଭାମାନଙ୍କୁ ଖୋଜି ବାହାର କରିବା ଏବଂ ସମାଜରେ ସେମାନଙ୍କୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିବା, ଏ କ୍ଷେତ୍ରରେ ଯେଉଁମାନେ ଆଗ୍ରହୀ ଅଛନ୍ତି ସେମାନଙ୍କୁ ପ୍ରେରଣା ଦେବା ଏହା ଥିଲା ପରିଣତ ବୟସରେ ଶିବବାବୁଙ୍କ ଅହର୍ନିଶ ଚିନ୍ତା । ଏଦିଗରେ ସେ ଥିଲେ ସାହିତ୍ୟସେବୀମାନଙ୍କର ଉତ୍ସାହର ଉତ୍ସ । ପ୍ରତ୍ୟେକ ସାହିତ୍ୟିକଙ୍କୁ

ଜଣେ ଜଣେ ତପସ୍ୱୀ ଦୃଷ୍ଟିରେ ସେ ଦେଖୁଥିଲେ । ସେମାନଙ୍କ ସୁଖ ଦୁଃଖର ସଂସାର ଭିତରେ ନିଜକୁ ଜଡ଼ିତ କରାଇ ପକାଉଥିଲେ । ଦେହ ଦୁଃଖ ବେଳେ କବିରାଜୀ, ହୋମିଓପାଥି ଔଷଧ ଯୋଗାଇ ଦେଇ ସେମାନଙ୍କ ଭଙ୍ଗା ଶରୀରକୁ ସଳଖ କରୁଥିଲେ । ଜଗତ ଜଞ୍ଜାଳ ଭିତରେ ସେମାନଙ୍କର ଅବଶ୍ୟ ମନରେ ସାହସ ଓ ଶକ୍ତି ଭରି ଦେଉଥିଲେ । ଲେଖୁ ନଥିବା ତରୁଣ ଲୋକଙ୍କୁ ଲେଖିବା ପାଇଁ ଓ ଲେଖା ଛାଡ଼ି ଦେଇଥିବା ପ୍ରବୀଣ ଲେଖକଙ୍କ ହାତରେ ପୁଣି କଲମ ଧରାଇ ଦେବାରେ ଶିବବାବୁଙ୍କର ଥିଲା ପ୍ରଚଣ୍ଡ ଆଗ୍ରହ । ଏହିଭଳି ଅନେକ ଘଟଣାରେ ମୁଁ ହେଉଛି ମୂକ ସାକ୍ଷୀ । ଅଳ୍ପଦିନ ତଳେ ପ୍ରକାଶ ପାଇଥିଲା ତାଙ୍କର ଫକୀରମୋହନ ବିଚାର ମଞ୍ଜୁଷା । ନିଜର ପ୍ରେରଣାଦାତା ତଥା ଭକ୍ତି ଭାଜନ ଓଡ଼ିଶାର ବରପୁତ୍ର କବି ଓ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କୁ ପୁସ୍ତକଟି ଉତ୍ସର୍ଗ କରି ସେଥିରେ ଅନ୍ତରର ଦୁଇପଦ କଥା ଉଲ୍ଲେଖ କରିଥିଲେ ।

"ତମାମ ଜୀବନ ସାହିତ୍ୟ ସେବାକୁ ବ୍ରତ ରୂପେ ଆଦରି ନେଇଛି । ଶକ୍ତି ଅନୁସାରେ କିଛି କରୁଛି, ପଦେ ପଦେ ଆପଣଙ୍କ ପ୍ରେରଣା । ସାହିତ୍ୟ ସେବା ଏକ ଭଲପାଇଟି ବୋଲି ମୋର ହୃଦ୍‌ବୋଧ ହୋଇଛି । ମୋର ପ୍ରିୟ ଭଲ ଲେଖକ ହେଉଛନ୍ତି ଫକୀରମୋହନ ସେନାପତି । ଫକୀରମୋହନ ସେନାପତି । ଫକୀରମୋହନଙ୍କ ଦୁଃଖ ଯନ୍ତ୍ରଣା ଉପଲବ୍ଧ ସାହିତ୍ୟ ଭିତରେ ମଣି ମୁକ୍ତାରେ ପରିଣତ ହୋଇଛି । ଏସବୁ ଏକତ୍ର କରି ମଞ୍ଜୁଷାରେ ଆପଣଙ୍କୁ ଅର୍ପଣ କରୁଛି ।" ବାସ୍ତବରେ ଏଇ କେଇପଦ କଥାରୁ ଶିବବାବୁଙ୍କ ସାହିତ୍ୟ ମାନସର ସୁସ୍ପଷ୍ଟ ପରିଚୟ ମିଳେ । ୨୦୦୧ ମସିହାରେ ସେ ଓଡ଼ିଶାର ପ୍ରଥିତ ଯଶା ଔପନ୍ୟାସିକ ଓ କଳାକାର ସୁରେନ୍ଦ୍ର ମହାନ୍ତିଙ୍କ ସାହିତ୍ୟ ମାନସର ସାର ସଂଗ୍ରହ କରି ପ୍ରକାଶ କରିଥିଲେ 'ସୁରେନ୍ଦ୍ର ବିଚାର ମଂଜୁଷା' । ଏହା ପ୍ରବଳ ଜନାଦୃତି ଲାଭ କରିଥିଲା । ଏହାପରେ ପରେ ଡକ୍ଟର ହରେକୃଷ୍ଣ ମହତାବ ଓ ଡକ୍ଟର ମାୟାଧର ମାନସିଂହଙ୍କ ଉଚ୍ଚକୋଟିର ସାହିତ୍ୟିକ ଅଭିମତସବକୁ ମଂଜୁଷା ଆକାରରେ ଉତ୍କଳ ଭାରତୀକୁ ଭେଟି ଦେବାକୁ ତାଙ୍କର ସଂକଳ୍ପ ଥିଲା ।

ଜନ ମାନସରୁ ଧୀରେ ଧୀରେ ହଜିଯାଉଥିବା ପ୍ରଚଣ୍ଡ ପ୍ରତିଭାମାନଙ୍କୁ ପୁଣି ଲୋକଲୋଚନକୁ ଆଣିବାରେ ତାଙ୍କର ଭୂମିକା ଉଲ୍ଲେଖନୀୟ । ବିଶେଷକରି ସରସ୍ୱତୀଭୂଷଣ ସତ୍ୟନାରାୟଣ ଲିପିପୂଜାର ପ୍ରବର୍ତ୍ତକ ମାଙ୍ଗେଇ ଶବର, କାବ୍ୟକାର ତ୍ରିପୁରାରୀ ତ୍ରିପାଠୀ, ମୁକ୍ତି ସଂଗ୍ରାମୀ ବାଞ୍ଛାନିଧି ପଟ୍ଟନାୟକ, ଗୋପୀନାଥ ସେନାପତି, ନାଟ୍ୟକାର ପଦ୍ମନାଭ ଦେବ, ସାହିତ୍ୟିକ ଓ ସାଧକ ମନୋଜ ଦାସ, ଲେଖିକା ବସନ୍ତ ଦେବୀ ଓ କଥାକାର କିଶୋରୀ ଚରଣ ଦାସଙ୍କ ଜୀବନ ଆଲେଖ୍ୟ ତାଙ୍କ ସାହିତ୍ୟ ଗବେଷଣାର ଗୋଟିଏ ଗୋଟିଏ ଉଜ୍ଜ୍ୱଳସ୍ମାରକୀ । ବିଶେଷ କରି 'ଓଡ଼ିଆ ସାହିତ୍ୟରେ ଆଦିବାସୀ ଜୀବନ' ଓ ଆଦିବାସୀ ସାହିତ୍ୟ କ୍ଷେତ୍ରରେ ତାଙ୍କର ଗବେଷଣା ଓ ପ୍ରବଳ ଆଗ୍ରହ ତାଙ୍କୁ ନିଶ୍ଚିତ ଭାବେ ସ୍ମରଣୀୟ କରି ରଖିବ । ୧୯୭୪ରେ ତାଙ୍କର ପ୍ରଥମ ପୁସ୍ତକ ପ୍ରକାଶ ପାଇଥିଲା- 'ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ' । ସେହି ବର୍ଷ ସେ ସମ୍ପାଦନା କରିଥିଲେ କବିସୂର୍ଯ୍ୟ ବଳଦେବ ରଥ ପରିକ୍ରମା ଓ ୧୯୭୬ରେ ବଂଶଧାରା କବିତାବଳୀ, ଏହାପରେ ସୁରେନ୍ଦ୍ର ବିଚାର ମଂଜୁଷା ଓ ଫକୀରମୋହନ ବିଚାର ମଂଜୁଷା ତାଙ୍କର ଦୁଇଖଣ୍ଡ ଅମୂଲ୍ୟ କୃତି ।

ପାଣ୍ଡବ ନଗର, ଭୁବନେଶ୍ୱର-୨

# ନିଦା ମଣିଷ ଶିବରାମ

ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର

ସେଦିନ କଥା । ସମୟ ସଂଧ୍ୟା । ବାପୁଜୀନଗରର ବିଶ୍ୱନୀଡ଼ମ୍ । ତଳମହଲାର କ୍ଷୁଦ୍ର ପ୍ରକୋଷ୍ଠ ମଧ୍ୟକୁ ପଶିଆସିଲେ ଜଣେ ବ୍ୟକ୍ତି । ହଁ, ବ୍ୟକ୍ତି । କୃଷକାୟ, ଦୀର୍ଘତନୁ, କଳାମେଘ ଭିତରେ ବିଜୁଳି ମାରିଲା ପରି ଉଜ୍ଜ୍ୱଳ, ସ୍ଥିର, ସ୍ୱପ୍ନମୟ, ଅନ୍ତର୍ଭେଦୀ ଚକ୍ଷୁଯୁଗଳ । ହାତରେ ଏକ କିମ୍ବା ଏକାଧିକ ସହକାର ବୃକ୍ଷର ନବପଲ୍ଲବିତ ଡାଳ । କାନ୍ଧରେ ବହିଭରା ଶାନ୍ତିନିକେତନୀ ଝୁଲାବ୍ୟାଗ୍ । ବାସ୍ ଏତିକି । ଏବେ ମଧ୍ୟ ମନେଅଛି ।

ଚିତ୍ତଭାଇ ପରିଚୟ କରାଇଦେଲେ । ଶ୍ରୀଅରବିନ୍ଦଙ୍କ ଲିଖିତ 'The life Divine' କ୍ଲାସ୍ ଆରମ୍ଭ ହେଲା । ଆଲୋଚନା ପୂରା ଦୁଇଘଣ୍ଟା ଚାଲିଲା । ସେଦିନ ସେତିକି । ଡାଳିଯୋଡ଼ା ଶ୍ରୀଅରବିନ୍ଦ ଶ୍ରୀକ୍ଷେତ୍ରରୁ ସେଦିନ ଫେରି ଥାଆନ୍ତି । ଏଣୁ ଶରୀର କ୍ଲାନ୍ତ । ସାମାନ୍ୟ ଆରାମ ପାଇଁ ପଶ୍ଚିମପଟ କାନ୍ଥକୁ ଲାଗି ବସିଥିଲେ ଶିବରାମ ପାତ୍ର । ମଝିରେ ମଝିରେ ତାଙ୍କୁ ଚାହୁଁଥିଲି । ସେତେବେଳେ ତ ଚିହ୍ନିନଥିଲି । ତଥାପି ଚିହ୍ନା ଚିହ୍ନା ଲାଗୁଥିଲା । ନିଦା ନିଦା ଲାଗୁଥିଲା ଶିବଙ୍କର ସାନ୍ନିଧ୍ୟ । ବିଶେଷ ଆଳାପର ଅବକାଶ ନଥିଲା ।

ତା'ପରେ..। ଦିନେ ଚିତ୍ତଭାଇ କହିଲେ ''ଅଧ୍ୟାପକ ଶିବରାମ ପାତ୍ର, ଜଣେ ନିଦାମଣିଷ ।'' ଆମ ଦୁହିଁଙ୍କୁ ଗଅଁଠାଇ ଦେବାପାଇଁ ଆରମ୍ଭ କଲେ ପ୍ରଚେଷ୍ଟା । ବାରବାର ସେଇ କଥା ''ଶିବରାମବାବୁ ଦେଖା ହୋଇଥିଲେ ? ତାଙ୍କ ସହିତ ଆପଣ କଥାବାର୍ତ୍ତା କରିଥିଲେ ? ଏକାଠି କେତେଜଣ ବାହାରି ଆଲୋଚନା ଚକ୍ରଟିଏ କରନ୍ତେ ନାହିଁ । କେତେକଥା ମେଳରେ ପଡ଼ିବା ପାଇଁ ଅଛି । ଯେ କୌଣସି ବିଷୟ ଯେ କୌଣସି ଠାରେ ଆରମ୍ଭ କରାଯାଇପାରେ । ଆପଣ ତାଙ୍କ ସଙ୍ଗରେ ମିଶନ୍ତୁ । ଦିନ ଠିକ୍ କରନ୍ତୁ''- ଅନୁରୋଧଭରା ବ୍ୟାକୁଳତା । ସ୍ୱଭାବସୁଲଭ ଅଳସୁଆମୀ ଯୋଗୁଁ କେତେଦିନ ବିତିଗଲା । ପୁଣି ସେଇ କଥା । ଅଗତ୍ୟା ତାଙ୍କୁ ଠାବ କରିବାକୁ ସ୍ଥିର କଲି । ଆଚ୍ଛାକଥା । ସେ କିଏ, ମୁଁ କିଏ । ତାଙ୍କ ସାଙ୍ଗରେ ମିଶିବାକୁ କାହିଁକି ଇଏ ଏମିତି ହେଉଛନ୍ତି ! କହୁଛନ୍ତି କଅଣ ନା ''ଶିବରାମବାବୁ ଜଣେ ନିଦାମଣିଷ, ଆପଣ ମିଶନ୍ତୁ ।'' ଦେହ ତ ନିଦା ଦେଖିଲେ ଜଣାପଡୁଛି । ଆଉ ପୁଣି କୋଉ ନିଦା କଥା ଭାଇ କହୁଛନ୍ତି । ଭାଗ୍ୟଧରଭାଇଙ୍କଠାରୁ ଟେଲିଫୋନ୍ ନମ୍ବର ନେଇ ତାଙ୍କ ପାଖକୁ ଫୋନ୍ କଲି । ନିମନ୍ତ୍ରଣ କଲେ ଘରକୁ । ଗଲି ଦିନେ ସଂଧ୍ୟାରେ ଗୌରୀନଗର ।

ଘର ଆଗରେ ପହଞ୍ଚିଲି । ଘରକୁ ଛାଡ଼ିଦେଲେ ଆଉ ସବୁଠାରେ ଖାଲି ଗଛ ଆଉ ଗଛ । ସେତିକି ଜାଗାରେ ଦୁନିଆ ଗଛ । ବଡ଼ଗଛ, ପୁଣି ଚାରାଗଛ, ବୋତଲ ଭିତରେ ପାଣି ସେଥିରେ ପୁଣି ଚେର ପକାଇଥିବା ବିଭିନ୍ନ ଗଛର ଡାଳ । ମୁଣ୍ଡ ଉପରେ ଝୁଲନ୍ତା ଗଛ । ଅଭିଭୂତ ହେଲି । ସିଡ଼ିଘରଠାରୁ ଆରମ୍ଭ ହେଲା ବହିର ବିପଣୀ । ଏତେ ବହି କାହାଘରେ ଦେଖିନଥିଲି । ଜାଗା ନାହିଁ । ସିଡ଼ିତଳେ ମଧ୍ୟ କିଛି ପୁରୁଣା କିତାବ, ପତ୍ରିକା ଶୋଭା ପାଉଛି । ବୈଠକ ଘରେ ଆଲମିରାଭର୍ତ୍ତି ବହିର ବଜାର । ଗୋଟିଏ ଆଲମିରା

ଦେଖାଇଲେ । ତାହାର ଦୁଇପଟେ ଦୁଆର । ଦୁଇପଟେ ଖୋଲିପାରିବ । ବାଃ ! ପଶ୍ଚିମପାଖ ଆଲମାରିରେ ଏବଂ ତା' ଉପରେ ମାଟିର ବିଭିନ୍ନ କଳାକୃତି । କାନ୍ଥମାନଙ୍କରେ ଶୋଭାପାଉଛି ହରିଣ ଶିଙ୍ଗ ଏବଂ ନାନା ବିରଳ ସଂଗ୍ରହ ।

ମୁଢ଼ି ବାଦାମ, ପୁଣି ବୋଧହୁଏ ଉପମା କି କଅଣ ସାଙ୍ଗ ହୋଇ ଖାଇଲୁ । ଚା'ପିଇଲୁ । ନାନା କଥା ପଡ଼ିଲା । ସେଥିରୁ ଅନେକ କଥା ଜାଣିଲି । ଦୈନିକ 'ଦର୍ଶନ'ରେ ଲେଖୁଥିବା ଏଇ ତେବେ ଅଧ୍ୟାପକ ଶିବରାମ ପାତ୍ର । ଚାକ୍ଷୁସ ସମ୍ପର୍କ ହେଲା । କଥା ଛଳରେ କହିଲି, 'ଏତେ ବହି ।' କଥାଟାକୁ ଅତି ସହଜରେ ସେ କହିଲେ, 'ଏଥିରେ ବଡ଼କଥା କଅଣ ଅଛି ? ଲକ୍ଷେ ଟଙ୍କା ହେଲେ ଯେ କେହି ଏତିକି ବହି ଗଦେଇ ଦେଇ ପାରିବ ।' ତାପରେ ପ୍ରଶ୍ନ ପରେ ପ୍ରଶ୍ନ ଫିଟିବାରେ ଲାଗିଲା । ମତେ ଦେଖାଇଲେ ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଉପରେ ସେ କରିଥିବା ଗବେଷଣାଲବ୍ଧ ପୁସ୍ତକ । ବୋଧହୁଏ ଏହି କ୍ରମରେ ପ୍ରଥମେ ଫକୀରମୋହନଙ୍କ ଉପରେ କିଛି କାମ ସେ କରିବାର ସୁରାକ ଦେଲେ । ଆସ୍ତେ ଆସ୍ତେ ସିଏ ନିଦା ପରି ଭିତରେ ଦିଶିଲେ । ବାହାରେ ସେପର୍ଯ୍ୟନ୍ତ କେବଳ ନିଦା ବୋଲି ଜାଣିଥିଲି । ଆଲୋଚନା ହେଲା ଗୁଣୁପୁର କଲେଜ୍, ଏକାମ୍ର କଲେଜ୍‌ର ଅନୁଭୂତି କେଦାରନାଥ ଗବେଷଣା ପରିଷଦ ଠାରୁ ଆରମ୍ଭ କରି ନାନା ଅନୁଷ୍ଠାନ ସହିତ ତାଙ୍କର ସଂପୃକ୍ତି ଥିଲା କଥାବାର୍ତ୍ତାର ବିଷୟବସ୍ତୁ । ଅନୁଭବ କରୁଥିଲି ସିଏ ପ୍ରକୃତରେ ନିଦା ।

ତାଙ୍କ ଘରେ ଥରେ ଆଲୋଚନା ବୈଠକ ହୋଇଥିଲା । ଚିଉଡ଼ା ଭାଇ ଯାଇଥିଲେ । ପ୍ରାୟ ୨୦/୨୫ ଜଣ ଏକାଠି ହୋଇଥିଲୁ । ଅବଶ୍ୟ ନାନା କାରଣରୁ ଏହା ଚାଲୁ ରହିପାରିଲା ନାହିଁ । ପ୍ରଥମ ବୈଠକରେ ହିଁ ସୀମିତ ହୋଇ ରହିଯାଇଥିଲା ।

ହଠାତ୍ ଶୁଣିଲି ତାଙ୍କ ଜୀବନର ଶେଷକଥା । ନିଜକୁ ବିଶ୍ୱାସ କରିପାରିଲି ନାହିଁ । ଖବର ନେଲି । ଜାଣିଲି ସମ୍ବାଦ ସତ୍ୟ । ଅସ୍ଥିର ଚିତ୍ତରେ ଗୌରୀନଗର ଦୁଇଥର ଯାଇ ଘରପାଖରୁ ଫେରିଆସିଲି । ନା' ସତରେ ମୁଁ ମୋ ଶରୀର ନେଇ ସେଠାକୁ ଯାଇ ପାରି ନ ଥାନ୍ତି ଶିବରାମଙ୍କର ଅସାଡ଼ ଶରୀରର ଶେଷ ଦେଖା ପାଇଁ । ବସି ରହିଲି ଦୀର୍ଘସମୟ ବନ୍ଧୁ ସନ୍ତୋଷ ମିଶ୍ରଙ୍କ ଘରେ । ଏକାଦଶାହରେ ଯୋଗଦେଇଥିଲି ଅବଶ୍ୟ ।

ସ୍ୱପ୍ନ ଦେଖୁଥିବା ଶିବରାମ ଚାଲିଯିବା ପୂର୍ବରୁ, ଆମକୁ ସ୍ୱପ୍ନ ଦେଖିବା ପାଇଁ ରାଜି କରାଇ ପାରିଛନ୍ତି । ନିଜେ ନିଦା ହୋଇଥିବା ଏଇ ମଣିଷ ନିଦାମଣିଷମାନଙ୍କୁ ଏବେ ମଧ୍ୟ ଲୋଡ଼ୁଛନ୍ତି । ସିଏ କେନ୍ଦ୍ରରେ ରହି କାର୍ଯ୍ୟ କରୁଥିବାର ଯଥେଷ୍ଟ ପ୍ରମାଣ ଦେଉଛି ତାଙ୍କର ଜୀବନଶୈଳୀ, ଅଙ୍ଗୀକାରବଦ୍ଧତା । ସମବେଦନା ଜଣାଇବାପାଇଁ ଯାଇ ପାରିନାହିଁ । କଅଣ ବା କହିପାରିଥାଆନ୍ତି । ମୋ କହିବା କ'ଣ ଶିବରାମଙ୍କ ଠାରୁ ବେଶୀ ନିଦା ହୋଇ ପାରିଥାଆନ୍ତା !

ଦର୍ଶନ ବିଭାଗ, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ,
ପୁରୀ

# ଉତ୍କଳ ଭାରତୀଙ୍କ ଗେହ୍ଲାପୁଅ

**ଶତ୍ରୁଘ୍ନ ପାଣ୍ଡବ**

ମୁଠାଏ ଉଜ୍ଜ୍ୱଳ ହସ, ଠୋସ୍‌ଠାସ୍ କଥାବାର୍ତ୍ତା ଏବଂ ଖୋଲାମେଲା ଦରଦୀ ହୃଦୟ ନେଇ ଚଲାବୁଲା କରୁଥିବା ମଣିଷ ଜଣକ ଶିବରାମ ପାତ୍ର । ଅଦୃଶ୍ୟ ନଟ ପରି ନିଜକୁ ପର୍ଦ୍ଦା ଆଢୁଆଳରେ ରଖି ବୟସ ନିର୍ବିଶେଷରେ ସାହିତ୍ୟିକମାନଙ୍କ ପ୍ରତି ଅକୁଣ୍ଠ ଶ୍ରଦ୍ଧା, ଦରଦ ପୋଷଣ କରି ଏକ ଅଭିଭାବକସୁଲଭ ଠାଣି ଓ ଆପଣାପଣରେ ଆମ ସହିତ କୌତୁକ କରୁଥିବା ମଣିଷଟି ଏତେ ସଅଳ ଆମ ଗହଣରୁ ଖସି ଚାଲିଯିବେ ଏକଥା ବିଶ୍ୱାସ ହୋଇନଥିଲା । ଏବେ ବି ହୁଏନାହିଁ । ମନେହୁଏ ସେ କିୟତ୍‌କାଳ ନିରୁଦ୍ଦିଷ୍ଟ ହୋଇ ଯାଇଛନ୍ତି ଅଥବା ଆତ୍ମ ନିର୍ବାସନ ଭୋଗୁଛନ୍ତି କେଉଁ ସୁଦୂରରେ ଆପଣା ଖୁସିରେ । ଫେରିବେ ନାହିଁ ବୋଲି ଆମେ ଜାଣୁ ଏଠି ଏମିତି ଅଧା ରହିଯାଏ ଅନେକ କଥା, ଅନେକସ୍ୱପ୍ନ । ତାଙ୍କର ଯଦି ପୁନର୍ଜନ୍ମ ହୁଏ ସେ ନିଶ୍ଚେ ଜନ୍ମ ନେବେ ଆମ ସାହିତ୍ୟକୁ ଭଲ ପାଇବାର ଏକ ନିଷ୍ପଟ ଉତ୍ସର୍ଗୀକୃତ ହୃଦୟ ନେଇ ଓଡ଼ିଶାର କେଉଁ ଏକ ଭୂଖଣ୍ଡରେ ଉତ୍କଳ ଭାରତୀଙ୍କ ଗେହ୍ଲାପୁଅ ହୋଇ । ଆଜି ତାଙ୍କ ବିଷୟରେ ସ୍ମୃତିଚାରଣ କଲାବେଳେ ଏମିତି ଏକ ଭାବାବେଗରେ ମୁଁ ଆଚ୍ଛନ୍ନ ହୋଇପଡ଼େ ।

ଏକଦା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପାଠ ପଢ଼ିଥିବା ଏବଂ ଗୁଣପୁର କଲେଜରେ ଅଧ୍ୟାପନା ଆରମ୍ଭ କରିଥିବା ଶିବରାମବାବୁ ନିଜ କାମ ଓ ଚିନ୍ତନରେ ଥିଲେ ଭାରି ଆତ୍ମସ୍ଥ । ବେଶ୍ ସ୍ଥିତପ୍ରଜ୍ଞ ମନେହେଉଥିଲେ ବି ନିଜର ଆବେଗପ୍ରବଣତାକୁ ସେ ଲୁଚାଇ ପାରୁନଥିଲେ ଜମା । ୧୯୮୬ ମସିହାରେ ବଂଶଧାରା ସାହିତ୍ୟ ସମାଜ ଓ ଇମ୍ପା ଶିଳ୍ପ ସଂସ୍ଥା ଆନୁକୂଲ୍ୟରେ ଗୁଣପୁରରେ ଏକ ସାହିତ୍ୟ ସମ୍ମିଳନୀ ଆୟୋଜନ କରାଯାଇଥିଲା । ସେଠି କବିତା ପାଠୋତ୍ସବ ସହିତ ଆଦିବାସୀ ଜୀବନଭିତ୍ତିକ ସାହିତ୍ୟ ସଂପର୍କରେ ଆଲୋଚନା ଚକ୍ର ହିଁ ଥିଲା ସଭାର ଆଭିମୁଖ୍ୟ । ପ୍ରଚଣ୍ଡ ବର୍ଷା ସତ୍ତ୍ୱେ ଭୁବନେଶ୍ୱରରୁ ଏକ ବସ୍ ସାହିତ୍ୟିକମାନଙ୍କୁ ନେଇ ଗୁଣପୁର ଯାତ୍ରା କଲା । ସଭିଂକ ଭିତରେ ମୁଁ ଥିଲି କନିଷ୍ଠ । ଗୁଣପୁରର ସେ ସାହିତ୍ୟ ସମାବେଶର ପ୍ରମୁଖ ସେତୁ ଓ ସୂତ୍ରଧର ଥିଲେ ଶିବରାମ ପାତ୍ର । ସମାବେଶ ମଣ୍ଡନ କରିଥିବା ସାହିତ୍ୟ ସ୍ରଷ୍ଟାମାନଙ୍କ ଭିତରେ ଥିଲେ ମହାପାତ୍ର ନୀଳମଣି ସାହୁ, ହୃଦାନନ୍ଦ ରାୟ, ଶାନ୍ତନୁ କୁମାର ଆଚାର୍ଯ୍ୟ, ନିତ୍ୟାନନ୍ଦ ଶତପଥୀ, ଶରତ ମହାନ୍ତି, ପ୍ରଫୁଲ୍ଲ କୁମାର ମହାନ୍ତି, ପ୍ରତିଭା ରାୟ, ପ୍ରତିଭା ଶତପଥୀ, ଆଶୁତୋଷ ପରିଡ଼ା, ମମତା ଦାଶ ଏବଂ ଅନ୍ୟମାନେ । ବଂଶଧାରା ସାହିତ୍ୟ ସମାଜ ଦ୍ୱାରା ପ୍ରକାଶିତ ତିନିଖଣ୍ଡ ସଂକଳନ ଉପସ୍ଥିତ ସାହିତ୍ୟିକମାନଙ୍କୁ ଶ୍ରଦ୍ଧା ଉପହାର ଦିଆଯାଇଥିଲା । ଅକୁଣ୍ଠ ଆତିଥେୟତାର ପର୍ବପରେ ଆମ୍ଭମାନଙ୍କ ପରବର୍ତ୍ତୀ ଗନ୍ତବ୍ୟସ୍ଥଳ ଥିଲା ଥେରୁବାଲି । ଶିବରାମ ବାବୁ ଦକ୍ଷିଣ ଭାଗର ଏକ ସାରସ୍ୱତ ସଂଗଠକର ଭୂମିକା ନିର୍ବାହ କରିବା ସହିତ ସାରସ୍ୱତ ସଂଗ୍ରାହକର ଭୂମିକା ନିଭାଉ ଥିଲେ ।

ଗ୍ରୀଷ୍ମାବକାଶରେ ଶାରଳା ପୁରସ୍କାର ଉତ୍ସବରେ ଏକାଧିକବାର ଆମର ସାକ୍ଷାତ ହୋଇଛି । ତାଙ୍କ ଜ୍ୟେଷ୍ଠା କନ୍ୟା ପ୍ରିୟମ୍ବଦା କବିତା ଲେଖୁଥିବା କଥା ଏବଂ ତା ଦ୍ୱାରା ପଠିତ

ଏକ କବିତା ଯୋଗୁଁ ତାଙ୍କର ନବରଙ୍ଗପୁରକୁ ବଦଳି ପ୍ରସଙ୍ଗ, ମଝିରେ କେବେ ମୋତେ କହିଥିବା କଥା ମନେପଡୁଛି । ପ୍ରିୟମ୍ବଦା ବାଣୀବିହାରରେ ଏମ୍.ଏ ପଢ଼ିବାବେଳେ ଦେଖାହେଲେ ମୁଁ ତାକୁ ପଚାରିଥାଏ ଶିବରାମ ବାବୁଙ୍କ କଥା । ସେ ଏଇ ୭/୮ ବର୍ଷ ହେବ ବଦଳି ହୋଇ ଭୁବନେଶ୍ୱରର ଏକାମ୍ର କଲେଜକୁ ଆସିଥିଲେ । ଫଳତଃ ପ୍ରାୟ ସଭାସମିତିରେ ତାଙ୍କ ସହିତ ଭେଟ କରନ୍ତି, କେବେ କେବେ ଛାବୁଡ଼ି ଧରିଥାନ୍ତି ହାତକୁ । ଅମୁକ କଥା ହେଲାନାହିଁ-- ହେଉନାହିଁ---ଅମୁକ ହେବା ଦର୍କାର ଇତ୍ୟାଦି ନାନା ପ୍ରସ୍ତାବନା--ଶୋଚନା ତାଙ୍କ କଥା ଭିତରେ ଫୁଟିଉଠେ । ନିଜ କଥା କିଂତୁ କିଛି ନଥାଏ ତା' ଭିତରେ । ଆମ ଭାଷା ସାହିତ୍ୟର ପ୍ରସଙ୍ଗ ସେ ଉଠାନ୍ତି-ପ୍ରକାଶନ, ଗବେଷଣା, ସ୍ୱୀକୃତି, ସମ୍ମାନ-ଏହି ଚର୍ଚ୍ଚାରେ ତାଙ୍କର ଖୁସି । କେବେ କେବେ ଗଞ୍ଜାମ-କୋରାପୁଟପଟର କଥିତ ଭାଷା ବ୍ୟବହାର କରି ବକ୍ତବ୍ୟ ବାଢ଼ନ୍ତି- କିଂତୁ ସବୁଥିରେ ଥାଏ ଏକ ଅନାବିଳ ଭଲ ପାଇବା ଓ ସହୃଦୟତା । ଏକ ସାହିତ୍ୟ ସଂସ୍କୃତି ଅନୁରାଗୀ ସୂକ୍ଷ୍ମ କୋମଳ ହୃଦୟର ସ୍ପନ୍ଦନ ଇ ସେଠି ଆତଯାତ ହେଉଥାଏ । ଶିବରାମ ବାବୁଙ୍କୁ ଦେଖି ପକାଇଲେ ଖୁସି ଲାଗେ । ପରିବେଶ ମାନ୍ଦା ଓ ଗମ୍ଭୀର ଥିଲେ ସେ ତାକୁ ହାଲ୍କା ଓ ସହଜ କରିପକାନ୍ତି । ନିଜ ସାରସ୍ୱତ ପରିପ୍ରକାଶ ବାବଦରେ ନିରାସକ୍ତ ରହିବା ମଣିଷ ମୁଁ କମ୍ ଦେଖିଚି । ବୋଧହୁଏ ସାହିତ୍ୟ ଓ ସଂସ୍କୃତିକୁ ଭଲ ପାଇବାର ଏକ ମୁଗ୍ଧ ଭାବକୁ ନିଜ ଭିତରେ ଧରି ରଖି ସେ ଖୁସି ଥିଲେ ।

ତାଙ୍କ ସହ ସମ୍ଭବତଃ ଶେଷ ସାକ୍ଷାତକାର ଥିଲା, ଦୁଇବର୍ଷ ତଳର ଓଡ଼ିଆ ଲେଖିକା ସଂସଦ ସଭାର ଭୋଜନ ଅବକାଶରେ । ତାଙ୍କ ବିୟୋଗରେ କିଛି ମାସ ଆଗରୁ ଟେଲିଫୋନ୍‌ରେ ହିଁ କଥାବାର୍ତ୍ତା ହୋଇଥିଲା । ମୋତେ ଭୁବନେଶ୍ୱର ପାଖକୁ ବଦଳିହୋଇ ଆସିବାକୁ ସେ ପରାମର୍ଶ ଦେଉଥିଲେ, ତାଗିଦା କରୁଥିଲେ । ଘରକୁ ଟେଲିଫୋନ୍ କରି ଚାପ ପକାଉଥିଲେ । ସେ ବେଳକୁ ସେ ଏକାମ୍ର କଲେଜରୁ ଅବସର ନେବାକୁ ଯାଉଥିଲେ । ମୋତେ କହିଲେ : 'ତୁମେ ଏକାମ୍ରକୁ ଆସିବାକୁ ଚାହିଁବ ଯଦି ମୁଁ ଅଧ୍ୟକ୍ଷଙ୍କ ସହ ତୁମ ଲାଗି କଥା ହେବି । ରାଜି କରାଇବା ଦାୟିତ୍ୱ ମୋର । ଆମେ ଏ ଲାଗି ଶିକ୍ଷା ନିର୍ଦ୍ଦେଶାଳୟକୁ ଯିବା ।' ମୁଁ କିନ୍ତୁ କୌଣସି ନିଷ୍ପତ୍ତିରେ ପହଁଚିପାରି ନଥିଲି । ମଝିରେ ପ୍ରଶାସନଗତ ନିଷ୍ପତ୍ତି ହୋଇ ଆମ ଶିକ୍ଷା ବିଭାଗ କିଛି କଲେଜର ଅନୁଦାନ ବନ୍ଦ କରିବା ନିଷ୍ପତ୍ତି ଘୋଷଣା କରିଥିଲେ- ଯାହା ପରେ ଉଠିଯାଇଥିଲା- ସେଥିରେ ଏକାମ୍ର କଲେଜ ତାଲିକାଭୁକ୍ତ ଥିଲା । କଥା ହେବାରେ ଶିବରାମ ବାବୁ କହିଲେ, ଅବସ୍ଥା ତ ଏହିପରି - ଏଠାକୁ ଆଉ କାହିଁକି ଆସିବ ?' ତେବେ ଏଇ ସ୍ନେହ ଓ ଦରଦର ସ୍ୱର ଯେ ଆଉ ଶୁଭିବ ନାହିଁ- ସେ କଥା ମୋର କି ଆଉ କାହାର ବିଶ୍ୱାସ ନଥିଲା । ତାଙ୍କର ବହୁ ଯୋଜନା ଓ ପ୍ରସ୍ତୁତ ପାଣ୍ଡୁଲିପି ପ୍ରକାଶ ହେବାକୁ ରହିଥିବ । ଡାଏରୀ ଲେଖୁଥିଲେ ତାହା ବି ଥିବ । ତାଙ୍କର ସାରସ୍ୱତ ଉତ୍ତରାଧିକାରୀମାନେ ସେଥିପ୍ରତି ଯତ୍ନଶୀଳ ହେଲେ ତାହା ହେବ ତାଙ୍କ ଆତ୍ମା ଓ ସ୍ମୃତି ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି । ବହୁ କଥାକୁ ଯୋଡୁଥିବା, ସମାନ କରୁଥିବା, ସାହିତ୍ୟ ଓ ସାହିତ୍ୟିକଙ୍କୁ ହୃଦୟ ଭରି ଭଲ ପାଉଥିବା, ଶ୍ରଦ୍ଧା ସଂପ୍ରୀତି ବାଣ୍ଟି ଚାଲିଥିବା ଶିବରାମ ପାତ୍ରଙ୍କ ଭଳି ନିଷ୍କପଟ ବିହ୍ୱଳ ମଣିଷ ଜଣେ ଏଠି ଏଇନା ମିଳିବେ ନାହିଁ - ଏକଥା ତାଙ୍କର ଶତ୍ରୁ ମଧ୍ୟ ସ୍ୱୀକାର କରିବ ।

ଓଡ଼ିଆ ବିଭାଗ,କେନ୍ଦ୍ରାପଡ଼ା ମହାବିଦ୍ୟାଳୟ,
କେନ୍ଦ୍ରାପଡ଼ା

# ଜଣେ ନିଆରା ମଣିଷ

ଡଃ. ପ୍ରସନ୍ନ କୁମାର ମହାନ୍ତି

ସେ ଥିଲେ ଭିଡ଼ ଭିତରେ ବାରି ହୋଇପଡୁଥିବା ଜଣେ ନିଆରା ମଣିଷ । ତାଙ୍କ ନିଆରାପଣ ତାଂକର ଉଭୟ ଭିତର ଓ ବାହାରର ନିଆରାପଣରେ ଗଢ଼ା ହୋଇଥିଲା । ତାଙ୍କର ଶ୍ମଶ୍ରୁଳ ପ୍ରଶାଂତ ମୁଖମଣ୍ଡଳର ଋଷିସୁଲଭ ସ୍ଥୈର୍ଯ ଓ କମନୀୟତା ଯେପରି ଚୁଂବକୀୟ ଥିଲା, ତାଙ୍କ ନିଷ୍କପଟ ଆଂତରିକତା ଓ ଆତ୍ମୀୟତାବୋଧର ସୁଗଂଧ ଥିଲା ସେହିପରି ସମ୍ମୋହନକର ।

ଶିବରାମ ବାବୁଂକ ସହ ମୋର ପ୍ରତ୍ୟକ୍ଷ ପରିଚୟ ଖୁବ୍ ବେଶି ଦିନର ନୁହେଁ, ଅଥଚ ମୋର କାହିଁକି କେଜାଣି ସବୁବେଳେ ମନେହୋଇଛି ସତେ ଯେପରି ତାଙ୍କ ସହ ମୋର ଚିହ୍ନା-ପରିଚ' ଅତ୍ୟଂତ ବୟସ୍କ ! ଏବଂ ଏହାହିଁ ତାଙ୍କ ବଂଧୁପଣର ଉଷ୍ମତାର ଯାଦୁକରି ।

ପ୍ରାୟ ଏକ ଦଶନ୍ଧି ତଳେ ତାଂକ ସହ ପ୍ରଥମେ ପରିଚୟ ହୁଏ । ବାଣୀବିହାରରେ ଥରେ ପ୍ରଫେସର ସଂଘମିତ୍ରା ମିଶ୍ର ତାଙ୍କ କନ୍ୟା ପ୍ରିୟଂବଦାଂକ ସହ ମୋର ପରିଚୟ କରାଇ ଦେଇଥିଲେ । ସେତେବେଳକୁ ଶିବରାମ ବାବୁଂକ ସହ ମୋର ଚିହ୍ନା ହୋଇନଥାଏ । ପରେ ପାତ୍ରଂକ ସହ ମୋର ପରିଚୟ ହୁଏ, ଏବଂ ଆହୁରି ପରେ ଶ୍ରଦ୍ଧେୟ ରମାକାଂତ ହୁଅଂତି ତାଙ୍କର ଜାମାତା । ଖୁସି ଲାଗେ ।

ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡର ପତ୍ରିକା ଦୋକାନରେ ଓ ସାହିତ୍ୟ ସଭାମାନଙ୍କର କେତେଥର ତାଙ୍କୁ ଦେଖିବା ଭିତରେ ମୁଁ ଜାଣି ଯାଇଥିଲି ଯେ ଏଇ ଅନନ୍ୟ ଆକୃତିର ଲୋକଟି ନିଶ୍ଚୟ ଜଣେ ସାହିତ୍ୟିକ ଓ ଦରଦୀ ମଣିଷ । ଆଖିରେ ମୁହଁରେ ଏକ ଶାଂତ ସମାହିତ ଗଭୀର-ଭାବର ବ୍ୟାପ୍ତି ! ପରିଚୟ ହେବା ପରେ ଜାଣିଲି ଯେ ମଣିଷଟିକୁ ନେଇ ମୋର କଳ୍ପନାଜଳ୍ପନା ସତ ।

ତାଂକ ଘରେ ଯାଇ ଦେଖିଲି ସାହିତ୍ୟ ବହି ଓ ପୁରୁଣା ନୂଆ ପତ୍ରପତ୍ରିକା ପୋଥି ପତ୍ରର ଏକ ମହାର୍ଘ ସଂଗ୍ରହ ! ବହିପତ୍ରକୁ ଭଲ ପାଉଥିବା ଲୋକଙ୍କୁ ମୋତେ ଭଲ ଲାଗେ । ସେ ଯେପରି ଥିଲେ ଏକାଂତ ବଂଧୁପ୍ରେମୀ, ସେହିପରି ଥିଲେ ଅସାଧାରଣ ବହିପ୍ରେମୀ । ଏବଂ ଲେଖକ ଭାବରେ ମଧ୍ୟ ତାଙ୍କର ଥିଲା ଏକ ସ୍ୱାତଂତ୍ର୍ୟ । ଲେଖକ ଭାବେ ସେ ଥିଲେ ଏକପ୍ରକାର ପର୍ଫେକ୍ସନିଷ୍ଟ୍ । ଏକ ପ୍ରଶସ୍ତତର ଦିଗଂତ ଉନ୍ମୋଚନ ନ କରିବା ଯାଏଁ ଓ ଏକ ପୂର୍ଣ୍ଣତର ପରିତୃପ୍ତିର ଆସ୍ୱାଦନ ନ ପାଇବା ଯାଏଁ ଲେଖୁଥିବା ବହିଟି ଶେଷ ହେଲା ବୋଲି ସେ ଭାବୁ ନ ଥିଲେ ।

'ଅଜରମ୍' । ତାଙ୍କ ଘରର ନାଁ । ଯାହାର ଜରା ବା ବାର୍ଦ୍ଧକ୍ୟ ନାହିଁ । ଗୃହକର୍ତ୍ତା ଶିବରାମବାବୁ ସତରେ ଥିଲେ ଜରାର ସ୍ପର୍ଶ ଠାରୁ ଅନେକ ଦୂରରେ । ଚିର ତରୁଣ ଚେତନାରେ, ହୃଦୟ-ବୃତ୍ତିରେ, ମନ ଓ ମନନରେ ।

ସେଦିନ ତାଂକ ଅତିଂମ ବିଦାୟର ଖବର (ଅଧ୍ୟାପିକା ରେଣୁବାଳା ପାତ୍ରଙ୍କ ଠାରୁ ଫୋନ୍ ଯୋଗେ) ସ୍ତଂଭୀଭୂତ କରିଦେଇଥିଲା । ମାତ୍ର କେଇ ଦିନ ପୂର୍ବରୁ ଅସୁସ୍ଥ ସାହିତ୍ୟିକ ଚିଂତାମଣି ବେହେରାଂକ ଶଯ୍ୟାପାର୍ଶ୍ୱରେ ଶିବରାମ ବାବୁଂକ ସହ ଡେରି ରାତିଯାଏଁ ବସି ଗପିଥିଲି ମୁଁ । ଅସୁସ୍ଥତାର ଚିହ୍ନବର୍ଣ ନଥିଲା ତାଂକଠାରେ । ତାଂକ ଚିର ଆନଂଦାକାଂକ୍ଷୀ ଆତ୍ମା ଦୀର୍ଘକାଳ ଶଯ୍ୟାଶାୟୀ ହୋଇ କଷ୍ଟ ଭୋଗିବାକୁ ନିଶ୍ଚେ ପସଂଦ କରିନଥିବ !

ଶିବରାମ ବାବୁଂକ ପରିଚ୍ଛନ୍ନ ଓ ପ୍ରବୁଦ୍ଧ ଆତ୍ମା ନିଶ୍ଚୟ ଈଶ୍ୱରଂକ ଅମୃତ ସାନ୍ନିଧ୍ୟରେ ପରମ ଶାଂତିରେ ଥିବ !'

ପ୍ରାଧ୍ୟାପକ : ଓଡ଼ିଆ ବିଭାଗ,
ରେଭେନ୍ସା ଜୁନିୟର କଲେଜ, କଟକ

## ଅଜାତଶତ୍ରୁ ଶିବରାମ

ଡକ୍ଟର ବନମାଳୀ ବାରିକ

ଆପାଶୋରା ତୁମ ଜୀବନର ଗାଥା
କହିଲେ ସରିବ ନାହିଁ
ଅଜଣା ଲୋକକୁ ପ୍ରୀତି ପଣତରେ
ବାନ୍ଧ କିପରି ଭାଇ ?

ଶିବରାମବାବୁଙ୍କ ସହ ପ୍ରଥମ ପରିଚୟ ମୋ ଚାକିରୀର ପ୍ରାରମ୍ଭରେ (୧୯୭୨) ସଦ୍ୟ ଅଧ୍ୟାପକ ଜୀବନ । ପାଲୁର ବଂଗଳା (ବ୍ରହ୍ମପୁର)ରେ ଘରଭଡ଼ା ନେଇ ରହୁଥାଏ । ଦିନେ ସକାଳୁ ସେ ଆସି ଆମ ଘରେ ପହଞ୍ଚିଲେ । କହିଲେ ନାହିଁ କରିବେ ନାହିଁ । ଗୋଟିଏ ଦାବୀ ନେଇ ଆସିଛି । ଜଣାନାହିଁ । ଶୁଣାନାହିଁ । ଆସି ଏକାଥରେ ଦାବୀକରି ବସୁଛନ୍ତି । ମୁଁ ଶିବରାମ ପାତ୍ର । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଏମ୍.ଏ. ଶ୍ରେଣୀର ଛାତ୍ର । ଏଇ ପାଖରେ ଅଛି 'କଳିଙ୍ଗ ସାହିତ୍ୟ ସମାଜ' । ଆପଣଙ୍କୁ ତା'ର ସଭ୍ୟ ହେବାକୁ ପଡ଼ିବ । ଖାଲି ସେତିକି ନୁହେଁ-ତାର କାର୍ଯ୍ୟକାରୀ ସମିତିର ସଭ୍ୟ ମଧ୍ୟ । ହେଉ ଦେଖିବା, ହେଉ ଦେଖିବା, କଥା ହେଉ ହେଉ ସେ ଚାଲିଗଲେ । ୨/୩ଦିନ ପରେ ଚିଠି ଆସିଲା । ମୁଁ 'କଳିଙ୍ଗ ସାହିତ୍ୟ ସମାଜ'ର କାର୍ଯ୍ୟକାରୀ ସମିତିର ସଭ୍ୟ । ସଭାପତି ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ ଏଥିପାଇଁ ସଦୟ ସ୍ୱୀକୃତି ପ୍ରଦାନ କରିଛନ୍ତି ।

ତାପରେ ଅନେକ ପ୍ରସ୍ତାବ । ଅନେକ ଆଲୋଚନା । ଅନେକ ସାହିତ୍ୟ ସଭା । ଶିବରାମବାବୁଙ୍କ ଉଦ୍ୟମରେ ସବୁ ଚାଲିଥାଏ । କଳିଙ୍ଗ ସାହିତ୍ୟ ସମାଜର ବାର୍ଷିକ ମୁଖପତ୍ର । କବିସୂର୍ଯ୍ୟ ପରିକ୍ରମା । ଗୋପାଳକୃଷ୍ଣ ପରିକ୍ରମା । ଇତ୍ୟାଦି ଇତ୍ୟାଦି । ଏମ୍.ଏ. ପାଶ

କଲାପରେ ସେ ଚାଲିଗଲେ ଗୁଣୁପୁର । ସେଠାରେ ନୂଆ କଲେଜ ଖୋଲିଲା । ବ୍ରହ୍ମପୁର କାର୍ଯ୍ୟକ୍ରମ ଫିକା ପଡ଼ି ଆସିଲା । ଭାଷଣ ଦେବାକୁ ଅନେକ ଅଛନ୍ତି । ମାତ୍ର କାମ କରୁଛି କିଏ ? ଚାକିରୀ ଶେଷ ପର୍ଯ୍ୟାୟରେ ଶିବରାମବାବୁ ଆସିଲେ ଭୁବନେଶ୍ୱର । ମୋର ବି ଶେଷ ଚାକିରୀ କାଳ ଏଇଠି । ବଂଧୁତା ଅତୁଟ ।

ଆଉ ଦିନେ ଆସିଲେ । କହିଲେ- ବାହାରନ୍ତୁ । ରବି ବାବୁଙ୍କୁ (ଗାଳ୍ପିକ ରବି ପଟ୍ଟନାୟକ) ଦେଖିବାକୁ ଯିବା । ତାଙ୍କ ଦେହ ଅସୁସ୍ଥ ଥିବାର ମୁଁ ଜାଣିଥିଲି । ମାତ୍ର ସେ ଏତେ ସିରିଅସ୍ ବୋଲି ମୁଁ ଜାଣିନଥିଲି । ସାଙ୍ଗ ହୋଇ ସ୍କୁଟରରେ ଗଲୁଁ । ରବିବାବୁ ଅତ୍ୟନ୍ତ ମିଳାମିଶା ଲୋକଥିଲେ । ହସୁଥିଲେ ଠୋ ଠୋ । ସାନବଡ଼ର ଭେଦ ନଥିଲା । ସେତେବେଳେ ଭାରତୀୟ ଭୂତାତ୍ତ୍ୱିକ ସଂସ୍ଥାର ଜଣେ ଉଚ୍ଚପଦସ୍ଥ ଅଫିସର । ଆନନ୍ଦରେ କୁଣ୍ଢାଇ ପକାଉଥିଲେ । କଲେଜରେ ପଢ଼ିବାବେଳୁ ମୁଁ ତାଙ୍କ ଗଳ୍ପର ଜଣେ ମୁଗ୍ଧ ପାଠକ ଥିଲି । କେତୋଟି ଗଳ୍ପର ଚରିତ୍ର/ଘଟଣା କଥା କହିଲାବେଳେ ସେ ଜୋର ଜୋର ହସି କଥାର ଗୁରୁତ୍ୱକୁ ଆଡ଼େଇ ଯାଉଥିଲେ । ଯାହା ଦେଖିଲୁ ଖୁବ ଦୁଃଖ ଲାଗିଲା । ସେଇଟା ଶେଷ ଦେଖା । ଶେଷ କେଇପଦ କଥା । ଦିନେ/ଦୁଇଦିନ ପରେ ତାଙ୍କର ଦେହାନ୍ତ ଖବର ପାଇଲୁ ।

ଶିବରାମ ବାବୁ ଯେତେବେଳେ ଭୁବନେଶ୍ୱର ଆସୁଥିଲେ- ଆମ ଘରେ ମୁହଁ ମାରୁଥିଲେ । ସାହିତ୍ୟର ଉନ୍ନତି ପାଇଁ ଅନବରତ ଚିନ୍ତା । ଶାରଳା ପୁରସ୍କାରକୁ ସବୁବେଳେ ଆସୁଥିଲେ । ଓଡ଼ିଆ ଗବେଷଣା ପରିଷଦର ବାର୍ଷିକ ଉତ୍ସବରେ ପ୍ରାୟତଃ ଯୋଗ ଦେଉଥିଲେ । କେତେ ନୂଆ ନୂଆ ପ୍ରସ୍ତାବ ଦେଉଥିଲେ । ଅନେକ ସ୍ୱପ୍ନ ଦେଖୁଥିଲେ । ସ୍ୱପ୍ନ ଦେଖୁଥିବା ଲୋକ ହିଁ କିଛି କରିପାରେ । ଯିଏ ଜମା ସ୍ୱପ୍ନ ଦେଖେ ନାହିଁ ତାର ବଂଚିବା ମରିବା ମଧ୍ୟରେ ପାର୍ଥକ୍ୟ କଣ ? ରମାକାନ୍ତ, ମନୋଜ, ସୀତାକାନ୍ତ, ମହାପାତ୍ର ନୀଳମଣି, ଶାନ୍ତନୁ, ଚନ୍ଦ୍ର ଶେଖର-ସମସ୍ତଙ୍କ ଘରେ ତାଙ୍କର ଅବାଧ ପ୍ରବେଶ । ଜଂଜାଳଗ୍ରସ୍ତ ଜୀବନରେ ତାଙ୍କ ସହ ସବୁବେଳେ ଯିବା ସଂଭବ ନଥିଲା । ଏବେ ଭାବୁଛି-କେତେ ସୁଯୋଗ ହାତଛଡ଼ା ନକରିଛି ? କେତେ ସଜ୍ଜନଙ୍କ ସାନ୍ନିଧ୍ୟରୁ ବଂଚିତ ନ ହୋଇଛି ?

ସଂପାଦନାକୁ ସେ ଖୁବ୍ ଗୁରୁତ୍ୱ ଦେଉଥିଲେ । ସବୁକଥା ଜଣେ ଲୋକ ପକ୍ଷରେ କରିବା ସଂଭବ ନୁହେଁ ଅନେକ କାମ ବାକୀ ରହିଯାଉଛି । ତେଣୁ ବହୁ ବ୍ୟକ୍ତିଙ୍କ ଦାନରେ/ ସମ୍ମିଳିତ ପ୍ରଚେଷ୍ଟାରେ କିଛି କାର୍ଯ୍ୟ ହେବା ଦରକାର । ତାଙ୍କ ସଂପାଦିତ 'ସୁରେନ୍ଦ୍ର ବିଚାର ମଂଜୁଷା' ଏକ ଅନନ୍ୟ କୃତି । ସୁରେନ୍ଦ୍ର ମହାନ୍ତିଙ୍କ କଥାସାହିତ୍ୟ/ ଗଦ୍ୟ ସାହିତ୍ୟ ଆକଳନ କ୍ଷେତ୍ରରେ ତାହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । 'କଥା ଲାବଣ୍ୟବତୀ'ର ପ୍ରକାଶନରେ ତାଙ୍କର ବ୍ୟକ୍ତିଗତ ଉଦ୍ୟମ ବିଶେଷ ପ୍ରଶଂସନୀୟ ।

ଥରେ 'ଏକାମ୍ର କଲେଜକୁ' ଯାଇଥାଏ । ଆଗରେ ଆଣି ଥୋଇଲେ ସେଇ କଲେଜର ବାର୍ଷିକ ମୁଖପତ୍ର । ତାଙ୍କରି ସଂପାଦନାରେ ପ୍ରକାଶ ପାଇଥାଏ । ଭୁବେନଶ୍ୱର/ ଏକାମ୍ର କ୍ଷେତ୍ର ସଂପର୍କରେ ଗଭୀର ଅଧ୍ୟୟନର ଫଳଶ୍ରୁତି ହେଉଛି ତା'ର ଦୀର୍ଘ ସଂପାଦକୀୟଟି । ତାଙ୍କୁ ଥରେ ଭେଟିଲି 'ଉତ୍କଳ ସଂସ୍କୃତି ପରିଷଦ' ସେମିନାରରେ । ସେ ପଢ଼ିଲେ ଚିତ୍ରକଳା ଓ ଓଡ଼ିଆ ଉପନ୍ୟାସ' । ନୂଆ ପ୍ରକାର ପ୍ରବଂଧ । ଅନେକ ତଥ୍ୟ ଓ ଉପାଦାନରେ ସମୃଦ୍ଧ । ନୂଆ କରିବାର ନିଶା/ ଲେଖିବାର ନିଶା । ସେଦିନ ସେ ବେଶ୍ ପ୍ରଶଂସିତ ହେଲେ ମଧ୍ୟ ।

ସାଂଗଠନିକ କାର୍ଯ୍ୟରେ ସେ ଥିଲେ ଅପ୍ରତିଦ୍ୱନ୍ଦୀ । ଗୁଣୁପୁରରେ ଥିଲାବେଳେ ବଂଶଧାରା ସାହିତ୍ୟ ସମାଜ'ର ସକ୍ରିୟ କାର୍ଯ୍ୟକ୍ରମ ସମସ୍ତଙ୍କୁ ଅଭିଭୂତ କରିଥିଲା । ନବରଙ୍ଗପୁରରେ ସେଇକଥା । ଭୁବନେଶ୍ୱରରେ ମଧ୍ୟ ସେଇଆ । ଆଇ.ଏ.ଏସ୍, ଓ. ଏ.ଏସ୍ ଅଧ୍ୟାପକ, ଇଂଜିନିୟର, ଡାକ୍ତର ରାଜନେତା ସମସ୍ତଙ୍କ ସହ ତାଙ୍କର ଅନାବିଳ/ଅନ୍ତରଂଗ ସଂପର୍କ । ସମସ୍ତେ ତାଙ୍କ ସଂପର୍କରେ କିମିଆରେ ଚମତ୍କୃତ ହେଉଥିଲେ । ଉତ୍କଳର ବରେଣ୍ୟ କବି ଲେଖକ/ସାହିତ୍ୟିକମାନଙ୍କ ପ୍ରତି ତାଙ୍କର ଅମାପଶ୍ରଦ୍ଧା ଥିଲା । କେଉଁଠି କାହାର ପ୍ରତିମୂର୍ତ୍ତି ରହିବ, କେଉଁଠି କାହାର ଫଟୋ ଲାଗିବ, କେଉଁଠି କାହା ନାଁରେ ସାହିତ୍ୟ ସଂସଦ ଗଢ଼ାହେବ, କାହା ନାମରେ ପୁରସ୍କାର ବିତରଣ ହେବ କିଏ କିଏ ପୁରସ୍କାର ପାଇଲେ, କାହାପ୍ରତି ଅବହେଳା କରାଗଲା, କାହା କାହାର ପାଣ୍ଡୁଲିପି ଛପା ହୋଇ ପାରିଲା ନାହିଁ, କେଉଁ କେଉଁ ପ୍ରାଚୀନ କାବ୍ୟସବୁ ସଂଗୃହୀତ ହୋଇ ପାରିନାହିଁ, ଦୁନିଆଯାକର ଚିନ୍ତା ତାଙ୍କରି ମୁଣ୍ଡରେ ।

ଏହିସବୁ ଚିନ୍ତା ଚେତନାରେ ବୁଦ୍ଧିମନ୍ତ ମଣିଷଟିଏ ଅକସ୍ମାତ ଆମ ଗହଣରୁ ଚାଲିଗଲେ । ହଠାତ୍ ସେଦିନ ସାର୍ (ପ୍ରଫେସର ଗଗନେନ୍ଦ୍ରନାଥ ଦାଶ) ଫୋନ କଲେ । କେତେଦିନ ଏଇ ସତ୍ୟକୁ ବିଶ୍ୱାସ କରିହେଲା ନାହିଁ । ଖାଲି ରାଧାନାଥଙ୍କର ଧାଡ଼ିଟିଏ ମନେ ପଡ଼ିଲା- ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି ।'

ଲକ୍ଷ୍ମୀସାଗର (ଉପରସାହି)
ଭୁବନେଶ୍ୱର

## ସୁଦୂର ଗୁଣୁପୁରର ଜଣେ ବ୍ୟକ୍ତି

ମମତା ଦାଶ

୧୯୮୦ ମସିହାରେ ଶିବରାମବାବୁ ପ୍ରଥମେ ଆମଘରକୁ ଆସିଥିଲେ । ସେତେବେଳେ ଆମେ ବ୍ରହ୍ମପୁରରେ ଥାଉ ଓ ସେ ଥାନ୍ତି ଗୁଣୁପୁରରେ । ସେ ସେଦିନ ମୋତେ ତାଙ୍କର ପରିଚୟ ଦେଇ ସାରି କହିଲେ ଯେ, ସେ ମୋତେ ମୋର କବିତା ପାଇଁ ବଧାଇ ଦେବାକୁ ଆସିଛନ୍ତି । ସେତେବେଳକୁ ମୋର କବିତା ଲେଖା ଏକ ନୂଆ ପର୍ଯ୍ୟାୟରେ ପହଞ୍ଚିଥାଏ ଓ ତାହା ମୋର କବି ଜୀବନର ଏକ ସମୃଦ୍ଧ ସମୟ । ଶିବରାମବାବୁ ମୋର କବିତା ସଂବଂଧରେ ଏତେ ଉଲ୍ଲସିତ ଥିଲେ ଯେ, ମୁଁ ଖୁବ୍ ଉତ୍ସାହିତ ହୋଇଗଲି । ସୁଦୂର ଗୁଣୁପୁରର ଜଣେ ବ୍ୟକ୍ତି ମୋର କବିତା ପଢ଼ି, ତାକୁ ଭଲପାଆନ୍ତି ଓ ତାହା ମୋତେ ଜଣାଇବାକୁ ଆସିଛନ୍ତି । ଏହାଠାରୁ ଆନନ୍ଦର କଥା କ'ଣ ହୋଇପାରେ ?

କଥା ପ୍ରସଙ୍ଗରେ ସେ ଯେତେବେଳେ ଜାଣିଲେ ଯେ, ତାଙ୍କଭଳି ମୁଁ ମଧ୍ୟ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର ଆଧ୍ୟାତ୍ମିକ ଧାରାରେ ବିଶ୍ୱାସୀ, ସେ ଖୁବ୍ ଖୁସି ହୋଇଗଲେ ଓ କହିଲେ, ''ସେହି ପ୍ରଭାବରେ ହିଁ ଆପଣଙ୍କର କବିତା ଭିତରେ କିଛି ଗୋଟିଏ ରହସ୍ୟର ଆଲୋକ ଦେଖାଦେଇଛି ।'' ତା'ପରେ ଶିବରାମ ବାବୁ ବହୁଥର ଆମଘରକୁ ଆସିଛନ୍ତି । ସେ

ହଠାତ୍ ଆସି ପହଞ୍ଚିଯାନ୍ତି ଓ ସାହିତ୍ୟ ଆଲୋଚନା କରିବାକୁ ଆରମ୍ଭ କରନ୍ତି । ମୋର କବିତା ଉପରେ ମନ୍ତବ୍ୟ ଦିଅନ୍ତି ଓ ସ୍ପଷ୍ଟ ଭାବରେ କହିଦିଅନ୍ତି, ''ଏ କବିତାଟି ତ ଭଲ ହେଲା ନାହିଁ ।'' ତାଙ୍କର କଥାବାର୍ତ୍ତାରେ ପରିସର ଭିତରେ ପୁରସ୍କାର, ତିରସ୍କାର, ସାହିତ୍ୟିକଙ୍କର ବ୍ୟକ୍ତିତ୍ୱର ଆଲୋଚନା ସମାଲୋଚନା ଆସୁନଥିଲା । ସେ ସାହିତ୍ୟକୁ ଭଲ ପାଉଥିଲେ । ଖାଲିଟାରେ କାହାକୁ ପ୍ରଶଂସା କରିବାର ଅଭ୍ୟାସ ତାଙ୍କର ନଥିଲା, ଖୋଲା ମଣିଷ ଜଣେ ଥିଲେ ସିଏ । ନିର୍ଭୀକ ଭାବରେ ନିଜର ମତାମତ କହି ଦେଉଥିଲେ, କିଏ କ'ଣ ଭାବିବ ସେ ସଂବଂଧରେ ସେ ସଚେତନ ଥିବା ଭଳି ମୋର କେବେ ମନେ ହୋଇନାହିଁ ।

ମୁଁ ଯେତେବେଳେ ଗପ ଲେଖିବାକୁ ଆରମ୍ଭ କଲି, ମୋର ପ୍ରଥମ ଗପଟି ନବଲିପିରୁ ପଢ଼ି ସେ ଲେଖିଥିଲେ ମୋର କବିତାର ଗଭୀରତା କମିଯିବ, ତେଣୁ ଗପ ଲେଖିବା ଉଚିତ ନୁହେଁ । ମୁଁ ମୋର ମତ ଜଣାଇଥିଲି । ଆଶ୍ଚର୍ଯ୍ୟର କଥା ଯେ, ପରେ ପରେ, ମୋର ପ୍ରତିଟି ଗପ ପଢ଼ି, ସେ ସେଥିରୁ ଉଦ୍ଧୃତି ଦେଇ, ତାଙ୍କର ମନ୍ତବ୍ୟ ଦେଇଥିଲେ ଓ ମୋର ଗପ ମଧ୍ୟ ଖୁବ୍ ଭଲ ହେଉଛି ବୋଲି ଲେଖିଥଲେ । ମୋର ଅନୁବାଦ ସଂବଂଧରେ ସେ ବି ସମାନ ମତ ପୋଷଣ କରୁଥିଲେ । ମୋଟ ଉପରେ, ଶିବରାମବାବୁ ମୋର ସାହିତ୍ୟିକ ଜୀବନର ପ୍ରତିଟି ଅଗ୍ରଗତି, ପ୍ରତିଟି ଅବହେଳାକୁ ଟିକିନିଖି ଦେଖୁଥିଲେ ଓ ମୋତେ ଏକଥା ଲେଖି ଜଣାଉଥିଲେ । ଏ ସଂବଂଧରେ ମୁଁ ସେତେବେଳେ ସଚେତନ ନଥିଲି କିମ୍ବା କେବେ ବି ତାଙ୍କୁ ଏଥିପାଇଁ କୃତଜ୍ଞତା ଟିକିଏ ବି ଜଣାଇନାହିଁ ।

ଆଜି ଯେ ଏତେ କଥା ଲେଖୁଛି, ତାହା ପଢ଼ିବା ପାଇଁ ସେ ଆଉ ଏ ପୃଥିବୀରେ ନାହାନ୍ତି । ବିଶ୍ୱାସ ହେଉନାହିଁ, ମୋର ଅତି ସ୍ନେହର ପ୍ରିୟମ୍ବଦା ତ ମୋତେ ଚିଠି ଲେଖିଛି, ତାଙ୍କ ସହିତ ମୋର ସଂପର୍କର କିଛି ବିଶେଷ ସ୍ମୃତି ସଂବଂଧରେ ଲେଖିବାପାଇଁ ।

ମୁଁ ପ୍ରିୟମ୍ବଦାକୁ କ'ଣ ସାନ୍ତ୍ୱନା ଦେବି ? ଯେଉଁମାନେ ଏ ପୃଥିବୀର ଅଯଥା ମାୟା ମୋହ ଛାଡ଼ି ଚାଲିଯାନ୍ତି, ସେମାନେ ଭାଗ୍ୟବାନ, କାରଣ, ମୃତ୍ୟୁ ହିଁ ସେମାନଙ୍କୁ ଏକ ନୂତନ ଜୀବନର ପ୍ରତିଶ୍ରୁତି ଦେଇଥାଏ । ଆମେ, ଯେଉଁମାନେ ରହିଯାଉ, ପ୍ରିୟ ଲୋକଟିର ଶୂନ୍ୟସ୍ଥାନଟିର ଅହରହ ଯନ୍ତ୍ରଣାକୁ ସାମ୍ନା କରିଥାଉ । ତାହା ଆଉ କେବେ ବି ସମାହିତ ହୁଏନାହିଁ ।

ସେ ମା' ଓ ଶ୍ରୀଅରବିନ୍ଦଙ୍କର ମାର୍ଗ ଅନୁସରଣ କରୁଥିଲେ, ତେଣୁ ମୃତ୍ୟୁ ତାଙ୍କପାଇଁ କିଛି ଗୋଟିଏ ବଡ଼ କଥା ନୁହେଁ, ସେ ତାଙ୍କର ଆଗାମୀ ଜନ୍ମଜନ୍ମାନ୍ତରରେ ବି ସେହି ଆଧ୍ୟାତ୍ମିକ ପଥରେ ଅଗ୍ରଗତି କରିବେ, ଏ ପ୍ରତିଶ୍ରୁତି ମା, ଶ୍ରୀ ଅରବିନ୍ଦ ଦେଇଛନ୍ତି ।

ତିନିବର୍ଷ ତଳେ, ଭୁବନେଶ୍ୱର ପୁସ୍ତକ ମେଳାରେ ତାଙ୍କ ସହ ଦେଖା ହୋଇଥିଲା, ଅନେକ ବର୍ଷ ପରେ । ସେ ଖୁସି ହୋଇଗଲେ, କହିଲେ, 'ଆପଣ ଦିହେଁ ଖୁବ୍ ଭଲ ଦିଶୁଛନ୍ତି । ଜୀବନର ସବୁ ଆଶା ପୂର୍ଣ୍ଣ ହୋଇଗଲା ଭଳି ।' ଆମେ ସେତେବେଳେ କରାଇକଲରେ ଥାଉ, ଜୀବନର ଘୋରତମ ଦୁର୍ବିପାକ ଭିତରେ ଗତି କରୁଥାଉ । ମୁଁ ସେସବୁ କିଛି କହିଲିନାହିଁ, 'ଆପଣ ବୋଧହୁଏ ଆମ ଆତ୍ମାକୁ ଦେଖୁଛନ୍ତି । ପଣ୍ଡିଚେରୀ ନିକଟରେ ଅଛୁ, ଏହି ଆଶ୍ୱାସନାରେ ଆମର ଆତ୍ମା ରହିଛି ତ ସେଥିପାଇଁ । ଆପଣ କେବେ ପଣ୍ଡିଚେରୀ ଆସନ୍ତୁ ।' ସେ ପ୍ରତିଶ୍ରୁତି ଦେଇଥିଲେ ଆସିବେ ବୋଲି । ମୁଁ ପ୍ରତିଶ୍ରୁତି

ଦେଇଥିଲି, ତାଙ୍କର ସଦ୍ୟ ପ୍ରକାଶିତ ବହି ସୁରେନ୍ଦ୍ରବିଚାର ମଞ୍ଜୁଷାର ସମାଲୋଚନା ଲେଖିବାପାଇଁ । ମୁଁ ମୋର ପ୍ରତିଶ୍ରୁତି ଏଯାଏଁ ରଖିନାହିଁ ।

ମା ଓ ଶ୍ରୀ ଅରବିନ୍ଦ ନିଶ୍ଚିତ ଭାବରେ ତାଙ୍କର ଆତ୍ମାର ଦାୟିତ୍ୱ ନେଇଥିବେ ଓ ସେମାନଙ୍କର କରୁଣା ମଧ୍ୟରେ ସେ ନିଶ୍ଚିତ ଆଶ୍ରୟ ଗ୍ରହଣ କରିଥିବେ, ତାଙ୍କର ସାଧନାର ପଥ, ମା' ଶ୍ରୀଅରବିନ୍ଦଙ୍କ ଦ୍ୱାରା ହିଁ ନିର୍ଣ୍ଣୀତ ହୋଇଥିବ । ଆଜି, ତାଙ୍କର ସ୍ମୃତି ଦିବସରେ, ମୋର ଏହି ବିଶ୍ୱାସ ଓ ଶୁଭେଚ୍ଛାକୁ ମୁଁ ଈଶ୍ୱରଙ୍କ ନିକଟରେ ନିବେଦନ କରୁଛି ।

ପଣ୍ଡିଚେରୀ

## ମନେପଡ଼େ

ପ୍ରଫେସର୍ କୃଷ୍ଣଚନ୍ଦ୍ର ଜେନା

ଭଞ୍ଜବିହାରକୁ ଆସିବା ପୂର୍ବରୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଓ ଇତିହାସ ବିଭାଗ ଗୋଟିଏ ଘରେ ହେଉଥିଲା । ତେଣୁ ଓଡ଼ିଆ ବିଭାଗର ପିଲାମାନଙ୍କ ସହ ସହଜ ପରିଚୟ ।

ଶିବରାମ ସେତେବେଳେ ଓ.ଆର.ଟିରେ ଥିଲେ । ସେ ଗୋଟିଏ ସାହିତ୍ୟ ଅନୁଷ୍ଠାନ କରିବା ପ୍ରସ୍ତାବ କଲେ । କଳିଙ୍ଗ ସାହିତ୍ୟ ସମାଜର ପ୍ରତିଷ୍ଠା କଲେ । ପ୍ରଥମ ବର୍ଷ ଆମର ଗୁରୁଦେବ ଡକ୍ଟର ବେଣୀମାଧବ ପାଢ଼ୀ ସଭାପତି ହେଲେ ।

ଆଉ ଥରକ କଥା । ସ୍ୱର୍ଗୀୟା ନଳିନୀ ଦେବୀ ରାଉତରାୟ ମତେ ଖଣ୍ଡେ ଚିଠି ଲେଖିଥିଲେ ତାଙ୍କର ମରୁତୀର୍ଥ ପାଇଁ ଲେଖାଟିଏ ଦେବାପାଇଁ । 'ମରୁତୀର୍ଥ'ର ସେହି ଶେଷ ସଂଖ୍ୟା ପାଇଁ ମୁଁ ଶ୍ରୀଅରବିନ୍ଦଙ୍କ ଦର୍ଶନ ଉପରେ ଲେଖାଟିଏ ପଠାଇଲି । ତେବେ ନଳିନୀ ଦେବୀ ମତେ କିପରି ଜାଣିଲେ ବୁଝି ନ ଥିଲି । ଏହାର କେତେ ବର୍ଷ ପରେ ନବରଙ୍ଗପୁର କଲେଜକୁ କୌଣସି କାମରେ ଯାଇଥିଲି । ଶିବରାମ ସେତେବେଳେ ନବରଙ୍ଗପୁରରେ । ସେଠାରେ ସେ କହିଥିଲେ- ମୋ ଠିକଣା ନଳିନୀ ଦେବୀଙ୍କୁ ସେ ଦେଇଥିଲେ । ଶିବରାମଙ୍କର ମୋ ପ୍ରତି ଭକ୍ତି ଥିଲା- ଶ୍ରଦ୍ଧା ଥିଲା ।

ଆଜି ଏହା ସବୁ ମନେ ପଡ଼ିବାରୁ ମୁଁ ବ୍ୟଥିତ । ସାଧାରଣ ଭାବରେ ସେ ଆତ୍ମ ପ୍ରଚାରକ ନୁହଁନ୍ତି । ଗୋଟିଏ କଥା ମହାଭାରତରୁ କହୁଛି- ମଣିଷ ତିନୋଟି ଚିନ୍ତାରୁ ମୁକ୍ତ ହେବା ଆବଶ୍ୟକ । ତାହା ହେଲା- ଇଚ୍ଛା, ଭୟ ଓ କ୍ରୋଧ । ଉଣା ଅଧିକେ ଶିବରାମ ଏହି ତିନୋଟିକୁ ଅକ୍ତିଆର କରିଥିଲେ ।

ବୋଧହୁଏ ଅନେକ କଥା ହୋଇପାରିନି । ଗୁଣପୁର ଓ ନବରଙ୍ଗପୁରରେ ଥିଲାବେଳେ ଆଦିବାସୀ ସାହିତ୍ୟ ଉପରେ ବହୁ ଲେଖା ସମ୍ପନ୍ନ କରିଥିଲେ । ତାହା ଅଧୁରା ରହିଗଲା । ଗବେଷଣା କରୁଥିଲେ- ତାହା ମଧ୍ୟ କେଉଁଠି ରହିଲା, ଆଉ କରି ପାରିଲେନି । ଜୀବନରେ ବହୁ ସ୍ୱପ୍ନ ପାଇଁ ତ ରାତି ଅଣ୍ଟେ ନାହିଁ । ହଠାତ୍ ରାତି ସରିଯିବ, କିଏ କହି ପାରିବ ?

ମୋର ମନେ ପଡ଼େ- ଯେଉଁଠି ଦେଖିଲେ ହସି ହସି 'ସାର୍ କେମିତି ଅଛନ୍ତି । କ'ଣ କରୁଛନ୍ତି ?' ପ୍ରଶ୍ନ ପଚାରିବେ । ପରିବାର କଥା ପଚାରିବେ । ଆଜି ଶିବରାମର ବିୟୋଗରେ ମୁଁ କେବଳ ଜଣେ ପ୍ରିୟ ଛାତ୍ରକୁ ହରାଇଲି ନୁହେଁ, ଆମ ସମାଜ, ଆମ ସାହିତ୍ୟ ଓ ଆମ ସାମ୍ବାଦିକ ଜୀବନର ଏକ ନିର୍ମଳ, ମଧୁର, ଚିର-ଚଞ୍ଚଳ ପାହାଡ଼ି ଝରଣାଟିଏ ଅସମୟରେ ବାଲୁଚରରେ ହଜିଗଲା । ଶିବରାମର ଆତ୍ମା ଶାନ୍ତି ପାଉ ।

ବ୍ରହ୍ମପୁର

## ସ୍ମୃତି-ଶୈଳ-ଶିଖରରେ ଶିବରାମ ପାତ୍ର

**ନିରଞ୍ଜନ ପାଢ଼ୀ**

ପୁସ୍ତକମେଳାର ଗହଳଚହଳ ପଣ । ସେଠି ବହି ଷ୍ଟଲ୍‌ଗୁଡ଼ିକର ଧାଡ଼ିକିଧାଡ଼ି ଗଳିରେ ଥରକୁ ଥର ଯାଉଥିବା ଫେରୁଥିବା, ହସୁଥିବା, ବହି ଦେଖୁଥିବା, ସାରସ୍ୱତ ବଂଧୁମାନଙ୍କୁ ଆଦର ସମ୍ଭାଷଣ କରୁଥିବା, ଗପ କରୁଥିବା, ଥଟ୍ଟା ପରିହାସ କରୁଥିବା, ସାହିତ୍ୟର ବିଭିନ୍ନ ଦିଗକୁ ଆଲୋଚନା କରୁଥିବା, ନିଜର ମନ୍ତବ୍ୟ ଓ ପରାମର୍ଶ ଦେଉଥିବା ମଣିଷଟିକୁ ଏବର୍ଷ (୨୦୦୫) ପୁସ୍ତକ ମେଳାରେ ଆଉ ଦେଖିବାକୁ ମିଳିନଥିଲା । ଠିକ୍ ସେତିକିବେଳେ ସ୍ମୃତିକୁ ବିଦାରି ହୃଦୟ ଭିତରେ ବାତ୍ୟା ପରି ଧସେଇ ପଶି ଆସିଥିଲା ବର୍ଷକ ତଳର ଏକ ଦାରୁଣ ଦୁଃସମ୍ବାଦ ସେ ଆଉ ଏଣିକି ପୁସ୍ତକମେଳାରେ ଦେଖିବାକୁ ମିଳିବେନାହିଁ । ନିୟତିର ଏହି ଚରମ ନିଷ୍ପତ୍ତି କଠୋର ଏକ ସତ୍ୟର ନୂତନ ନାମକରଣ ମାଧମରେ ମୋତେ ହତବାକ୍ କରିଦେଇ ଥିଲା । ତାଙ୍କ ସଂସ୍ପର୍ଶରେ ଆସିଥିବା ସମସ୍ତଙ୍କର ଅନୁଭୂତି ଏମିତି ହୋଇଥିବ ନିଶ୍ଚୟ ।

ରାମଙ୍କ ପରି ଅମୃତ ବାଣ୍ଟୁଥିଲେ ତ ଶିବଙ୍କ ପରି ହଳାହଳ ବିଷକୁ କଣ୍ଠସ୍ଥ, ଉଦରସ୍ଥ ଓ ଆତ୍ମସ୍ଥ କରୁଥିଲେ । ପିତାମାତାଙ୍କ ପ୍ରଦତ୍ତ ଏକ ଅମୂଲ୍ୟ ନାମକରଣକୁ ସେ ମର୍ଯ୍ୟାଦା ଦେଇଥିଲେ ।

ଯେତେବେଳେ ଭେଟହୁଏ, ତାଙ୍କ ତୁଣ୍ଡରୁ ଶୁଭେ ସାହିତ୍ୟର ଅମୃତବାଣୀ । ସବୁବେଳେ ସାହିତ୍ୟ ଚର୍ଚ୍ଚା । ସାହିତ୍ୟିକ ସ୍ୱର୍ଗୀୟ ସତ୍ୟାନନ୍ଦ ବେହୁରାଙ୍କର ମଣିଷପଣିଆ ଓ ସାହିତ୍ୟକୃତିକୁ ଆଧାରକରି କିଛି ଗବେଷଣାରେ ସହଯୋଗ କରିବାପାଇଁ ଅନୁରୋଧ କରିଥିଲେ ଓ ପ୍ରସ୍ତାବ ବାଢ଼ିଥିଲେ । କିନ୍ତୁ ନିୟତିର ନିଷ୍ଠୁର ନିଷ୍ପତ୍ତି ଯୋଗୁ ତାଙ୍କର ଏହି ସ୍ୱପ୍ନ ଅଧୁରା ରହିଗଲା । ସେ ଖୁବ୍ ବ୍ୟସ୍ତ ହୋଇ କହୁଥିଲେ । ନବରଙ୍ଗପୁର ଜିଲ୍ଲାର ଉମରକୋଟ ଭଳି ଏକ ଉପାନ୍ତ ଅଂଚଳରେ ଏଭଳି ଏକ ଆଗଧାଡ଼ିର ମଣିଷ ଓ ସାରସ୍ୱତ ପ୍ରତିଭାକୁ ଆମ ପରର ଯୁବଗୋଷ୍ଠୀ କ'ଣ ବିସ୍ତୃତ ଭାବରେ ଜାଣିବା ଉଚିତ ନୁହେଁ ! ସାହିତ୍ୟପ୍ରତି, ସାରସ୍ୱତ ସାଧକମାନଙ୍କ ପ୍ରତି ତାଙ୍କର ଅଦ୍ଭୁତ ଏହି ଅଙ୍ଗୀକାରବଦ୍ଧତା ।

ମୁଁ ତାଙ୍କ ଘରକୁ ଯାଇଛି । ମାତ୍ରାଧିକ ଆଦର/ସମ୍ମାନ ପାଇଛି । ସେ ସବୁ ଏବେ ସ୍ମୃତି । ସେ ନିଜେ ତ ଏବେ ଏକ ସ୍ମୃତିର ଅମ୍ଳାନ ଝଲକ । ଏବେ ତାଙ୍କର ଦେହ ନାହିଁ, ଦ୍ୟୁତି ଅଛି । ଭୌତିକ ଶରୀର ନାହିଁ, ଆଧିଭୌତିକ ଚେତନା ଅଛି । ଶିବ ଅମର । ରାମ ଅମର । ତାଙ୍କର ଖୁବ୍ ପ୍ରିୟପାତ୍ର ଶିବରାମ ପାତ୍ର ହିଁ ଅମର ।

୩୪୮, ଓକିଲ ବାଗଭୁବନେଶ୍ୱର

# ଯାଦୁକରର 'ୱାଟର ଅଫ ଇଣ୍ଡିଆ'

ଗୋଲାପ ମଞ୍ଜରୀ କର

ବଞ୍ଚିବା ଏକ କଳା, କିନ୍ତୁ ଅନ୍ୟ ପାଇଁ ବଞ୍ଚିବା ଏକ ତପସ୍ୟା ସେମିତି ଏକ ତପସ୍ୟାର ଏକନିଷ୍ଠ ତପସ୍ୱୀ ଥିଲେ ଶିବରାମ ପାତ୍ର, ଆମ ପରି ଅନେକ ମଣିଷଙ୍କର ଅତିପ୍ରିୟ ଶିବରାମ ଭାଇ । ତାଙ୍କର ଝୁଲାମୁଣି ଭିତରେ ସେ ସାଇତି ରଖିଥିଲେ ତକ୍ତକ୍ ଆକାଶଟେ, ଝକଝକ ଜହ୍ନରାତିଟେ, ଛଳଛଳ ନଈଟେ, ଧୋବ ଫରଫର କାଶତଣ୍ଡୀଟେ, ଉଚ୍ଛୁଳା-ହସର ମାଣିକଟେ, ଉବୁଟୁବୁ ଖୁସିର ମୁକ୍ତା ଖଣ୍ଡେ ଆଉ ଛନଛନ ଚାରାଗଛଟେ । ତାଙ୍କ କାନ୍ଧର ସେ ଝୁଲାମୁଣି ଉପରେ ଥିଲା ସମସ୍ତଙ୍କର ଦାବି, ସମସ୍ତଙ୍କର ଅଧିକାର । ଯିଏ ଯେତେବେଳେ ମନ ହାତ ପୂରାଇ ଦେଉଥିଲା, ବାହାର କରି ଆଣୁଥିଲା ନିଜ ପସନ୍ଦର ଚିଜମେଞ୍ଚାଏ ଜ୍ୟୋସ୍ନା, ଗଜୁରି ଆସୁଥିବା ଗଛର ଚାରା, ଅରାଏ ଦୂବଘାସ, ମୁଠାଏ ଆକାଶ କି ଆଞ୍ଜୁଳାଏ ପାଣି । କାହାର ଶୋଷ ମେଣ୍ଟୁଥିଲା ତ କାହାର ଆଶା, କାହାର ହୃଦୟ ଭରୁଥିଲା ତ କାହାର ମନ । ତଥାପି ଝୁଲାମୁଣି ଖାଲି ହେଉ ନଥିଲା, ଯାଦୁକରର 'ୱାଟର ଅଫ ଇଣ୍ଡିଆ'ର ପାଣି ପରି କେଇଟା ମୁହୂର୍ତ୍ତରେ ଭରି ଭରି ଯାଉଥିଲା ।

ତାଙ୍କ ସହିତ ଅନ୍ତରଙ୍ଗ ହେବାର ସୁଯୋଗ ମୋର ଖୁବ୍ ବେଶି ଆସି ନଥିଲା । ପଦେ ଅଧେ କଥା, ମନଖୋଲା ହସ କି ଅଳ୍ପ ଟିକେ ଥଟ୍ଟା, ପରିହାସ-ତଥାପି କେମିତି କେଜାଣି ସେ ନିକଟେଇ ଆସିଥିଲେ, କୋଉ ଛଟକରେ ହୃଦୟର କିଛି ଜାଗା ଦଖଲ କରି ବସିଥିଲେ, ଯାହା ଜଣାପଡ଼ିଲା ସେ ଚାଲିଗଲା ପରେ ।

ଖରାସିଝା ଦି'ପହରେ ଥଣ୍ଡା ଥଣ୍ଡା ପାଣି ଗ୍ଲାସେ ପରିଥିଲା ତାଙ୍କର ପରିହାସ-ମିଶା ଟିପିକାଲ୍ କଥା, ନିର୍ମଳ ପବନ ମେଞ୍ଚାଏ ପରି ଥିଲା ତାଙ୍କର ଖୋଲା ହସ, କଞ୍ଚା, ପାଚିଲା ନିଶ ଦାଢ଼ି ଭରା ମୁହଁ ଥିଲା ବାପା କି ଭାଇପରି ଅତି ଆପଣାର ମୁହଁଟିଏ ।

ହୋ ହୋ ହସ ଆଉ ଚଟୁଳ ପରିହାସର ବର୍ଷାରେ ଗାଧୋଇ ପକାନ୍ତି ପାଖ ଆଖର ଲୋକଙ୍କୁ, ସାରା ପରିବେଶକୁ । ଶୋଷ କରୁଥିବା ଲୋକଙ୍କୁ ବତାଇଦିଅନ୍ତି ନଈର ଠିକଣା, ଦୁଃଖ-ତାପରେ ସିଝୁଥିବା ଲୋକକୁ ବଢ଼ାଇଦିଅନ୍ତି ବିଶ୍ୱାସର କାତଟିଏ ।

ବେଳ, ଅବେଳରେ, ଉତ୍ସବରେ କି ବଜାରରେ ଯୋଉଠି ଦେଖାହେଲେ ବି ସେଇ ଗୋଟିଏ ଅନୁରୋଧ, ''ମଉଳିଯିବା ଆଗରୁ ବାହାରନ୍ତୁ ଟି.ଭି ପର୍ଦ୍ଦାରେ । କବି, କବିତା ଦି'ଜଣଯାକଙ୍କୁ ନେଇ ମୁଁ ମନବୋଧିଆ ଗୋଟେ ଇଣ୍ଟରଭିଉ କରିବି । ଏକାସଙ୍ଗେ ଦି'ଜଣଙ୍କୁ ଦେଖିଲେ ସିନା ଆନନ୍ଦ ଲାଗିବ । ମୁଁ ବି କଥା ଦେଇଥିଲି ଯିବି ତାଙ୍କ ଘରକୁ, ଦେଖିବି ତାଙ୍କ ଝାଙ୍କନିଗିଡ଼ା ଘରକୁ, ବଗିଚାକୁ, କଷ୍ଟରେ ସଂଗୃହୀତ ଟେରାକୋଟାର ଅଲଭ୍ୟ ସମ୍ଭାରକୁ । ଯିବି ଯିବି ବୋଲି ସମୟ ଗଡ଼ିଗଲା, ଉଡ଼ିଗଲା କାଳି । ଅବଶେଷରେ ଗଲି ସେ ନଥିବା ତାଙ୍କ ଘରକୁ, ଡବଡବ ଆଖିରେ ଦେଖିଲି ତାଙ୍କ 'ଅଜରମ୍'କୁ, ଶୋଇଥିଲେ ସବୁଦିନ ପରି ନିର୍ବିକାର, ନିରାଇମ୍ବ ହୋଇ, ଶିବଲକ୍ଷ୍ମୀଙ୍କର ବୋକା ବୋକା ଚାହାଣୀ,

ଆକୁଳ କାନ୍ଦ କି ବନ୍ଧୁବାନ୍ଧବଙ୍କର ବିକଳ ଭାବର ବହୁ ଊର୍ଦ୍ଧ୍ୱରେ । ଜୀବନକୁ ଯେମିତି ସେ ହାତ ମୁଠାରେ ପୂରାଇ ଚାଲୁଥିଲେ ସେମିତି ବି ସାମ୍‌ନା କଲେ ମୃତ୍ୟୁକୁ ଅବିଚଳିତ ଯୋଦ୍ଧାର ମନୋବଳ ନେଇ ।

ଆମ ଘରର ପ୍ରତିଷ୍ଠା ଉତ୍ସବକୁ ଆସିବାର ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ବହୁ ଆଗରୁ । ଶିବରାମ ଭାଇ ଆସିବେ ସବୁଠୁ ଆଗ, ଦୁଇହାତରେ ଦୁଇମୁଠା ସ୍ୱପ୍ନ ନେଇ ବିଞ୍ଚିଦେବେ ଆମ ଅଗଣା, ସାରା ଘର ଓ ତମାମ ଜୀବନ । ଆମ ଘରକୁ ଆସିବାର ପ୍ରସ୍ତୁତି କରୁ କରୁ ବାଟ ବୁଡ଼ିଯିବେ, ନିଜ ବାହୁଡ଼ା ପର୍ବର ପ୍ରସ୍ତୁତି କରିବେ, କିଏ ଭାବିଥିଲା, କିଏ ଜାଣିଥିଲା ?

ବର୍ଷଟିଏ ପୂରିଗଲା, ଘୂରିଗଲା, ସମୟର ଚକ । ଏବେ ବି ଦିଶିଯାଉଛି ତାଙ୍କର ହସହସ ମୁହଁ, ଛାତି ଭିତରେ ଜଳିଉଠୁଛି ନିଆଁ ଝୁଲଟିଏ । ଶୁଭିଯାଉଛି ଦକ୍ଷିଣୀ ଓଡ଼ିଆର ଲୟ ଲୟ ଉଚ୍ଚାରଣ ଭିତରେ ସେଇ ଦି' ପଦ କଥା, ''ମୁଁ ଆସିବି ହେ ! ତମ ରଙ୍ଗ ଗାଡ଼ିରେ ମତେ ନେଲେ, ତମ ଘରକୁ ଆସିବି ନା ! ରଙ୍ଗ ଗାଡ଼ି ଅପେକ୍ଷା କରିଛି ଏବେ ବି, ଶିବରାମ ଭାଇଙ୍କୁ ନେଇ ଆମ ନୂଆ ଘରକୁ ଆସିବ ବୋଲି... !!

ଚନ୍ଦ୍ରଶେଖରପୁର,ଭୁବନେଶ୍ୱର-୧୬

## ଅବିରାମ ସାଧକ ଶିବରାମ ସାର୍‌

ସତ୍ୟନାରାୟଣ ଗନ୍ତାୟତ

ଫେବୃୟାରୀ ୧୯, ୨୦୦୫ ।

ମୁଁ ଓ ବଂଧୁ ରମାକାନ୍ତ ଲେଙ୍କା ଓଡ଼ିଶା ସାହିତ୍ୟ ଏକାଡ଼େମୀକୁ ଯାଇଥାଉ । ସେଠି ଆମକୁ ସହାସ୍ୟ ବଦନରେ ସ୍ୱାଗତ କଲେ ଶିବରାମ ପାତ୍ର ସାର୍ । ସେ ଆସିଥାନ୍ତି ଏକାଡ଼େମୀର ଅଭିଧାନ କମିଟି ବୈଠକରେ ଯୋଗଦେବା ପାଇଁ । ତ' ପ୍ରତିଥର ଭଳି ଚାଲିଲା ଅନେକ କଥା - ସାହିତ୍ୟକୁ ନେଇ । ଆମ ଜିଲ୍ଲାର ସ୍ମରଣିକା 'ଚଇତାଳି' ପାଇଁ ଅଳି କରନ୍ତେ ଅଧ୍ୟାପକ ଭଗବତ୍ ପ୍ରସାଦ ରଥଙ୍କୁ ନେଇ ଆଲେଖ୍ୟଟିଏ ସେ ପ୍ରସ୍ତୁତ କରି ପଠାଇବାର ପ୍ରତିଶ୍ରୁତି ଦେଲେ । ସାର୍ ଆମକୁ ଅନୁରୋଧ କଲେ ଆମକୁ ଆଂଚଳିକ ଶବ୍ଦ ସଂଗ୍ରହ ପାଇଁ । ଅଳ୍ପ ସମୟ ଭିତରେ ଏତେ ଆଳାପ ସତ୍ତ୍ୱେ ସେ ଥିଲେ ଅତୃପ୍ତ । ପ୍ରତିଥର ଭଳି ଅତି ଅନ୍ତରଙ୍ଗ ଭାବରେ ଆମଂତ୍ରଣ କଲେ ଘରକୁ ଆସିବାକୁ, ଯଦି ହୁଏ ଦିନେ ସେଠି ରହିଯିବାକୁ ।

ଏବଂ ଯା'ର ସପ୍ତାହେ ପରେ...... ।

ମାତ୍ର ସପ୍ତାହକ ତଳେ ଏଭଳି ସୌଖ୍ୟ, ଏଭଳି ସୌଜନ୍ୟସଂବଳିତ ସଂପୃକ୍ତି

ମାଧମରେ ସମଗ୍ର ସତ୍ତାରେ ସଂଚରି ପାରୁଥିବା ସାର୍ ଆର ପାରିକୁ ଚାଲିଗଲେ ତହିଁ ଆର ସପ୍ତାହରେ !

ସାର୍‌ଙ୍କ ସହ ଆମ ଦୁଇଭାଇଙ୍କ ସଂପର୍କ ଥିଲା ଏକାନ୍ତ ଆତ୍ମିକ । ଆମେ କେହି ତାଙ୍କ ପ୍ରତ୍ୟକ୍ଷ ଛାତ୍ର ନଥିଲୁ । ଅଥଚ ପ୍ରତ୍ୟକ୍ଷ ଗୁରୁଙ୍କଠୁ ବି ସେ ଅତି ପ୍ରତ୍ୟକ୍ଷ ଥିଲେ ଆମର ।

ମନେପଡୁଛି ମୋ କୈଶୋରର ସ୍ମୃତି । ୧୯୮୧ରେ ରାୟଗଡ଼ା ଠାରେ ଅନୁଷ୍ଠିତ କୋରାପୁଟ ଜିଲ୍ଲା ସାହିତ୍ୟ ସମ୍ମେଳନରେ ଭାବପୂର୍ଣ୍ଣ କବିତାଟିଏ ଆବୃତ୍ତି କରି ନିଜେ ଅଶ୍ରୁ ସଜଳ ହେବା ସହ ଶ୍ରୋତୃମଣ୍ଡଳୀକୁ ସାର୍ କରିଦେଇଥିଲେ ଅଶ୍ରୁସିକ୍ତ । ସେଇ ମୁହୂର୍ତ୍ତଠୁ ସେ ମୋର ପ୍ରିୟତମ, ପୂଜନୀୟ ଭାବେ ହୃଦାସୀନ । ପରେ ପରେ ସେଇ ସମ୍ମେଳନର ସ୍ମରଣିକାରେ ସ୍ଥାନିତ 'ଗୁଣୁପୁରରୁ ଲେଖୁଛି'' ଶୀର୍ଷକ ସାର୍‌ଙ୍କ ନିବଂଧଟି ତ ପଥପ୍ରଦର୍ଶକ ହୋଇ ରହିଛି ମୋ ପାଇଁ-ସ୍ୱକୀୟ ସୃଜନ ସହ ସମଧର୍ମାଙ୍କୁ ସଂଗଠିତ କରି ଏଠି ସୃଜନଶୀଳତା ସପକ୍ଷରେ କାମ କରିବା ଦିଗରେ । ସେ ଥିଲେ ଛାତ୍ର ବତ୍ସଳ, ଚଳଚଂଚଳ, ଆବେଗାପ୍ଲୁତ ସ୍ନେହ, ସୌହାର୍ଦ୍ଦ୍ୟରେ ସଦାସଜଳ ଓ ଛଳଛଳ । ମୋ ଭଳି ଜୀବଙ୍କ ସହ ତ.. ଥିଲେ ଏକ୍‌ଦମ୍ ମେଲା ମୁକୁଳା ମିତଟିଏ !

ଆଜୀବନ ଅଭୀପସା ଓ ଅଧ୍ୟବସାୟର ଫଳଶ୍ରୁତି 'ସୁରେନ୍ଦ୍ର ବିଚାର ମଂଜୁଷା' ଓ 'ଫକୀରମୋହନ ବିଚାର ମଂଜୁଷା' ମାଧମରେ ସେ ହୋଇଛନ୍ତି ଓଡ଼ିଆ ସାହିତ୍ୟରେ ବିଚାର ମଂଜୁଷା ଧାରାର ଅନନ୍ୟ ପ୍ରବର୍ତ୍ତକ ।

ପୁସ୍ତକକୁ ପ୍ରାଣଠୁ ବଳି ଭଲ ପାଉଥିଲେ ସାର୍ । ଭଲ ଭଲ ପୁସ୍ତକମାନ ସଂଗ୍ରହ କରି ରଖୁଥିଲେ ନିଜପାଇଁ ଓ ଆମ ଭଳି ପଠନ ପିପାସୁଙ୍କ ପାଇଁ । ମୋର ଏମିତି ସାକ୍ଷାତ ହୋଇନି, ଯେବେ ସାର୍ କିଛି ନା କିଛି ପୁସ୍ତକ ଆମ ଦୁଇ ଭାଇଙ୍କୁ ଉପହାର ଦେଇ ନାହାନ୍ତି । ହୃଦୟର ସହ କଥା ହେବା ମଣିଷଟି ମିଳୁ ନାହାନ୍ତି । ଅନନ୍ୟ ଅଧ୍ୟାପକ ଶିବରାମ ବିରାମ ନେଇଛନ୍ତି ଚିରକାଳ ପାଇଁ । ତଥାପି ତାଙ୍କ ଅମର କୃତିର ସ୍ମୃତି ସଦା ସଜୀବ, ଚିର ହରିତ, ତାଙ୍କ ସାନ୍ନିଧ୍ୟରେ ଆସିଥିବା ପ୍ରତିଟି ବ୍ୟକ୍ତି ସତ୍ତା ଭିତରେ !

ଏଲ୍.ଆଇ.ସି,କସ୍ତୁରୀ ନଗର
ରାୟଗଡ଼ା : ୭୬୫୦୦୧

## ପ୍ରେମିକାର ବାପା

ସରୋଜ ବଳ

ପ୍ରେମିକାର ବାପାମାନେ ସାଧାରଣତଃ ହେଇଥାଂତି ନିଷ୍ଠୁର ବା ଚିଡ଼୍‌ଚିଡ଼ା । ବା ହେଇଥାଂତି ବଦ୍‌ରାଗୀ ଓ ପ୍ରତିକ୍ରିୟାଶୀଳ । ସେମାନେ କେବେହେଲେ ପ୍ରେମକୁ ସହଜ ଆଖିରେ ଦେଖନ୍ତି ନାହିଁ, ସହଜ ମନରେ ମାନନ୍ତି ନାହିଁ, ସହଜ ହୃଦୟରେ ହଜମ କରନ୍ତି ନାହିଁ । ମୋଟାମୋଟି ପ୍ରେମିକାର ବାପାମାନେ ଜଣେ ଜଣେ ଦୁର୍ଦ୍ଦାନ୍ତ, ଦୟାକ୍ଷମାହୀନ ମଣିଷ ବୋଲି ମୋର ଏକ ପ୍ରକାର ଧାରଣା ଥିଲା, କଲେଜ୍‌ରେ ପଢ଼ିଲାବେଳେ ।

ସେଇ କଲେଜ୍‌ରେ ପଢ଼ିଲାବେଳୁଁ ହିଁ ମୋର ରମାକାଂତଙ୍କ ସହ ଚିହ୍ନା । ରମାକାଂତ ରହୁଥାନ୍ତି ବାଣୀବିହାରର ଥାର୍ଡ଼ ହଷ୍ଟେଲ୍‌ରେ ଓ ମୁଁ ରହୁଥାଏ ଭଦ୍ରକ୍‌ରେ, ଜାନୁଗଂଜର କୌଣସି ଏକ ପ୍ରେସ୍‌ରେ । ମୁଁ ସଂପାଦନା କରୁଥାଏ ସେତେବେଳେ ହାତଲେଖା ପତ୍ରିକା 'ସିନ୍ଦୂରା' ଓ ରମାକାଂତ ସେଥର ପାଇଥାନ୍ତି 'କଥା ନବପ୍ରତିଭା ପୁରସ୍କାର' ଗପ ଲେଖି । ଅତଏବ ତାଙ୍କର ଗୋଟେ ଗପ ମୋର ପତ୍ରିକାରେ ବାହାରିଥାଏ ଓ ମୁଁ ଧୀରେଧୀରେ ତାଙ୍କ ସହ ଘନିଷ୍ଠ ହେଉଥାଏ ।

ଏଇ ଘନିଷ୍ଠ ହେବାବେଳେ ମୁଁ ଜାଣେ ଯେ ସେ ଶୋଭନାଙ୍କୁ ଭଲ ପାଉଛନ୍ତି । ଶୋଭନା, ଯିଏ କି ଭଲ କବିତା ଲେଖୁଛଂତି ଓ କବିତା ପାଠୋତ୍ସବରେ ମର୍ମସ୍ପର୍ଶୀ ସଂଯୋଜନା ମଧ କରିପାରୁଛନ୍ତି । ବାଣୀବିହାରରେ ଉଭୟଙ୍କୁ ଦେଖିଲି ଓ ଦେଖିସାରି ଭାବିଲି, ମୋର ବି ପ୍ରେମରେ ପଡ଼ିବା ଉଚିତ୍ ।

ହେଲେ ପ୍ରେମ କରି ପ୍ରେମିକାର ହୃଦୟ ଜିତାଯାଇପାରେ ଖୁବ୍ ସହଜରେ, କିଂତୁ ପ୍ରେମିକାର ବାପାଙ୍କୁ ସାମ୍ନା କରିହୁଏନା- ଏକଥା ମୁଁ ବୁଝିଲାବେଳକୁ ରମାକାଂତ ବି ଅଳ୍ପ ବହୁତେ ସେ କଥା ବୁଝିସାରିଥିଲେ । ମୋ ଭଳି ରମାକାଂତ ବି ପ୍ରେମିକାର ବାପାଙ୍କୁ ସାମ୍ନା କରିବାକୁ ଡରନ୍ତି ବା ସହଜ ଭାବନ୍ତି ନାହିଁ ଜାଣି ଏହି ନିଷ୍କର୍ଷରେ ପହଂଚିଲି ଯେ ସଚରାଚର ପ୍ରେମିକାର ବାପାମାନେ ଭୟଂକର ।

ରମାକାଂତ ଏକାଧାରରେ କବି, ଚିତ୍ରକର, ଗାଳ୍ପିକ ଓ ପ୍ରେମିକ । ସେଥିପାଇଁ ପରବର୍ତ୍ତୀ ସମୟରେ ମୁଁ ବାଣୀବିହାର ଆସିଲାବେଳକୁ ତାଙ୍କର ଘନିଷ୍ଠ ସାନ୍ନିଧ ପାଇଲି ଓ ସେତେବେଳେ ଯାଏ ଜାଣିନଥାଏ ଯେ ଶିବରାମ ପାତ୍ର ହେଉଛନ୍ତି ତାଙ୍କ ପ୍ରେମିକାର ବାପା ।

କିଛିଦିନପରେ ଅବଶ୍ୟ ସେକଥା ଜାଣିଲି, କିନ୍ତୁ ପ୍ରେମିକାର ବାପାଙ୍କ ପ୍ରତି ଥିବା ମୋର ଅଂଧ ବିଶ୍ୱାସରେ ବିଶେଷ ପରିବର୍ତ୍ତନ ଘଟିଲାନାହିଁ । ବେଶ୍ କିଛି ବର୍ଷ ପରେ, ଏପରିକି ମୁଁ ବାହା ହେଇସାରି ବାପା ହେଲା ପରେ ତାଙ୍କର ବାହାଘର ହେଲା ଓ ଶିବରାମ ପାତ୍ର 'ପ୍ରେମିକାର ବାପା' ପଦବୀରୁ ପ୍ରମୋଶନ୍ ପାଇ ହେଲେ ଶଶୁର । ବୋଧେ ସେଇ ସଂପର୍କରୁ ଆରମ୍ଭ ହେଲା ଶିବରାମ ପାତ୍ରଙ୍କ ସହ ମୋର ଚିହ୍ନାଚିହ୍ନି । ସାହିତ୍ୟସଭା, ବହିମେଳା ବା ସାମାଜିକ ଉତ୍ସବମାନଙ୍କରେ ମୁଁ ତାଙ୍କୁ ଭେଟୁଥିଲି ଆକସ୍ମିକ ଭାବେ ଓ ନମସ୍କାରଟେ ପକାଇ ଖସିଆସୁଥିଲି । ମୋ ଭିତରେ ଆଗର ସେଇ ଧାରଣା ବୋଧେ ସେ ଯାଏ ବଳବତ୍ତର ଥିଲା । ତେଣୁ ମୁଁ ଦୂରଛଡ଼ା ହେଇ ରହୁଥିଲି ତାଙ୍କଠୁ ।

ଦିନେ ଦେଖିଲି ସେଇ ଦୂରତା କମିଯାଇଛି ଆମ ଭିତରେ, ଆମେ କେଜାଣି କୋଉ ଅଜଣା ଆତିଥ୍ୟରେ ପରସ୍ପର ଆଡ଼କୁ ଘୁଂଚି ଆସିଛୁ ନିଃସର୍ତ୍ତରେ । ଏତେବେଶି ବୟସର ବ୍ୟବଧାନ ସେଇ ଆକର୍ଷଣର ବାଧକ ହେଉନାହିଁ । ସେଇ ଧଳା ଦାଢ଼ି, ଖଦଡ଼ ପଂଜାବୀ, ଉଜ୍ଜ୍ୱଳ ଆଖି ଓ ନିର୍ମଳ ହସରେ କି ମାୟା ଥିଲା ମୋତେ ଜଣାନାହିଁ । କି ଜଣାନାହିଁ ସେ କେବେଦିନେ ମୋର ଅଗ୍ରଜ ବଂଧୁ ରମାକାଂତଙ୍କ ପ୍ରେମିକାର ବାପାଥିଲେ କି ନାହିଁ । କିଂତୁ ଅନେକଦିନ ତଳୁ ନିଜ ବାପାଙ୍କୁ ହରାଇଦେବାର ଅଭାବବୋଧ ତା'ପରେ ମୋ ଭିତରେ ନଥିବା ଦେଖି ଆଶ୍ଚର୍ଯ୍ୟ ହେଉଛି ।

ପ୍ରେମର ସର୍ତ୍ତ ନଥାଏ । ସେଇ ନିଃସର୍ତ୍ତ ପ୍ରେମର କିଂତୁ ଅଭାବ ଥାଏ ଦୁନିଆରେ । ସାହିତ୍ୟିକ ଶିବରାମଙ୍କୁ ମୁଁ ସେଇ ନିଃସର୍ତ୍ତ ପ୍ରେମର ମୁକୁଟ ପିନ୍ଧେଇବାକୁ ଚାହେଁ । ମୁଁ ଦେଖିଚି, କେତେ ଆତ୍ମୀୟତା ସେ ତାଙ୍କ ଝୁଲାମୁଣିରେ ଧରି ବୁଲୁଥାଂତି ବହିମେଳାରେ । କେତେ ଦୁର୍ଲ୍ଲଭ ହସ ଓ ବିଶ୍ୱାସ ସେ ରଖିଥାଂତି ତାଙ୍କ ମୁହଁରେ । ମୁଁ ଦେଖିଚି, ଅନ୍ୟକୁ ବୁଝିଲା ବେଳେ କେତେ ବେଶି ଆତୁର ଥାଏ ତାଙ୍କ ଆଖି । କେତେ ବେଶି ଖୋଲାଥାଏ ତାଙ୍କ ହୃଦୟର ଦର୍ଜା ।

ବହି ପତ୍ରିକା ପ୍ରତି ତାଙ୍କର ଅଜସ୍ର ଲୋଭ । ଥରେ ତାଙ୍କ ଘରକୁ ଯାଇ ଦେଖିଲି, ଘର ନୁହେଁ ତ ସେଇଟା ଯେମିତି ଗୋଟେ ମିଉଜିଅମ୍ । କଳା ଓ ସୃଜନଶୀଳତାକୁ ସ୍ନେହ ଦେବାର ଏତେ ବେଶି ପ୍ରବଣତା ମୁଁ ଦେଖିନି କେଉଁଠି । ସେ ସାହିତ୍ୟିକ କି ନୁହେଁ ମୁଁ କେବେ ଭାବିନାହିଁ, କିନ୍ତୁ ସାହତ୍ୟିକ-ସଂବେଦନଶୀଳତାରେ ତାଙ୍କ ପ୍ରାଣ ସବୁବେଳେ ଉଚ୍ଛୁଳୁମୁଚ୍ଛୁଳୁ ଏକଥା ମୁଁ ବାରଂବାର ବୁଝିଛି ।

କେତେ ବା ବୁଝିଛି ! ପୂରାପୂରି ବୁଝିବା ଆଗରୁ ସେ ନିଜକୁ ବୁଝାଇ ନେଇ ଚାଲିଗଲେ । ବର୍ଷେ ତଳେ । ତାକୁ ବୁଝିପାରେ କି ନ ପାରେ, ମୁଁ କିନ୍ତୁ ଏତିକି ବୁଝିଛି ଯେ ପ୍ରେମିକାର ବାପାମାନେ ସଚରାଚର ନିଷ୍ଠୁର ନୁହଂତି, ସବୁକାଳେ ।

## ମୋ ନାନା-ମୋ ପୁଅ

ଚିତ୍ରା

ମୁଁ ଚାରି/ପାଞ୍ଚ ବର୍ଷର ହୋଇଥାଏ । ଆମେ ଗୁଣୁପୁରରେ ଥାଉ । ମୁଁ ଦିନେ ନାନାଙ୍କ ସହ ଡେଲି ମାର୍କେଟ ଯାଇଥାଏ । ଚକୋଲେଟ୍ ପାଇଁ କାନ୍ଦିବା ସତ୍ତ୍ୱେ ନାନା କିଣେଇଦେଲେନି । ନଡ଼ିଆଟାଏ ଭଙ୍ଗେଇ ଖଣ୍ଡ ନଡ଼ିଆ କିଣେଇ ଦେଲେ । ଚକୋଲେଟ୍ ବଦଳରେ ଆମ ଭାଇ ଭଉଣୀଙ୍କୁ ସବୁବେଳେ ଫଳମୂଳ ହିଁ ମିଳିଛି । ସେଦିନ ନଡ଼ିଆ ଖାଇ ଖାଇ ମାର୍କେଟ ବୁଲୁଥାଏ । ଗୁଣୁପୁରର ମାର୍କେଟ ଦୁଇ ଭାଗ ହୋଇଥାଏ । ଗୋଟାଏ ପଟେ ପରିବା ଓ ଅନ୍ୟ ପଟେ ସଉଦା ମିଳେ । ନାନାଙ୍କର ପରିବା କିଣା ଦେଖୁ ଦେଖୁ ମୁଁ କେତେବେଳେ ଅନ୍ୟମନସ୍କ ହୋଇଯାଇଥାଏ । ହଠାତ୍ ଅନେଇବା ବେଳକୁ ନାନାଙ୍କୁ ସେ ଜାଗାରେ ପାଇଲିନି ମାର୍କେଟର ଦୁଇପଟ ବାରମ୍ବାର ଖୋଜିଲି କିନ୍ତୁ ତାଙ୍କୁ ପାଇଲିନି ସେତେବେଳକୁ ମୋ ଅବସ୍ଥା ପୂରା ଖରାପ । କାନ୍ଦି କାନ୍ଦି ଘର ଆଡ଼କୁ ମୁହାଁଉଥାଏ । ଘର ଓ ମାର୍କେଟ୍ ମଝାମଝି ଜଣେ ମଉସାଙ୍କ ଦୋକାନ ଥାଏ । ସେ ଆମ ସମସ୍ତଙ୍କୁ ଚିହ୍ନିଥାନ୍ତି । ମୋତେ କାନ୍ଦୁଥିବା ଦେଖି ତାଙ୍କ ଘରକୁ ନେଇ ବୁଝାଶୁଝା କଲେ, ଖୁଆଇ ପିଆଇ ଶାନ୍ତ କଲେ । କିଛି ସମୟ ପରେ ଘରେ ନେଇ ଛାଡ଼ିଲେ । ନାନା କିଣାକିଣି ସାରି ସେତେବେଳକୁ ଘରେ ପହଞ୍ଚିଯାଇଥାନ୍ତି । ଆମା ପଚାରିଲା ଚିତ୍ରା କାହିଁ ? ନାନା ଓଲଟା ଆମାକୁ ପଚାରିଲେ ଚିତ୍ରା ମୋ ସହ ଯାଇଥିଲା କି ?

ନାନା ଆମକୁ ସବୁବେଳେ ପୌରାଣିକ ସିନେମା ଦେଖାନ୍ତି ସେଟା ଓଡ଼ିଆହେଉ

କି ତେଲୁଗୁ ହେଉ କି ହିନ୍ଦୀ । ଦିନେ ତେଲୁଗୁ ପୌରାଣିକ ସିନେମାଟିଏ ଚାଲିଥାଏ । ନାନା ସଂଧ୍ୟାରେ ଆମ ସମସ୍ତଙ୍କୁ ନେଇ ବାହାରିଲେ । ଚାଲୁ ଚାଲୁ ଜଣେ ଅଧ୍ୟାପକ ଦେଖା ହୋଇଗଲେ । ସେଠୁ ନାନାଙ୍କର ତାଙ୍କ ସହ ଗପ ଆରମ୍ଭ ହୋଇଗଲା । ଗପି ଗପି ଭୁଲିଗଲେଣି ଯେ ଆମେ ସିନେମା ଯାଉଛୁ ବୋଲି । ସେତେବେଳକୁ ସିନେମା ସରିବା ପାଇଁ ମାତ୍ର ଘଣ୍ଟାଏ ଥାଏ । ଆମେ ସବୁ ଠିଆ ହୋଇ ହୋଇ ସେତେବେଳକୁ ଚିଡ଼ିଗଲୁଣି । ଆଉ ସିନେମା ଦେଖିବୁ କ'ଣ ଘରକୁ ଫେରିଲୁ । ଏତେ ଭୁଲା ମନ ନାନାଙ୍କର । ଅନେକ ସମୟରେ ଆମେ କ'ଣ ପଢୁଛୁ ସେଟା ବି ଭୁଲିଯାଇଥାନ୍ତି ।

ମୋ ଚତୁର୍ଥଶ୍ରେଣୀ ଖରାଛୁଟୀରେ ଆମେ ସମସ୍ତେ କଲିକତା ଯାଇଥାଉ । ସେତେବେଳେ ମଝିଆ ମାମୁଁ ସେଠି ଥାନ୍ତି । ମାମୁଁ, ମାଇଁଙ୍କ ସହ ଖୁବ୍ ବୁଲାହେଲା ସାରା କଲିକତା । ଶେଷରେ ଥାଏ ମାର୍କେଟିଂ । ମୁଁ ଗୋଟେ ଡିଜାଇନ୍‌ର ଫ୍ରକ୍‌ଟାଏ ପାଇଁ ନାନାଙ୍କୁ କହିଥାଏ । ନାନା ଓ ମାମୁଁ ସେହି ନିର୍ଦ୍ଦିଷ୍ଟ ଡିଜାଇନ୍‌ର ଫ୍ରକ୍‌ଟି ପାଇଁ ଦିନସାରା ପୂରା କଲିକତା ବୁଲିସାରିଥାନ୍ତି । ଶେଷରେ ସଂଧ୍ୟାରେ ଫ୍ରକ୍ ନେଇ ଘରେ ପହଞ୍ଚିଲେ । ଫ୍ରକ୍‌ଟିକୁ ଦେଖି ଖୁସିରେ ମୁଁ ଆଉ କଥା କହି ପାରୁ ନଥାଏ । ଆଜି ସେ ଫ୍ରକ୍ ନାହିଁ କି ମାମୁଁ ନାହାନ୍ତି କି ନାନା ବି ନାହାନ୍ତି ମୋ ପାଖରେ । ନାନାଙ୍କର ମୋ ପାଇଁ ଡ୍ରେସ୍ ଚଏସ୍ ସବୁବେଳେ ପରଫେକ୍ଟ ଚଏସ୍ ହୋଇଛି । ମୋ ବାହାଘର ପାଇଁ ନାନା ସାରା ଓଡ଼ିଶାରୁ ଶାଢ଼ୀ ସଂଗ୍ରହ କରିବା ସହ ଅନ୍ୟ କେତେକ ରାଜ୍ୟର ବିଶେଷ ପ୍ରକାର ଶାଢ଼ୀ ବି ସଂଗ୍ରହ କରିଥିଲେ । ନାନା କହନ୍ତି First choice ହିଁ Final choice । ନାନାଙ୍କର ମୋ ପାଇଁ ବର ବାଛିବା ବି First and Final ବଛା ।

ନାନା !

ତୁମେ ସବୁବେଳେ କହି ଆସିଛ, ମା' ଦେଖିବୁ ରହ ତମ ଚାରି ଭାଇ ଭଉଣୀଙ୍କ ଭିତରେ ତୁ ହିଁ ସବୁଠୁ ଖୁସିରେ ରହିବୁ । ନାନା, ଆମେ ଚାରିଜଣ ଆଜି ଖୁସିରେ ଅଛୁ, କିନ୍ତୁ ସେ ଖୁସି ଆଜି ଫିକା ପଡ଼ିଯାଇଛି । ତୁମ ଜାଗା ଖାଲି ରହିଯାଇଛି । ତୁମେ ନାହିଁ ବୋଲି ବିଶ୍ୱାସ ହେଉନି କି ବିଶ୍ୱାସ କରିବାର ଇଚ୍ଛା ବି ନାହିଁ । ତୁମର ବହି ଓ ତୁମର ବଗିଚାକୁ ଦେଖିଲେ ଖୁବ୍ କଷ୍ଟ ହେଉଛି ନାନା । ତୁମର ବହୁତ ଇଚ୍ଛା ଥିଲା ନା ମୁଁ ଲେଖାଲେଖି କରେ ବୋଲି । ମୁଁ ତୁମର ସେ ଇଚ୍ଛା ପୂରଣ କରି ପାରିନି କି କରିପାରିବିନି ବୋଧେ । ଆଜି ମୁଁ ତୁମଠୁ ଗୋଟାଏ କଥା ଚାହୁଁଛି ନାନା ! ତୁମେ ଫେରିଆସ ମୋ ପାଖକୁ ମୋ ପୁଅ ରୂପରେ । ଶୀଘ୍ର ଫେରିଆସି ତୁମର ଅଧା ସ୍ୱପ୍ନକୁ ସଂପୂର୍ଣ୍ଣ କର । ପୁଣିଥରେ ମୋ ପୁଅ ରୂପରେ ତୁମେ ସାହିତ୍ୟ ଆକାଶରେ ଗୋଟେ ଉଜ୍ଜ୍ୱଳ ନକ୍ଷତ୍ର ହୋଇଯାଅ । ମୋ କୋଳକୁ ଶୀଘ୍ର ଫେରିଆସ ନାନା !

ଫୁଲବାଣୀ

# ସାର୍ ଥିଲେ ଏମିତି

ବାସନ୍ତୀ ମହାନ୍ତି

ସାର୍‌ଙ୍କର ସ୍ମୃତି ସହିତ କୀର୍ତ୍ତିସମୂହ ଆମ ଚାରିପଟରେ ଜୀବନ୍ତ ହେଇ ଘୂରିବୁଲୁଛି । ଆମକୁ ବାଟବଣା ରାସ୍ତାରୁ ଟାଣି ଆଣି ଠିକ୍ ରାସ୍ତାକୁ ଚାଲିବା ପାଇଁ ତାଗିଦ୍ କରୁଛି, ସବୁ ଆପଣାପଣ, ସବୁ ଭାବ ବିଆନିଆ, ସକଳ କୋମଳ ଭାବନା ଭିତରେ କର୍ତ୍ତବ୍ୟଟା ଯେ ମଣିଷପଣିଆର ମୂଳପିଣ୍ଡ, ନୀତିଟା ଯେ ମଣିଷ ଜୀବନର ବୀଜମନ୍ତ୍ର ଏକଥା ତାଙ୍କ ହଜିଲା ମୁହଁ ଆମକୁ ବାରମ୍ବାର ମନେପକେଇ ଦେଉଛି, ସଂପର୍କର ଦ୍ୱାହିଦେଇ ନିୟମ ଶୃଙ୍ଖଳା ସହ ଯେ ସାଲିସ କରାଯାଏ ନାହିଁ, ଏକଥା ତାଙ୍କର ନିର୍ଭୀକ ଓ ସ୍ୱଚ୍ଛ ବ୍ୟକ୍ତିତ୍ୱ ଆମକୁ ବାରମ୍ବାର ଚେତେଇ ଦେଉଛି ।

ଆଜିକୁ ପ୍ରାୟ ୧୨/୧୩ବର୍ଷ ତଳର ଘଟଣା । ଆମ କଲେଜରେ ନୂଆ ନୂଆ +୨ ପରୀକ୍ଷା ସେଣ୍ଟର ହେବାପାଇଁ ଅନୁମତି ମିଳିଥାଏ, ଆମ ଭିତରେ ନୂଆ ଆବେଗ ଓ ଉନ୍ମାଦନା । ନୂଆ କଲେଜ, ଅଧ୍ୟାପକ ଅଧ୍ୟାପିକା ନୂଆ, କର୍ମଚାରୀ ମାନେ ବି ନୂଆ ପରୀକ୍ଷା ପରିଚାଳନାର ଅଭିଜ୍ଞତା କାହାରି ନାହିଁ । ଏ ଅଞ୍ଚଳର ପ୍ରତିଷ୍ଠିତ କଲେଜ ନବରଙ୍ଗପୁର କଲେଜର ଜଣେ ବରିଷ୍ଠ ଅଧ୍ୟାପକ ନିଯୁକ୍ତ ହୋଇଥାନ୍ତି ପରୀକ୍ଷା ପରିଚାଳନା ଦାୟିତ୍ୱରେ, ସେତେବେଳର କଞ୍ଚା ଅନୁଭୂତିରେ +୨ ପରୀକ୍ଷାଦାୟିତ୍ୱ ସଂପନ୍ନ କରିବା ଏଭେରେଷ୍ଟ ଅଭିଯାନ ଭଳି ଭାରି ଗୋଟିଏ ଦୁଃସାହସିକ ଅଭିଯାନ ବୋଲି ଆମକୁ ଲାଗୁଥିଲା । ଆମେ ସବୁ ବେଶ୍ ତତ୍ପର ହୋଇ ପଡ଼ିଥିଲୁ । ପରୀକ୍ଷାର୍ଥୀଙ୍କ ତୁଳନାରେ ଆମେ ଅଧ୍ୟାପକ ଅଧ୍ୟାପିକା କମ୍ ଥିଲୁ । ତେଣୁ ପରୀକ୍ଷା ଗୃହ ନିରୀକ୍ଷଣ ପାଇଁ ସ୍ଥାନୀୟ ହାଇସ୍କୁଲ ଓ ଏମ୍.ଇ.ସ୍କୁଲର କେତେ ଜଣ ଶିକ୍ଷକ ଶିକ୍ଷୟିତ୍ରୀଙ୍କର ସହାୟତା ଲୋଡ଼ାଯାଇଥିଲା ।

ସବୁ ଠିକ୍ ଚାଲିଥିଲା । ଠିକ୍ ଚାଲିବା ଭଳି ଲାଗୁଥିଲା । ପରୀକ୍ଷା ଆରମ୍ଭ ହେବାର ଅଧଘଣ୍ଟା ଆଗରୁ ନବରଙ୍ଗପୁରର ଫ୍ଲାଇଙ୍ଗ୍ ସ୍କ୍ୱାର୍ଡ଼ ଆସି ପହଞ୍ଚିଗଲେ । ସେମାନଙ୍କ ଭିତରେ ଥିଲେ ପାତ୍ରସାର୍ । ସ୍କ୍ୱାର୍ଡ଼କୁ ଦେଖି ପିଲାଙ୍କ ସମେତ ଆମେମାନେବି ସନ୍ତ୍ରମର ସହ ଯେ ଯାହାର କର୍ତ୍ତବ୍ୟରେ ଲାଗିପଡ଼ିଲୁ । ପରୀକ୍ଷା ଆରମ୍ଭ ହେବା ପୂର୍ବରୁ କେମିତି କେଜାଣି ସାର୍‌ଙ୍କ ଦୃଷ୍ଟି ଲମ୍ୱିଗଲା ଜାଲିଆ ବାଡ଼ ଭିତରେ ବୁଦିବୁଦିକିଆ ଜଙ୍ଗଲ ଆଡ଼କୁ । କାନକୋଳି କଣ୍ଟା, ମେଣ୍ଢାଗୁଳି ଓ ଆହୁରି କେତେ ନା'ନଜଣା ବଣୁଆ କଣ୍ଟାଝଟା ନମାନି ଦୁଇଗୋଡ଼ ଉପରୁ ଢିଲାପେଣ୍ଟଟାକୁ ଅଳ୍ପ ଟେକି ସେ ପଶିଗଲେ ସେଇ ବଣ ଭିତରକୁ । ସମସ୍ତେ ତାଟକା, ନଇଁ ପଡ଼ି ସେଇ କଣ୍ଟାଝଟା ଭିତରେ ହାତ ଗଳେଇ ସେ ଟାଣି ଆଣିଲେ ଖଣ୍ଡେ କାଗଜ କୌତୂହଳବଶତଃ ଆମ ସମସ୍ତଙ୍କ ଦୃଷ୍ଟି ଟାଣିହେଇଗଲା ସେଇ ଆଡ଼କୁ । ସେଇଟି ଥିଲା ଉତ୍ତର ନେଇଥିବା ପାଇଁ କାଉନ୍‌ସିଲ୍ ତରଫରୁ ଯୋଗେଇଦିଆ ଯାଇଥିବା ଏକ

ଆଡ଼ିସ୍‌ନାଲ୍ ପେପର । ସେଥିରେ ସେହିଦିନ ହେବାକୁ ଥିବା ପରୀକ୍ଷାର କେତୋଟି ଉତ୍ତର ଥିଲା । ଯାହାର ପ୍ରଶ୍ନ ପତ୍ର ସହ କିଛି ସଂପର୍କ ନଥିଲା । ସମସ୍ତେ ଥରହର । ଏତେ କାଇଦା କଟକଣା, ସତର୍କ ଦୃଷ୍ଟିସତ୍ତ୍ୱେ ଆଡ଼ିସନାଲ୍ ପେପରଟି ବାହାରକୁ ଆସିଲା କେମିତି ?

କାହାର କର୍ତ୍ତବ୍ୟରେ ଅବହେଳା ଏ ପରିସ୍ଥିତି ସୃଷ୍ଟି କଲା । ତାର ତଦନ୍ତ ହେଉ, ତା ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ ହେଉ । ନୂଆ ସେଣ୍ଟର । ଘଟଣାଟିକୁ ଚପାଇଦେଲେ ସମସ୍ତଙ୍କର ମଙ୍ଗଳ ବୋଲି କେତେଜଣ ମତଦେଲେ । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ତାଙ୍କ ଉପରେ ଚାପ ପ୍ରୟୋଗ ହେଲା, ସାର୍‌ଙ୍କ ସହ ମୋର ଘନିଷ୍ଠତାର ସୁଯୋଗ ନେଇ ସାର୍‌ଙ୍କୁ କିଛି ପ୍ରଭାବିତ କରାଯାଇପାରିବ ବୋଲି ଯୋଜନା କରାଗଲା । ସେ ଚେଷ୍ଟା ବି ବିଫଳ ହେଲା । ସାର୍ ଅଟଳ ମହାମେରୁ ! ଶେଷରେ ଅପରପକ୍ଷ ଆତ୍ମରକ୍ଷା ପାଇଁ ତାର ରଣ କୌଶଳ ଆରମ୍ଭ କରିଦେଲା । ତାଙ୍କ ଉପରେ ପାଲଟା ଅଭିଯୋଗ ଅଣାଗଲା । କଲେଜ କ୍ୟାମ୍ପୋସକୁ ଆସିବା ଆଗରୁ ସାର୍ ମୋ ଘରେ ପଖାଳ ଖାଇ ଆସିଥିଲେ । ପରୀକ୍ଷା ପରିଚାଳକଙ୍କର କ'ଣ ଉଦ୍ଦେଶ୍ୟ ଥିଲା କେଜାଣି, ତାଙ୍କ ରିପୋର୍ଟରେ ଏଇ ପଖାଳଖିଆ ପ୍ରସଙ୍ଗ ଉଲ୍ଲେଖ କରି କାଗଜ ଖଣ୍ଡକ ଅଧ୍ୟାପକ ଶିବରାମ ପାତ୍ର ତାଙ୍କ ବ୍ୟାଗରୁ ହିଁ ବାହାର କରିଛନ୍ତି କେବଳ ପରୀକ୍ଷା କେନ୍ଦ୍ର ଓ ପରୀକ୍ଷା ପରିଚାଳକଙ୍କୁ ବଦନାମ କରିବା ଉଦ୍ଦେଶ୍ୟରେ ବୋଲି ଦର୍ଶେଇଥିଲେ । ଏଇଠି କହିରଖୁଛି ପରୀକ୍ଷା ପରିଚାଳକ ଜଣଙ୍କ ତାଙ୍କ ସହକର୍ମୀ ଥିଲେ । ତଥାପି ସାର୍ ଓହରିଲେ ନାହିଁ । ତଦନ୍ତ ହେଲା । କେତେଜଣ ଅଣକଲେଜ ପରୀକ୍ଷା ନୀରିକ୍ଷକଙ୍କ ଖାମଖିଆଲି ଓ ଦାୟିତ୍ୱହୀନତା ହେତୁ ଯେ ଏଭଳି ଘଟଣାଟିଏ ଘଟିଲା ତାହା ସ୍ପଷ୍ଟ ହେଇଗଲା । ତାପରଠାରୁ ସମସ୍ତେ ସଜାଗ ହୋଇଗଲୁ । ଏ ଘଟଣା ଆମ ସମସ୍ତଙ୍କ ପାଇଁ ଏକ ସ୍ମରଣୀୟ ଓ ସମୁଚିତ ଶିକ୍ଷା ହୋଇ ରହିଗଲା ।

ସାର୍ ଥିଲେ ଏମିତି । ବାହାରୁ ଯେତେ ସ୍ନେହୀ, ଭାବ ପ୍ରବଣ ଓ ନରମ ମଣିଷଟିଏ ଭଳି ମନେ ହେଉଥିଲେ ବି କର୍ତ୍ତବ୍ୟ ଓ ଦାୟିତ୍ୱ ସଂପନ୍ନରେ ସେ ସେତିକି ନିରପେକ୍ଷ, ନିରାସକ୍ତ ଓ ଦୃଢ଼ ପ୍ରତିଜ୍ଞ ଥିଲେ । କୌଣସି ସଂପର୍କର ସଂଜ୍ଞା ତାଙ୍କୁ ସତ୍ୟପଥରୁ ବିଚ୍ୟୁତ କରିପାରୁନଥିଲା । ସେଇଥିପାଇଁ ଏଭ କର୍ମଯୋଗୀ ମଣିଷଟି ତାଙ୍କର ପ୍ରତିଟି ମୁହୂର୍ତ୍ତ ଅପରର କଲ୍ୟାଣ ପାଇଁ ଉତ୍ସର୍ଗ କରିଦେଉଥିଲେ ସୁଦ୍ଧା ବେଳେବେଳେ ଅତି ଆପଣାର ଲୋକଟି ବି ତାଙ୍କର ଶତ୍ରୁ ପାଲଟି ଯାଉଥିଲା । ତାଙ୍କର ସତ୍ୟ ପ୍ରତି ଅନୁରାଗ ସ୍ୱାର୍ଥୀ ମଣିଷକୁ ଅଡୁଆରେ ପକେଇ ଦେଉଥିଲା, କିନ୍ତୁ ସାର୍ ତାଙ୍କର ସ୍ୱଭାବ ସୁଲଭ ବ୍ୟବହାରରେ ଏଇ ବିଗିଡ଼ା ମଣିଷକୁ ଆପଣେଇ ନେଉଥିଲେ, କେତେବେଳେ ଆଦରରେ ତାଙ୍କୁ ଆଉଁସି ଦେଇ ତା'ହାତରେ ବହିଖଣ୍ଡେ ଧରେଇ ଦେଉଥିଲେ ତ ତା ବାଡ଼ିରେ ଫୁଲଗଛଟିଏ କିମ୍ବା ଫଳଗଛଟିଏ ଲଗେଇ ଦେଇ ଆସୁଥିଲେ । ଶତ୍ରୁ ମନୋଭାବ ପୋଷଣ କରିବାକୁ ସେ ସୁଯୋଗ ଦେଉନଥିଲେ । ସେଇଥିପାଇଁ ସେ ଥିଲେ ଅଜାତଶତ୍ରୁ । ସମସ୍ତଙ୍କର ଅତି ଆପଣାର ଠିକ୍ ଜହ୍ନମାମୁଁ ଭଳି ।

ଭୈରବ କଲେଜ,ଡାବୁଗାଁ
ନବରଙ୍ଗପୁର

# ଜୋକର

ମନ୍ମଥ ଶତପଥୀ (ନାଟ୍ୟକାର)

ଚେହେରା, କଥାବାର୍ତ୍ତା, ଚାଲିଚଳନ, ପ୍ରତ୍ୟେକ କ୍ଷେତ୍ରରେ ଜୋକରର ସ୍ଥାନ ସ୍ୱତନ୍ତ୍ର । ମନର ସମସ୍ତ ଭାବାବେଗକୁ ବୁକୁତଳେ ଚାପିରଖି, ସେ ଦର୍ଶକଙ୍କୁ ହସାଏ । ଅନ୍ୟ ମୁହଁରେ ହସ ଦେଖିବା, ତାର ଜୀବନର ଏକମାତ୍ର ଧର୍ମ । ସେମିତି ଜଣେ ମଣିଷ ଥିଲେ ଶିବରାମ ପାତ୍ର । କଥାବାର୍ତ୍ତା, ଚାଲିଚଳନ ଅଙ୍ଗଭଙ୍ଗୀର ସ୍ୱାତନ୍ତ୍ରତା ତାଙ୍କୁ ଜଣେ ନିଆରା ମଣିଷ ରୂପେ ଚିତ୍ରିତ କରୁଥିଲା । ଅନେକେ ତାଙ୍କୁ ଦକ୍ଷିଣି ସାହିତ୍ୟିକ ବୋଲି କହୁଥିଲେ । କିଏ, କଣ ତାଙ୍କ ବିଷୟରେ କହୁଛନ୍ତି, ସେଥିପ୍ରତି ତାଙ୍କର ଖାତିରି ନଥିଲା । ଯାହା ଯେତେବେଳେ ତାଙ୍କର ମନକୁ ଆସୁଥିଲା । ଆଗ-ପଛ କଥା ଚିନ୍ତା ନକରି ସେ ସମସ୍ତଙ୍କ ଆଗରେ ମତବ୍ୟକ୍ତ କରୁଥିଲେ ।

ଦିନକର କଥା । ଖରାବେଳଟାରେ ମୁଁ ଘରକୁ ଫେରୁଥାଏ । ଦୂରରୁ ଦେଖିଲି ଶିବରାମ ସାଇକେଲରେ ଆସୁଛନ୍ତି । ମତେ ଭାରି ଭୋକ ହେଉଥାଏ, ନଦେଖିଲା ପରି ତାଙ୍କୁ ଆଡ଼େଇ ଚାଲିଯିବା ସକାଶେ ସ୍ଥିରକଲି । ସେ କିଂତୁ ଛାଡ଼ିବା ଲୋକ ନୁହଁନ୍ତି । ଅଳ୍ପ ଦୂରରୁ ସାଇକେଲ ରଖି ମତେ ଅଟକାଇଲେ । କିହୋ, ନାଟ୍ୟକାର.... ଦେଖି-ନଦେଖିଲାପରି କ'ଣ ଚାଲି ଯାଉଛ ? ଚାଲ, ମାନା ପଣ୍ଡିତଙ୍କ ଦେହ ଖରାପ, ତାଙ୍କୁ ଦେଖିଯିବା । ବୁଝେଇ କହିଲି ପଣ୍ଡିତଙ୍କ ଘର, ଆମ ଘର ପାଖରେ, ତୁମେ ଯାଅ, ମୁଁ ପରେ ତାଙ୍କ ନିକଟରୁ ଯିବି । ତାଙ୍କ ନିକଟରୁ ଖସିଯିବା ସହଜ କଥା ନୁହେଁ । ରାସ୍ତା କରର ଗୋଟିଏ ଦୋକାନରୁ କିଛି ବିସ୍କୁଟ୍ କିଣାଗଲା । ବାଧ ହୋଇ ଦୁହେଁ ଗଲୁ ପଣ୍ଡିତଙ୍କୁ ଦେଖିବାପାଇଁ । ସେ ସେତେବେଳକୁ ସୁସ୍ଥ ହେଲେଣି । କଥା-ବାର୍ତ୍ତା ସାରି ଫେରିବାବେଳକୁ ହେଲାଣି ସାଢ଼େ ତିନିଟା । ଏମିତି କେତେ ଯେ ସ୍ମୃତି, ଲେଖିଲେ ଗୋଟିଏ ଉପନ୍ୟାସ ହେବ ।

ଜଣେ ଉତ୍ସର୍ଗୀକୃତ ମଣିଷଭାବେ, ସେ ଯେପରି ସାହିତ୍ୟ ଜଗତରେ ପରିଚିତ ଥିଲେ, ଠିକ୍ ସେପରି ଜଣେ ଦରଦୀ ମଣିଷଭାବେ, ଛୋଟ, ବଡ଼ ପ୍ରତ୍ୟେକ ମଣିଷର ସେ ଥିଲେ ବଂଧୁ । ନିମନ୍ତ୍ରଣର ଆବଶ୍ୟକ ନାହିଁ, ଟେଲିଫୋନରେ ସାମାନ୍ୟ ଅନୁରୋଧ, ତାଙ୍କର ଉପସ୍ଥିତି ପାଇଁ, ଯଥେଷ୍ଟ ଥିଲା । ତାଙ୍କର ସ୍କୁଟର ନଥିଲା, ପୁରୁଣା ସାଇକଲ୍ ଖଣ୍ଡିଏ ଥିଲା ତାଙ୍କର ଚିରସାଥୀ । ସାଧାସିଧା ମଣିଷ, ଖଦଡ଼ ପଞ୍ଜାବୀ, ପାଇଜାମା, ମୁହଁରେ ଦାଢ଼ି, କାନ୍ଧରେ ଝୁଲାମୁଣି ପରିହାସ ଛଳରେ ମୁଁ ତାଙ୍କୁ ଡାକେ ଗୋପବଂଧୁ । ଦିନେ ପଚାରିଥିଲି, ଗୋପବନ୍ଧୁ କେବେ ସ୍କୁଟର ଚଢ଼ିବେ ? ହସି ହସି ମତେ ଉତ୍ତର ଦେଇଥିଲେ, ଗୋପବନ୍ଧୁଙ୍କର କ'ଣ ଥିଲା ? ସେ'ତ ଖାଲି ପାଦରେ ଘୂରୁଥିଲେ, ମୋର'ତ ସାଇକଲ ଖଣ୍ଡେ ଅଛି । ଅସୁବିଧା କ'ଣ ?

ତାଙ୍କ ସହିତ ମୋର ଶେଷଦେଖା ହୋଇଥିଲା, ଫେବୃୟାରୀ ମାସ ୨୫ ତାରିଖ ଦିନ କଳ୍ପନାଛକ ନିକଟରେ ଅର୍ଥାତ୍ ମୃତ୍ୟୁର ପୂର୍ବଦିନ । ଦିନ ଦୁଇଟା, ଭୟଙ୍କର ଖରାରେ ଚାଲିଚାଲି, ସେ ଘରକୁ ଫେରୁଥାଆନ୍ତି । କାନ୍ଧରେ ଝୁଲୁଥିବା ଝୁଲାମୁଣିଟା ବିଭିନ୍ନ ଜିନିଷରେ ଫୁଲି ଉଠିଥାଏ । ହାତରେ ଫେରେ ପ୍ୟାକିଂ ସହିତ ସଦ୍ୟ ଫ୍ରେମ କରାଯାଇଥିବା, କୌଣସି ଜଣେ ସାହିତ୍ୟିକଙ୍କର ଗୋଟିଏ ବିରାଟ ଫଟ । ମୋର ଗାଡ଼ିକୁ ଅଟକାଇଲେ । ପଚାରିଲି, କିହୋ ଗୋପବନ୍ଧୁ । ଖରାଟାରେ କୁଆଡ଼େ ଯାଇଥିଲ, ତମର ଗାଡ଼ି କୁଆଡ଼େ ଗଲା, ଏମିତି ବୁଲିଲେ ଦେହ ତମର କ'ଣ ହବ ? ଚିରାଚରିତ ଭଙ୍ଗୀରେ ତାଙ୍କର ଉତ୍ତର ଥିଲା, କ'ଣ ହେଇଯିବ, ସବୁ ଠିକ୍ ଅଛି, ତମେ ମୋତେ ଟିକିଏ ଘରେ ଛାଡ଼ିଦେଲ । ଅକ୍ଷମତା ପ୍ରକାଶ କରି, କହିଲି ନାଟକ ରିହାରସଲ ଦୁଇଟାରେ ଥିଲା, ଅନେକ ଲୋକ ଅପେକ୍ଷା କରିଥିବେ, ସମୟ ନାହିଁ, ତମେ ବରଂ ଅଟୋରେ ଚାଲିଯାଅ । ଶିବରାମ ଜଣେ ଭିନ୍ନ ଧରଣର ମଣିଷ । ରାମଙ୍କ ପରି ସେ ଯେପରି ସହନଶୀଳ, ଶିବଙ୍କ ପରି, ସେ ବିଷକୁ ମଧ ଅମୃତ ମନେ କରି ଗ୍ରହଣ କରନ୍ତି । ଅନ୍ୟ କେହି ହେଇଥିଲେ, ମୋ ଉପରେ ଅଭିମାନ କରି ଥାଆନ୍ତା । ମୋର କଥାପ୍ରତି ଆଦୌ ଗୁରୁତ୍ୱ ନଦେଇ, ବରଂ କହିଲେ, ଚକରା ବିଷୋୟୀଙ୍କୁ ଯେପରି ନାଟକ ମାଧ୍ୟମରେ ଲୋକଲୋଚନକୁ ଆଣିଲ, ଠିକ୍ ସେମିତି ଜଣେ ଆଧୁନିକ ଯୁଗର ସାହିତ୍ୟିକଙ୍କ ଉପରେ ଗୋଟିଏ ନାଟକ ଲେଖାଯାଉ । ପରିହାସ ଛଳରେ କହିଥିଲି, ଠିକ୍ ଅଛି, ଆଉ କାହାକୁ କାହିଁକି ଖୋଜିବା, ତମେ' ତ ସାମନାରେ ଠିଆ ହେଇଛ, ତମକୁ ନେଇ ଲେଖିବା । ଖୁବ୍ ଜୋରରେ ହସି ଉଠିଲେ, ଅନୁରୋଧ'ବି କରିଥିଲେ, ମୋତେ ତମର ନାଟକ ଦେଖିବା ସକାଶେ ନିଶ୍ଚୟ ଡାକିବ । ନାଟକ ଦେଖିବା ପାଇଁ ନିମନ୍ତ୍ରଣ କରି ମୁଁ ଚାଲିଗଲି ।

ନାଟକରେ ଅଭିନୟ କରୁଥିବା ନାୟକର ଜନ୍ମ ଓ ମୃତ୍ୟୁର ନିୟନ୍ତା ହେଲେ ନାଟକର ସ୍ରଷ୍ଟା ନିଜେ ନାଟ୍ୟକାର । ହେଲେ ଜୀବନ ନାଟକରେ ଅଭିନୟ କରିବାବେଳେ, ମୃତ୍ୟୁ କେତେବେଳେ ଆସେ, ମଣିଷ ନିଜେ ଜାଣିପାରେନି । ଫେବୃୟାରୀ ୨୬ ତାରିଖ, କାହିଁକି କେଜାଣି, ଯେତେ ଚେଷ୍ଟା କଲେ ଆଖିକୁ ନିଦ ଆସୁ ନଥାଏ । ବିଳମ୍ବିତ ରାତ୍ରିରେ ଦିନନାଥ ପାଠୀଙ୍କ ଠାରୁ ଫୋନ୍ ଆସିଲା, 'ଶିବରାମ ଚାଲିଗଲା', ତମେ ବ୍ୟସ୍ତ ହେବନି, ପୁଅ ତାର ବାଙ୍ଗାଲୋରରୁ ଆସିବା ପରେ, କାଲି ଶବ-ସତ୍କାର ହବ ।

ପରଦିନ ରାତି ଦଶଟା ବେଳେ ଭୁବନେଶ୍ୱର ଗରାବଡୁ ଶ୍ମଶାନରେ ତାଙ୍କର ଯେତେବେଳେ ଶବ-ସତ୍କାର କାର୍ଯ୍ୟ ଚାଲିଥିଲା, ମୁଁ ଶବ ପାଖକୁ ଯାଇଥିଲି, ଶେଷ ପ୍ରଣାମ ଜଣାଇବା ପାଇଁ । ନିର୍ଜୀବ, ନିର୍ଲିପ୍ତ ଶରୀରଟା ସତେ ଯେମିତି ମତେ ଦେଖି କହୁଥିଲା, କ'ଣ ନାଟ୍ୟକାର କ'ଣ ଦେଖୁଛ, ଶେଷଦୃଶ୍ୟଟା କେମିତି ଲାଗୁଛି ?

ଆଖିରୁ ବହି ଆସିଥିଲା ଦୁଇବୁନ୍ଦା ଲୁହ ।

ଯୋଗେଶ୍ୱର ପାଟଣା
କପିଳପ୍ରସାଦ, ଭୁବନେଶ୍ୱର-୨

# ମୋ ଭାଇନା

ମହେନ୍ଦ୍ର କୁମାର ମିଶ୍ର

୧୯୯୦ ମସିହା ଜାନୁୟାରୀ । ସୁନାବେଡ଼ାଠାରେ ବନଫୁଲ ସାହିତ୍ୟ ସଂସଦ ଦ୍ୱାରା ଆୟୋଜିତ ଏକ ସାହିତ୍ୟ ସଭାରେ ଭାଗନେବାକୁ ଯାଇଥାଏ । ସେଇଠି ଦେଖାହୁଏ ଅଧ୍ୟାପକ ଶିବରାମ ପାତ୍ରଙ୍କ ସଂଗେ । ମୋତେ ଦେଖିଲାପରେ ତାଙ୍କ ଆଡୁ ଆରମ୍ଭ କଲେ, 'କଳାହାଣ୍ଡିଆ' । ଲେଖକଙ୍କୁ ଜିଲ୍ଲା ଓ ସ୍ଥାନ ସଂଗେ ଯୋଡ଼ି ଡାକିବାର ସମ୍ବୋଧନଟି ତାଙ୍କଠାରେ ବେଶ ମଜାଦାର ଭାବେ ଶୁଣିବାକୁ ମିଳୁଥିଲା । ପ୍ରଥମ ଦେଖାରେ ଏତେ ଔପଚାରିକତା କାଟି ସିଧାସଳଖ ବନ୍ଧୁଭାବେ ସହଜ କରିଦେବାର ସ୍ନେହ ଓ ଅଧିକାରଟି ଶିବରାମ ପାତ୍ରଙ୍କ ପାଖରେ ଏତେ ପ୍ରଖର ଥିଲା ଯେ, ତାଙ୍କୁ ଆପଣ ଭାଙ୍ଗିପାରିବେ ନାହିଁ । ସାହିତ୍ୟ ସଂପର୍କଟି ଘରୋଇ ସଂପର୍କ ହୋଇଯାଏ-ବାରି ହୁଏ ନାହିଁ ପାରିବେ ନାହିଁ ଏ ସଂପର୍କ ଘରୋଇ ନା ସାହିତ୍ୟ । ସାହିତ୍ୟରୁଚି ରହିଥାଏ, ତାଠୁ ଅଧିକ ବଳଶାଳୀ ହୋଇଯାଏ ଆତ୍ମିକ ସଂପର୍କ । ସୁଖ ଦୁଃଖକୁ ଛାଡ଼ି ଆଉ କି ବଡ଼ ସାହିତ୍ୟ ପାଇଟି କରିବ ହୋ ? ଏଇଟା ଥିଲା ଶିବରାମଙ୍କ ଜୀବନ ଦର୍ଶନ । ଆଉ ସେ ଲେଖା ଅପେକ୍ଷା ପଢ଼ାକୁ, ସାହିତ୍ୟରେ ଏକାଠି ବିଚରଣ କରିବା ଅପେକ୍ଷା ସାଂଗ ହେବା କଥାକୁ ବେଶୀ ଗୁରୁତ୍ୱ ଦେଉଥିଲେ ।

ଶିବରାମଙ୍କୁ ସେଇଠୁ ଭାଇନା ଡାକିବା ଆରମ୍ଭ ହୋଇଗଲା । ୧୯୯୨ରେ ମୁଁ ସିନାପାଲି ଛାଡ଼ି ଭୁବନେଶ୍ୱରରେ ରହିସାରିଥାଏ । ୧୯୯୩ରେ ଜୟପୁରଠାରେ ସାହିତ୍ୟ ଏକାଡେମୀ ଓ ଜୟପୁର ସହର ମୁନିସିପାଲିଟି ତରଫରୁ ସାହିତ୍ୟ ସଭା । ବିଷୟ ଲୋକ ସାହିତ୍ୟ । ମୋତେ ଡକା ହୋଇଥାଏ । ସେଇଠି ଶିବରାମ ଭାଇନା ଉଦ୍ୟୋକ୍ତା । ଉପାନ୍ତରେ ସାହିତ୍ୟ ଏକାଡେମୀ ସଭା କରିବ ନା ! ଖାଲି ଆମେ କଣ ଭୁନେଶ୍ୱର ଦଉଡୁଥିବୁ । ସଭାରେ ତାଙ୍କର ସକ୍ରିୟ ସହଭାଗିତା, ପାଂଚଶହ ଲୋକ ଖାଇବେ । ଦେଖିଲାବେଳକୁ ଝାଡୁଧରି ଟେବୁଲ ଓଳଉଛନ୍ତି । କହିଲି, ଇଏ କ'ଣ ? ସେ କହିଲେ, ମଂଚରେ ଭାଷଣ ଦେବା ସଂଗେ ସଂଗେ ଏଇ କାମ ଯିଏ କରିବ ନାହିଁ, ସାହିତ୍ୟଟା ତାଠି ଅଧା ରହିଯିବ । ଶିବରାମ ଭାଇନା ଖାଲି ପୋଷାକରେ ଖଦଡ଼ିଆ ନୁହେଁ, କାମରେ ବି ସେଇଆ । ଗାନ୍ଧୀ ଏମିତି ଚାକିରିଆ ଅଧ୍ୟାପକଙ୍କ ହୃଦୟରେ ଆସ୍ଥାନ ବସାଇ ରହିଛନ୍ତି । ସଭାର ଆଲୋଚନାକୁ ସେ କହୁଥିଲେ, "ଇଏତ ସାହିତ୍ୟର ଦେଖେଇ ଦବା ଦିଗ, ତା ଭିତରେ ବି ଆହୁରି ଅଦେଖା କଥା କିଛି ଅଛି, ତାକୁ ଚଷିଲେ ଅସଲ ମଞ୍ଜି ବାହାରିବ ।

ସେ ନବରଙ୍ଗପୁରରେ ଥିଲାବେଳେ ଲୋକରତ୍ନ ନାମଟକ ଗୋଟିଏ ଅନୁଷ୍ଠାନଗଢ଼ି ଡଃ କୁଂଜ ବିହାରୀ ଦାସଙ୍କ ଉପରେ ଗବେଷଣା ତଥା ଲୋକ ସାହିତ୍ୟିକମାନଙ୍କ ରଚନାକୁ ନେଇ ପତ୍ରିକା ପ୍ରକାଶନ ପାଇଁ ଚେଷ୍ଟିତ ଥିଲେ ।

ଶ୍ରେଣୀରେ ପିଲାକୁ ପଢ଼ାଇବାରେ, ସାହିତ୍ୟଚର୍ଚ୍ଚା କରିବାରେ, ଆଲୋଚନାବେଳେ ନୂତନ ଚିନ୍ତା କରିବାରେ ଶିବରାମ ଭାଇନାଙ୍କ ନୂତନ ଅନୁଭବ ଓ ସଂପୂର୍ଣ୍ଣ ଆବିଷ୍କାର । ସେ କହିବା ଅନୁସାରେ ତାଙ୍କ ହାତରେ ପଢ଼ିବା ପଢ଼ାଇବା ଯିମିତି ଭଲ ଲାଗେ, ଲେଖିବାଟା

ଅଭ୍ୟାସଯୁକ୍ତ ହୋଇପାରି ନାହିଁ । ତେଣୁ ତାଙ୍କର ମନରେ ସାହିତ୍ୟ ବିଶ୍ଳେଷଣ ଯେତିକି ଦାନାବାନ୍ଧେ, ତାହା ମନ ଭିତରେ ହିଁ ରହିଯାଏ ।

ରିଟାୟାର୍ଡ ବେଳକୁ ସେ ପ୍ରଥମ କାମଟି କଲେ ସୁରେନ୍ଦ୍ର ବିଚାର ମଞ୍ଜୁଷା । ତାହା ପ୍ରକାଶିତ ହେଲା ୨୦୦୨-୦୩ରେ । ଭଲ ସଂକଳନଟିଏ । ତାହା ଓଡ଼ିଆ ସାହିତ୍ୟରେ ନଥିଲା । ଜଣେ ଲେଖକର ବିଚାରରୁ ହିଁ ଲେଖାଟିଏ ବାହାରେ । ବିଚାର (thought) ଲେଖା ହେଲେ (written text) ରଚନାଟିଏ ହୁଏ । ସୁରେନ୍ଦ୍ର ମହାନ୍ତିଙ୍କ ସମଗ୍ର ରଚନାର ବୈଚାରିକ ସାରାଂଶଟି କ'ଣ ? ସିଏ ଗୋଟିଏ ଶବ୍ଦର କିପରି ଅର୍ଥ କରୁଥିଲେ ତାହା ତାଙ୍କ ରଚନାକୁ ପ୍ରଭାବିତ କରିବା ସ୍ୱାଭାବିକ । ଧରାଯାଉ 'ସଭ୍ୟତା' କିମ୍ବା 'ପାପ' ଶବ୍ଦ । ସୁରେନ୍ଦ୍ର ମହାନ୍ତି ଏହି ଦୁଇଟି ଶବ୍ଦର କିପରି ଅର୍ଥ କରନ୍ତି, ବା ତାଙ୍କ ମନରେ ଏହି ଦୁଇଟି ଶବ୍ଦ କେଉଁ କେଉଁ ପ୍ରସଂଗରେ ବ୍ୟବହୃତ ତାହା ଶ୍ରୀ ପାତ୍ର ଖୋଜିଛନ୍ତି ଓ ବିଚାର ମଞ୍ଜୁଷା ବହି ଲେଖିଛନ୍ତି । ସେହିପରି ସେ ଜୀବିତ ଥିଲାବେଳେ ଫକୀରମୋହନ ବିଚାର ମଞ୍ଜୁଷା ପୁସ୍ତକ ଲେଖିଲେ । ଏ ଉଭୟଙ୍କ ବିଚାରକୁ ଓଡ଼ିଆ ପାଠକଙ୍କ ପାଖରେ ନିଜ ଖର୍ଚ୍ଚରେ ବହି ଛାପି ବିତରଣ କରିବା ତାଙ୍କର ମହାନତାର ପରିଚୟ । ସାହିତ୍ୟ ପ୍ରାଣ କହିଲେ ଓ ସ୍ନେହୀ କହିଲେ ଆମେ ଯାହା ବୁଝୁ, ଶିବରାମ ଭାଇନା ସେହିପରି ଏକ ବ୍ୟକ୍ତିତ୍ୱ ।

ମୋତେ ଲୋକ ଓ ଆଦିବାସୀ ଉପରେ ସେ କୋରାପୁଟର ନାନା ଉଦାହରଣ ଦେଉଥିବେ । ଲକ୍ଷ୍ମୀପୁରାଣ ଫୋକ (Folk) କି ନୁହେଁ ? ଏହି ଉପନ୍ୟାସରେ ଫୋକ୍ କଥା କେତେ ରହିଛି । ମାଠ ରାମାୟଣରେ ଫୋକ୍‌ଲୋର୍ ଅଛି ନା ନାହିଁ । ଏମିତି କେତେ ପ୍ରଶ୍ନ ତାଙ୍କ ମନରେ ଉଦୟ ହେଲେ ସେ ମୋତେ ପଚାରୁଥିବେ । ମୁଁ ତାଙ୍କୁ ବୁଝାଇଲେ, ସେ ଖୁସି ହେଉଥିଲେ । କହିଲେ, ଇଂରାଜୀ ବହି ପଢ଼ିଲେ ଏସବୁ କଥା ଜଣାପଡୁଛି । ତମେ ସେଗୁଡ଼ା ପଢ଼ି ଏତେ କଥା ଜାଣୁଛି । ଓଡ଼ିଆ ସ୍କଲାରମାନେ ଏସବୁ ଜାଣିବା ପାଇଁ ତମେ ବହି ଲେଖିବା ଦରକାର ।

ନୂତନ ଭାବେ ସାହିତ୍ୟ କରୁଥିବା ଲୋକଙ୍କୁ ତାଙ୍କ ଉତ୍ସାହର ତୁଳନା ନାହିଁ । ସେମିତି ଲାଇବ୍ରେରୀ ଗଢ଼ିବାରେ ଓ ପ୍ରାଚୀନ କାରୁକାର୍ଯ୍ୟର ସଂଯତ୍ନ କରିବାରେ ତାଙ୍କର ଚରମ ଆତ୍ମ ସନ୍ତୋଷ । ଐତିହ୍ୟ ପାଇଁ ପ୍ରବଳ ମୋହ । ଏଣେ ପରଂପରାକୁ ଭାଙ୍ଗିବାର ଉଦାରତାରେ ବି ସେ ପ୍ରଚଣ୍ଡ ଆଧୁନିକ । ତାଙ୍କ ଭାଷାରେ, ଆମର ପରଂପରା ଓ ରକ୍ଷଣଶୀଳତା ଯେତିକି ଆଗେ ଆଧୁନିକ ବି ସେତିକି । ସତ କହିଲେ ସେ ଉଭୟକୁ ଭଲ ପାଉଥିଲେ ।

ତାଙ୍କର ଆହୁରି ଏକ ମହକ ଫୁଲଫଳ ଗଛ ଲଗାଇବା । ଆମଘରକୁ ଆସି ଗଛଟିଏ ଲଗେଇ ଦେବେ । ତେଣିକି ପାଣିଦେବା କାମ ଆମର । ଯିଏ ଗଛ ଲଗାଏ, ଫଳ ଓ ଫୁଲ ଫଳାଏ, ସେ କେମିତି ଲୋକ ହୋଇଥିବ । ମଂଚରେ ଭାଷଣ ଦେବା ଅପେକ୍ଷା, ସାହିତ୍ୟିକଙ୍କ ଅଇଁଠା ପତ୍ର ଉଠାଇବାରେ ଯିଏ ଟିକେବି ସଂକୋଚ କରେନାହିଁ ଅଥଚ ହରପ୍ରସାଦ ଦାସଙ୍କୁ କିମ୍ବା ରମାକାନ୍ତ ରଥଙ୍କୁ ମନରୁ ଯାହା ପଚାରିବା କଥା ରୋକ୍‌ଠୋକ୍ ପଚାରି ଦେବାର ଦୁର୍ବାର ସାହସ ତାଙ୍କ ଭିତରେ । ଏମିତି ଏକ ବ୍ୟକ୍ତିତ୍ୱ ଆମ ସାହିତ୍ୟ ପରିମଣ୍ଡଳରୁ ଅନ୍ତର୍ହିତ ହୋଇଯିବାର ବର୍ଷେ ପୂରିଗଲା । ମୋ ପାଇଁ ସେ ଏବେ ବି ଜୀବିତ । ମୁଁ ତାଙ୍କ ବିୟୋଗକୁ ସ୍ୱୀକାର କରିପାରିନାହିଁ । ସେ ମୋ ପାଖରେ ନାହାନ୍ତି, ଅଥଚ ତାଙ୍କ ଅସ୍ତିତ୍ୱକୁ ମୁଁ ଦେଖିପାରୁଛି । ସମ୍ଭବତଃ ଏହା ତାଙ୍କ ଆଶୀର୍ବାଦ ।

# ଶିବରାମ ପାତ୍ର ମୋ ସ୍ମୃତିର ସ୍ମୃତି

ଡଃ. ସୀମାଞ୍ଚଳ ପ୍ରଧାନ

ଦିନଯାଏ ଚିହ୍ନ ରହେ । ବଞ୍ଚିଥିବା ଲୋକ ସ୍ମୃତିର ଖିଅରେ ଗୁଡ଼େଇ ହୁଏ । ଦିନ ତା'ର ସରେ ନାହିଁ । ଆଖିର ଲୁହ ଆଖିରେ ଶୁଖେ । ଅକୁହା ବେଦନାରେ ମନ ତା'ର ସଙ୍କୁଚିତ ହୁଏ । ମୃତ୍ୟୁର ଶେଷ ପାହାଚରେ ପହଞ୍ଚିବା ପର୍ଯ୍ୟନ୍ତ ମଣିଷ ସେହି ଚିନ୍ତାରୁ ନିଜକୁ ମୁକ୍ତ କରିପାରେ ନାହିଁ । ଯିବାଲୋକ ତା' ବାଟରେ ସେ ଚାଲିଯାଏ । ଆଉ ଯେଉଁମାନଙ୍କୁ ସେ ଛାଡ଼ିଦେଇଯାଏ, ସେମାନେ ଶେଷ ପରିଣତି ପର୍ଯ୍ୟନ୍ତ ଶାନ୍ତିରେ ନିଃଶ୍ୱାସ ମାରିପାରନ୍ତି ନାହିଁ ।

ଦିବଂଗତ ଶିବରାମ ସାର୍ ଥିଲେ ସେହି ସ୍ମୃତିର ସ୍ମୃତି । ଦୁହିଁଙ୍କ ଭିତରେ ବୟସର ତାରତମ୍ୟ ଯଥେଷ୍ଟ । ସେ ଓ ମୁଁ ଦୁଇଟି ପୀଢ଼ିର ମଣିଷ । ତଥାପି ସେ ଥିଲେ ଗୁରୁକଳ୍ପ ପୁଣି ଫ୍ରେଣ୍ଡ୍ ଫିଲୋସଫର ଏଣ୍ଡ ଗାଇଡ୍ । କେତୋଟି ସ୍ନେହ କାଙ୍ଗାଳ ବ୍ୟକ୍ତିତ୍ୱ ମଧ୍ୟରୁ ସେ ଥିଲେ ଗୋଟିଏ । ଏମ୍.ଫିଲ୍ (ଓଡ଼ିଆ) ଶ୍ରେଣୀରେ ନାମ ଲେଖାଇବା ଦିନଠାରୁ ତାଙ୍କ ସହ ମୋର ସାକ୍ଷାତ ହୁଏ ଭଂଜବିହାରରେ । ଷଡ଼ିଲିଭ୍‌ରେ ଏମ୍.ଫିଲ୍ କରିବାପାଇଁ ସେ ଆସିଥାନ୍ତି ଭଂଜବିହାର । ଦୀର୍ଘଦିନର ସଂପର୍କ ଭିତରେ ମୋତେ ଭଲ ଲାଗିଥିଲା ତାଙ୍କ ବ୍ୟକ୍ତିତ୍ୱ । ସେ ଥିଲେ ସ୍ପଷ୍ଟବାଦୀ, ଅପ୍ରିୟ ସତ୍ୟର ନିଷ୍ଠାପର ପୂଜାରୀ । ବେଳେବେଳେ ତାଙ୍କର ଏହି ମନୋବୃତ୍ତି ଅନେକଙ୍କ ମନରେ ଅସୂୟାଭାବ ସୃଷ୍ଟି କରିଥାଏ । ତଥାପି ତାଙ୍କ ଚରିତ୍ରରେ ପରିବର୍ତ୍ତନ ଆସେ ନାହିଁ । କି ସାନ କି ବଡ଼, କି ଛାତ୍ର କି ଶିକ୍ଷକ, କି ରାଜନେତା କି ପ୍ରଶାସକ ସବୁଠି ସେ ମୁହେଁ ମୁହେଁ ଦୋଷତ୍ରୁଟିକୁ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି । କେତେ ଜାଗାରେ ଠୋକ୍‌କର ଖାଇଛନ୍ତି, ତଥାପି ସେଥିପ୍ରତି ତାଙ୍କର ନିଘା ନାହିଁ ।

ଓଡ଼ିଆ ସାହିତ୍ୟର ନିରଳସ ସଂଗ୍ରାହକ ଭାବରେ ସେ ଏକ ପରିଚିତ ନାମ । ଦୁଷ୍ପ୍ରାପ୍ୟ ସାହିତ୍ୟକୁ ସଂଗ୍ରହ କରିବାର ଝୁଙ୍କ ତାଙ୍କରି ପାଖରେ ଯଥେଷ୍ଟ ।

ତାଙ୍କ ସହ ଗପିଲାବେଳେ, କଥାଯାଇ ପହଞ୍ଚେ କେଉଁ ଦୂର ରାଇଜରେ । ବିରକ୍ତ ହୁଅନ୍ତିନି । ସମୟ କେମିତି ଚାଲିଯାଏ ଜଣାପଡ଼େନି । ବେଶୀ କଥା କହନ୍ତି, ଓଡ଼ିଶାର ଗଳି କନ୍ଦି ବିଷୟରେ । ଏସବୁ ସମ୍ବନ୍ଧରେ ଆପଣ ଏତେକଥା କେମିତି ଜାଣିଲେ ବୋଲି ପ୍ରଶ୍ନ କଲେ ସେ ଉତ୍ତରରେ କହନ୍ତି, ତାଙ୍କ ଅଧ୍ୟାପକ ଜୀବନର ପୂର୍ବକଥା । ସେ ଥିଲେ ଓ.ଆର୍.ଟି କଂପାନୀର ଜଣେ କର୍ମଚାରୀ । ସେହି ସୁଯୋଗରେ ସେ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଭ୍ରମଣ କରିଛନ୍ତି । ମୁଁ କଥାର ଶେଷ ଆଡ଼କୁ ମଜାରେ ଦିନେ କହିଲି ''ଆପଣ ଏ ଯୁଗର ରାଧାନାଥ'' । ସେ ଶଗଡ଼ ଗାଡ଼ିରେ ବୁଲୁଥିଲେ ଆଉ ଆପଣ ମଟର ଗାଡ଼ିରେ । ହସନ୍ତି ଅଳ୍ପ..କହନ୍ତି- ସତେ !

ଗୁଣୁପୁର ମହାବିଦ୍ୟାଳୟର ମୁଖପତ୍ର 'ଗୁଣାର୍ଣ୍ଣବ' ଠାରୁ ଆରମ୍ଭ କରି ଆଲୋକ, ସାହିତ୍ୟ, ବଂଶଧାରା, ବସୁନ୍ଧରା, ନବରଙ୍ଗ, ସଂପର୍କ, ଅନ୍ୱେଷା ପ୍ରଭୃତିର ସଂପାଦକ ଥିଲେ । ଏତଦ୍‌ବ୍ୟତୀତ ସାଂପ୍ରତିକ ଓଡ଼ିଆ ସାହିତ୍ୟ, କବିସୂର୍ଯ୍ୟ ସାହିତ୍ୟ ପରିକ୍ରମା, ବଂଶଧାରା କବିତାବଳୀ, କଥା ଲାବଣ୍ୟବତୀ ଗ୍ରନ୍ଥର ପ୍ରକାଶିତ ରୂପ ତାଙ୍କ ପ୍ରଚେଷ୍ଟାର ଫଳମାତ୍ର ।

ସେ ସାହିତ୍ୟାନୁଷ୍ଠାନର ଯେପରି ସୃଷ୍ଟିକର୍ତ୍ତା ସେହିପରି ସାହିତ୍ୟିକ ସୃଷ୍ଟି କରିବା ଦିଗରେ ମଧ୍ୟ ତାଙ୍କର ପ୍ରଚେଷ୍ଟା କିଛି କମ୍ ନୁହେଁ । ତାଙ୍କରି ପ୍ରେରଣାରେ ଅନୁପ୍ରାଣିତ ହୋଇ ଅନେକ ଛାତ୍ର ଆଜି ସାହିତ୍ୟ ଦରବାରରେ ପ୍ରତିଷ୍ଠିତ ହୋଇଛନ୍ତି ।

୧୯୮୭ ମସିହା ଜୁଲାଇମାସ । ତାଙ୍କରି ଅନୁରୋଧକୁ ଭାଙ୍ଗିନପାରି ମୁଁ ଯାଇଥାଏ ଗୁଣୁପର । ଗୁଣୁପୁରରେ ତାଙ୍କରି ଘରେ ରହିଲି ସପ୍ତାହେ । ତାଙ୍କ ଏମ୍.ଫିଲ୍ ପାଣ୍ଡୁଲିପି ଲେଖା କାମ ଚାଲିଥାଏ । ସଂଜବେଳେ ବୁଲିଯାଉ ବଜାରକୁ, ସମୟେ ସମୟେ ନଈ କୂଳକୁ ନତୁବା କଲେଜ ଆଡ଼କୁ । ରାସ୍ତାରେ ସେ ଯାହାକୁ ଦେଖନ୍ତି ଗପନ୍ତି ଅନେକ କଥା । ଏପରିକି ବଜାର କଲାବେଳେ ପରିବା ବିକାଳି ମାଛବାଲି ସହିତ ମଧ୍ୟ । ଗୁଣୁପୁରରେ ସାର୍‌ଙ୍କର ଲୋକ ସଂପର୍କ ଦେଖି ମୁଁ ଆଶ୍ଚର୍ଯ୍ୟ ମନେ କରୁଥାଏ । ପଚାରେ, ସବୁଲୋକଙ୍କ ସହିତ ଏତେ ସଂପର୍କ କାହିଁକି ? ଉତ୍ତରରେ କହନ୍ତି ତୁମେ ବିରକ୍ତ ହେଉଛକି ? ଲୋକ ଚରିତ୍ର ସଂଗ୍ରହ କରାଯାଉଛି । ବେଶ୍ ସେତିକି ।

ତାଙ୍କ ଘରକୁ ଯେତେବେଳେ ସେ ଠୁଙ୍ଗାରେ ବାନ୍ଧି ଜିନିଷ ଆଣନ୍ତି, ସେତେବେଳେ ସେ ତାରି ଉପରେ ଆଖି ବୁଲାନ୍ତି । ପୁରୁଣା ହାତଲେଖା କାଗଜ ମିଳିଲେ ତନ୍ନତନ୍ନ କରି ନିରୀକ୍ଷଣ କରନ୍ତି । ଦରକାର ମଣିଲେ ସେଗୁଡ଼ିକୁ ସଂଗ୍ରହ କରି ଫାଇଲ୍‌ରେ ରଖନ୍ତି । ଦିନେ ତାଙ୍କ ଘରେ ଦେଖିଲି ସେ ଅମୂଲଖିର ପ୍ୟାକେଟ୍ ଖୋଲି ଖିରଗୁଣ୍ଡକୁ ଗୋଟିଏ ବୋତଲରେ ରଖିଲେ । ପରେ ପ୍ୟାକେଟ୍‌ଟିକୁ କଇଂଚିରେ କାଟି ଭାଙ୍ଗିକରି ସାଇତି ରଖିଲେ । ପଚାରିଲି- ଏଇଟା କ'ଣ କରିବେ ? ଫିଙ୍ଗିଦେଉ ନାହାନ୍ତି କାହିଁକି ? ଉତ୍ତରରେ କହିଲେ ଦରକାର ବେଳେ କାମରେ ଆସିବ । ଏଇଠୁ ଶିଖ । ପରେ ଅନୁଭବ କଲି ଅଦରକାରୀ ଭାବି ଫିଙ୍ଗି ଦେଉଥିବା ଜିନିଷ ବେଳେବେଳେ ଦରକାରରେ ଆସିଥାଏ । ସେତେବେଳେ ତା'ର ମୂଲ୍ୟକୁ କଳନା କରିହୁଏନା ।

ମୁଁ ଲକ୍ଷ୍ୟ କରିଛି ସେ ପ୍ରତିକ୍ରିୟାହୀନ । କୌଣସି କଥାକୁ ମନରେ ଧରନ୍ତି ନାହିଁ । ସେ ଯେଉଁ ଅଞ୍ଚଳକୁ ବଦଳି ହୋଇଯାନ୍ତି, ସେଠାକାର କୃତୀ ସାହିତ୍ୟିକମାନଙ୍କର ସାରସ୍ୱତ ସାଧନା ଉପରେ ମନୋନିବେଶ କରନ୍ତି । ଲୁକ୍‌କାୟିତ ପ୍ରତିଭାର ଅନ୍ୱେଷଣ ଓ ସେମାନଙ୍କୁ ଲୋକଲୋଚନକୁ ଆଣିବାରେ ସେ ଲାଗିପଡ଼ନ୍ତି ।

ଦୁଷ୍ପ୍ରାପ୍ୟ ଗ୍ରନ୍ଥର ସେ ଯେପରି ଯତ୍ନ ନିଅନ୍ତି, ସେହିପରି ଗଛଲତାର ମଧ୍ୟ ଯଥେଷ୍ଟ ଯତ୍ନ ନିଅନ୍ତି । ତାଙ୍କ ଗୁଣୁପୁରସ୍ଥିତ ଭଡ଼ାଘରେ ମୁଁ ଦେଖିଛି ଦାଣ୍ଡ ଓ ବାରି ବିଭିନ୍ନ ଫୁଲକୁଣ୍ଡରେ ଭର୍ତ୍ତି । ତା'ରି ଭିତରେ ବିଭିନ୍ନ କ୍ୟାକ୍‌ଟସ୍ ।

ଏହି ଜନହିତୈଷୀ ବ୍ୟକ୍ତିତ୍ୱଙ୍କ ଆଶୀର୍ବାଦ ମୋ ଭାଗ୍ୟୋନ୍ନତିର କାରଣ ବୋଲି ମୁଁ ମନେକରିଛି । ୧୯୮୭ ମସିହା ଜୁଲାଇ ମାସ ୭ରୁ ୧୩ ତାରିଖ ଯାଏଁ ମୁଁ ଥାଏ ଗୁଣୁପୁରସ୍ଥ ତାଙ୍କ ଘରେ । ସେତେବେଳକୁ ବିଷମ କଟକରେ ନୂଆକରି ମହାବିଦ୍ୟାଳୟଟିଏ ପ୍ରତିଷ୍ଠା ହେବାକୁ ଯାଉଥାଏ । ଏହି ଅବସରରେ ଅଧ୍ୟାପକ ନିର୍ବାଚନ ପାଇଁ ତାରିଖ ଠିକ୍

ହୋଇ ସାରିଥାଏ । ଖବର କାଗଜରେ ବିଜ୍ଞାପନ ମଧ୍ୟ ପ୍ରକାଶିତ ହୋଇଥାଏ । ମୁଁ କିନ୍ତୁ ଘରୋଇ ମହାବିଦ୍ୟାଳୟରେ ଚାକିରୀ କରିବାପାଇଁ ଥାଏ ଅନିଚ୍ଛୁକ । କାରଣ ସେତେବେଳେ ମୁଁ ଥାଏ ରିସର୍ଚ୍ଚ ଆସିଷ୍ଟାଣ୍ଟ । ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ୟୁଜିସି ପ୍ରୋଜେକ୍ଟରେ କାମ କରୁଥାଏ । ଆଶା ଥାଏ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକଟିଏ ହେବି ।

ଶିବରାମ ସାର୍ କହିଲେ - ତୁମେ ଏଇଠୁ ବିଷମ କଟକ ଯାଅ । ସେଇଠି ଅଧ୍ୟାପକ ପାଇଁ ସାକ୍ଷାତକାର ୧୪ ତାରିଖରେ ହେଉଛି । ଚିଠି ଖଣ୍ଡେ ଲେଖିଦେଇ ସେ ମୋତେ ବିଷମ କଟକ ବସ୍‌ରେ ଚଢ଼ାଇଦେଲେ । କହିଲେ ପଦୁଟିଏ, 'ତୁମେ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକଟିଏ ହେବା ସ୍ୱପ୍ନ ଦେଖ । କିନ୍ତୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆମ ବିଭାଗରେ ବ୍ରାହ୍ମଣ-ଅବ୍ରାହ୍ମଣ ଭିତରେ ଦୂରତା ବେଶୀ । ତୁମେ ପିଲା ଲୋକ । ପରେ ବୁଝିବ ।'

ମୋର ଅନିଚ୍ଛା ସତ୍ତ୍ୱେ ମୁଁ ତାଙ୍କ କଥାମାନି ଇଣ୍ଟରଭ୍ୟୁରେ ଯୋଗ ଦେଲି । ସେହି ସାକ୍ଷାତକାର ଦିନ ମୋର ଗୋଟିଏ ଦୀର୍ଘ ପ୍ରବନ୍ଧ ସମାଜର ସାପ୍ତାହିକ ପୃଷ୍ଠାରେ ପ୍ରକାଶିତ ହୋଇଥାଏ । ସେତେବେଳକୁ 'ସମାଜ' ବ୍ୟତୀତ ଦୈନିକ ଖବରକାଗଜ ବିଷମ କଟକକୁ ଆସୁନଥାଏ । ରାୟଗଡ଼ା ମହାବିଦ୍ୟାଳୟର ଅଧ୍ୟାପକମାନେ ଇଣ୍ଟରଭ୍ୟୁ କରିବାପାଇଁ ଆସିଥାନ୍ତି । ସେମାନେ ପଢ଼ିଥାନ୍ତି ମୋର ପ୍ରବନ୍ଧଟିକୁ । ମୋର ମନେଅଛି ସେମାନଙ୍କ ମଧ୍ୟରୁ ମୋର ବୁଦ୍ଧି ପରୀକ୍ଷା କରିବାକୁ କେହି ବି ଆଗଭର ହେଲେ ନାହିଁ । ଏତିକି କହିଲେ ଆପଣ ଏଇ କଲେଜରେ ଜଏନ୍ ହେବେ କି ? ମୁଁ ସେଇଠି ସେଦିନ ହଁ ଟିଏ ମାରି ଫେରିଗଲି । ଭଂଜବିହାରରେ ପହଞ୍ଚୁ ପହଞ୍ଚୁ ପାଇଲି ନିଯୁକ୍ତ ପତ୍ରଟିଏ ।

ଏଇଠି ଆଜକୁ ୧୮ବର୍ଷ ବିତିଗଲା । ପ୍ରକାରାନ୍ତରେ ସେ ମୋତେ ଏଠାକାର ବାସିନ୍ଦା କରିଦେଲେ । ମୋତେ ଦେଖିବାପାଇଁ ସେ ବିଷମ କଟକ ଆସିଥିଲେ ଜାନୁୟାରୀ ୩୧-୨୦୦୫ରେ । ଆସିବା ପୂର୍ବରୁ ଭୁବନେଶ୍ୱରରୁ ଫୋନ୍ ଯୋଗେ ସେ ମୋତେ ଜଣାଇଦେଇଥିଲେ । ସେତେବେଳକୁ ରାତି ସାତଟା । ମୁଁ ତାଙ୍କ ଅପେକ୍ଷାରେ ଥାଏ ବସ୍ ଷ୍ଟାଣ୍ଡରେ । ସେ ଟ୍ରେକରରୁ ଓହ୍ଲାଇ ଆମ ଘରେ ପରିଚିତ ବ୍ୟକ୍ତି ଭଳି ପଶିଗଲେ । ମୋ ଦୁଇଝିଅ ଓ ପତ୍ନୀଙ୍କୁ ନିଜର ପରିଚୟ ନଦେଇ ଗପିବାକୁ ଲାଗିଲେ । ମୁଁ ଦଶମିନିଟ ପରେ ପହଞ୍ଚିଲି । ମୋତେ ଦେଖି ଅତ୍ୟନ୍ତ ଖୁସୀ ହେଲେ । ଗପ ଚାଲିଲା । ଦେହ ଅସୁସ୍ଥ କଥା କହିଲେ । ରାତି, ଦୁଇଖଣ୍ଡ ରୁଟି, ସନ୍ତୁଳା ଓ ଟିକିଏ ଆଚାର ଖାଇଲେ ।

ପହଞ୍ଚିଲାପରେ ମୋ ପାଖକୁ ଫୋନ କରି ଅନୁରୋଧ କଲେ ତାଙ୍କ ଗୌରୀନଗରସ୍ଥିତ ଗୃହକୁ ମୋତେ ପରିବାର ସହ ଯିବାପାଇଁ । ଘରେ ପ୍ରାୟତଃ ସମସ୍ତେ ଠିକ୍ କରିଥିଲୁ ଗ୍ରୀଷ୍ମାବକାଶରେ ଭୁବନେଶ୍ୱର ଯାଇ ଶିବରାମ ସାର୍‌ଙ୍କ ଘରେ ଆତିଥ୍ୟ ଗ୍ରହଣ କରିବାପାଇଁ । କିନ୍ତୁ ସେ ରହିଲେ ନାହିଁ .....

ଓଡ଼ିଆ ବିଭାଗ, ମା ମାର୍କମା ମହାବିଦ୍ୟାଳୟ
ବିଷମକଟକ, ରାୟଗଡ଼ା

# ମାମୁଁ

ମହେନ୍ଦ୍ର କୁମାର ସୁବୁଦ୍ଧି

ସେମିତି କିଛି ବଡ଼ ଘଟଣା ନୁହଁ । କିନ୍ତୁ ସେଦିନର ଘଟଣାଟି ମୋ ପାଇଁ ଏକ ସୁନ୍ଦର ସ୍ମୃତି ପାଲଟି ଯାଇଛି । ତେତିଶ ବର୍ଷ ତଳର କଥା, ମୁଁ ହୋଇଥାଏ ଛଅବର୍ଷର । ୧୯ ଫେବୃୟାରୀ ୧୯୭୩ ସେଦିନ ଥାଏ ଶିବରାମ ମାମୁଁଙ୍କ ବାହାଘର । ଆମେ ସମସ୍ତେ ଖୁବ୍ ଖୁସି ଥିଲୁ । ବାହାଘର ଉତ୍ସବର ମଜା ଓ ଆନନ୍ଦ ଉପଭୋଗ କରୁଥିଲୁ । ସବୁଠୁ ବେଶୀ ଭଲ ଲାଗିଲା ସାନ ମାଉସୀଙ୍କର ଭାଇ ଭାଉଜ (ମୋ ମାମୁଁ, ମାଇଁ)ଙ୍କ ବିବାହ ଉପଲକ୍ଷେ ଗୀତ ଗାଇବା । ମାମୁଁଙ୍କ ବାହାଘରକୁ ଯିବା ପାଇଁ ବାପା ମୋ ପାଇଁ ତିନି ହଳ ନୂଆ ଡ୍ରେସ୍ ଓ ନୂଆ ଜୋତା କିଣି ଦେଇଥିଲେ । ଏତେ ବର୍ଷ ଭିତରେ ଆଉ କେବେ ବି ମୋ ପାଇଁ ତିନି ହଳ ନୂଆ ଡ୍ରେସ୍ ଏକା ସାଙ୍ଗରେ ହୋଇନାହିଁ । କିନ୍ତୁ ଏହା ସମ୍ଭବ ହୋଇପାରିଲା ସେହିଦିନ, ଯେଉଁଦିନ ମୁଁ ଶିବରାମ ମାମୁଁଙ୍କ ସାନ ଝିଅକୁ ମାମୁଁଙ୍କ ବାହାଘରର ଠିକ୍ ପଚିଶି ବର୍ଷରେ ବାହାହେଲି ଅର୍ଥାତ୍ ୬ ଫେବୃୟାରୀ ୧୯୯୮ରେ । ମୋ ବାହାଘରର ଠିକ୍ ତେରଦିନ ପରେ ମାମୁଁଙ୍କ ବାହାଘର ପଚିଶ ବର୍ଷ ପୂରିଲା । ସେଦିନ ତାଙ୍କର ବୋଇଗଡ଼ ଘରେ ବହୁତ ଉପଭୋଗ କଲୁ ।

ମୋ ବାହାଘର ପରେ ମୁଁ ମାମୁଁଙ୍କ ସହ ଆହୁରି ବେଶୀ ମିଶି ପାରିଲି । ଦିନେ ସେ ହିଁ ମୋର ପଥ ପ୍ରଦର୍ଶକ ପାଲଟି ଗଲେ । ମୁଁ ମୋ ବଡ଼ବାପାଙ୍କ ପାଖରେ ହିଁ ଚାକିରୀ କରୁଥିଲି । ତାଙ୍କ ପାଖରେ ରହି ମୁଁ ବ୍ୟବସାୟର ବହୁତ କଥା ଶିଖିପାରିଲି କିନ୍ତୁ ସେଠି ବହୁତ ବର୍ଷ ରହି ମୁଁ ମୋ ଜୀବନର ଲକ୍ଷ୍ୟ ଭୁଲିଯାଇଥିଲି । ଭବିଷ୍ୟତ କଥା ମୋଟେ ଭାବି ନଥିଲି । ମୋ ନିଜ ସଂସାର ଆରମ୍ଭ କରିବା ପରେ ମୁଁ ନିଜେ ମୋର କିଛି ସଂସ୍ଥା ଆରମ୍ଭ କରିବି ନା ଆଉ କିଛି କରିବି କିଛି ଭାବି ନଥିଲି । ମାମୁଁଙ୍କ ପ୍ରେରଣା ଓ ଉତ୍ସାହ ଯୋଗୁଁ ବାହାଘରର ଦୁଇବର୍ଷପରେ ମୁଁ ନିଜେ ଏକ ବ୍ୟବସାୟ ଆରମ୍ଭ କଲି ଏବଂ ସେହି ବ୍ୟବସାୟ ଛଅ ବର୍ଷ ହେଲା ସୁରୁଖୁରୁରେ ଚାଲିଛି । ମୁଁ ଜାଣେ ମୋ ପାଇଁ ତାଙ୍କ ଆଶୀର୍ବାଦ ସର୍ବଦା ରହିଛି । ସବୁଠୁ ବଡ଼ କଥା ହେଲା ବହି । ଯାହାର ମୂଲ୍ୟ ମୁଁ ତାଙ୍କଠୁ ହିଁ ବୁଝିଲି । ବହି ପଢ଼ିବାର ଆନନ୍ଦ ବି ତାଙ୍କଠୁ ହିଁ ଶିଖିଲି । ବାହାଘର ପରେ ତାଙ୍କ ସଂସ୍ପର୍ଶରେ ଆସି ପ୍ରତ୍ୟେକ ପୁସ୍ତକ ମେଳାରେ ବହି କିଣିବାର ଅଭ୍ୟାସ ସୃଷ୍ଟି ହେଲା । ଏବଂ ଘରେ ବହି ପାଇଁ ଏକ ସ୍ୱତନ୍ତ୍ର ଜାଗା ତିଆରି କଲି । ମୋ ପାଇଁ ସେ ସର୍ବଦା ସ୍ମରଣୀୟ ହୋଇ ରହିବେ ।

ଫୁଲବାଣୀ

# ଶିବରାମ ସତରେ କ'ଣ ତୁମେ ନେଇଛ ବିରାମ ?

ପ୍ରଫେସର୍ ବୀରେନ୍ଦ୍ର ନାୟକ

୧୯୭୧ ମସିହା । ଜାନୁୟାରୀ ମାସ ବୋଧହୁଏ । ଯୁବ ଲେଖକ ସମ୍ମେଳନର ବାର୍ଷିକ ଅଧିବେଶନ ହେଉଥାଏ ଫୁଲବାଣୀରେ ଚକ୍ରା ବିଷୟୀ ହାଇସ୍କୁଲରେ । ଓଡ଼ିଶାର ବିଭିନ୍ନ ଅଂଚଳରୁ ଯୁବକବି, ଲେଖକ ଆସିଥାନ୍ତି । ମୁଁ ଲେଖକ ବା କବି ନ ହୋଇଥିଲେ ମଧ୍ୟ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପରାମର୍ଶ କ୍ରମେ ଏହି ଅଧିବେଶନରେ ଯୋଗଦେବାପାଇଁ ଆସିଥିଲି । ସେତେବେଳେ ମୁଁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଗଣିତ ଛାତ୍ର । ଆସିଥାନ୍ତି ଏହି ଅଧିବେଶନକୁ ବାଲୁଗାଁରୁ ଆଭା-ବେଳା ଗୋଷ୍ଠୀର ପ୍ରସନ୍ନ ପାଟଶାଣୀ, ସଦାଶିବ ଦାଶ, ନବୀନ ସୁବୁଦ୍ଧି, ଦେବେନ୍ଦ୍ର ମାନସିଂହ, କଟକରୁ ବୀଣାପାଣି ମହାନ୍ତି, ଗୁରୁ ମହାନ୍ତି, ତୁଳସୀ ଓଝା, ବୀଣା ମହାପାତ୍ର, (ସୌରଭ), ବାରିପଦାରୁ ସୁବୋଧ ଦାସ, ଭୁବନେଶ୍ୱରରୁ କମଳାକାନ୍ତ ପଣ୍ଡା, ଶାନ୍ତିନିକେତନରୁ ଧୀରେନ୍, ସମ୍ବଲପୁରରୁ ପ୍ରଫୁଲ୍ଲ ତ୍ରିପାଠୀ, ଭଦ୍ରକରୁ କୃଷ୍ଣଚରଣ ବେହେରା, କମଳକୁମାରୀ ରାଉତ ଇତ୍ୟାଦି । ଆଉ ବ୍ରହ୍ମପୁରରୁ ଆସିଥାନ୍ତି ଶିବରାମ ପାତ୍ର ଓ ଦଶମ ଶ୍ରେଣୀରେ ପଢୁଥିବା ପ୍ରଦୀପ ମହାପାତ୍ର । ଏହି ଅଧିବେଶନରେ ଅତିଥିଭାବେ ଯୋଗ ଦେଇଥିଲେ ନାଟ୍ୟକାର ରାମଚନ୍ଦ୍ର ମିଶ୍ର, କବି ଅନନ୍ତ ପଟ୍ଟନାୟକ ଓ ସଚ୍ଚିରାଉତରା ।

ଏହି ଅଧିବେଶନ ଥିଲା ମୋ ପାଇଁ ଏକ ଅଭୂତପୂର୍ବ ଅଭିଜ୍ଞତା । ଜଣେ ସଂପୂର୍ଣ୍ଣ ଅକବି, ଅଲେଖକର ଅନଭିଜ୍ଞ ତାରୁଣ୍ୟ ଯେପରି ଫାଟିପଡୁଥିବା ସୃଜନୀ ପରିବେଶରେ କେତେବେଳେ ହୋଇପଡ଼ିଥିଲା ବାକ୍‌ଶୂନ୍ୟ ତ କେତେବେଳେ ଅତ୍ୟନ୍ତ ପ୍ରଗଳ୍‌ଭ । ସେହି ପରିବେଶ ଭିତରେ ମୁଁ ଶିବରାମ ପାତ୍ରଙ୍କୁ ଦେଖିଥିଲି । କବିତାର ବିଷୟବସ୍ତୁ କ'ଣ ଥିଲା ମୋର ମନେ ନାହିଁ । କିନ୍ତୁ ପ୍ରଦୀପଙ୍କର କବିତାଟି କିଛି ବିତର୍କ ସୃଷ୍ଟି କରିଥିଲା- ମନେପଡୁଛି, ହ୍ୟାଫ୍ ପାଣ୍ଟ ପିନ୍ଧି ଆସିଥିବା କିଶୋର ପ୍ରଦୀପଙ୍କ ଲେଖନୀରୁ ସେ ଭଳି କବିତା ଗ୍ରହଣ କରିପାରୁନଥିଲେ କିଛି ଶ୍ରୋତା/ କବି । ପ୍ରଦୀପ ଯେପରି ତାଙ୍କ ପାଇଁ ନିଷିଦ୍ଧ ଇଲାକାରେ ଔଦ୍ଧତ୍ୟ କରିଛନ୍ତି । ଏହାଥିଲା ଅଭିଳାଷ । ଶିବରାମ ବାହାରିଥିଲେ ପ୍ରଦୀପଙ୍କର ସପକ୍ଷରେ । କବିତାର ମୂଲ୍ୟାୟନ କବିର ବୟସ ଦ୍ୱାରା ପ୍ରଭାବିତ ନ ହେଉ- ଏହା ଥିଲା ଶିବରାମଙ୍କର ଯୁକ୍ତି ଓ ଆବେଦନ । ଏହି ଅବସରରେ ଶିବରାମଙ୍କ ସହ ମାତ୍ର ହୋଇଥିଲା ଦୁଇପଦ କଥା- ଦୁଇଦିନର ରହଣି- ଆନ୍ତରିକତାର ମୂଳଦୁଆ ପଡୁଥିଲା ବୋଧହୁଏ ।

ତାପରେ ଦେଖାହୁଏ ଅଶିଦଶକରେ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପରିସରରେ । ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେତେବେଳେ ଗଣିତ ଅଧ୍ୟାପକ । ଶିବରାମ ଆସିଥାନ୍ତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଏମ.ଫିଲ. କରିବା ପାଇଁ । ଅତି ସ୍ୱଳ୍ପ କଥାବାର୍ତ୍ତା ।

ଆପଣାର କରି ନେବାର ଯେପରି କୌଣସି ସୁଯୋଗ ସେ ହାତଛଡ଼ା କରିବାକୁ ଚାହାନ୍ତି ନାହିଁ । ଖଦଡ଼ ପଂଜାବୀ, କାଂଧରେ ଝୁଲା, ବିଶାଳ ବକ୍ଷ ଓ ଆତ୍ମବିଶ୍ୱାସର ଚାଲିରୁ ଆମେ ତାଙ୍କୁ ଡାକୁଥିଲୁ 'ବୀର ଓଡ଼ିଆ' ସେ ତ ସବୁବେଳେ ସାହିତ୍ୟ ସଭାମାନଙ୍କରେ ମାତିଥାନ୍ତି- ଓ ମୁଁ ସେଗୁଡ଼ିକରେ ପ୍ରାୟ ନଥାଏ । କିନ୍ତୁ ଏମ.ଫିଲ/ ରିସର୍ଚ୍ଚ ସ୍କଲାର ଛାତ୍ରାବାସରେ ବଂଧୁ ପ୍ରଭାତ ମହାନ୍ତି ଓ ଅନ୍ୟାନ୍ୟ ଛାତ୍ର ଗବେଷକମାନଙ୍କ ପାଖକୁ ଯେତେବେଳେ ଖଟିକରିବା ପାଇଁ ଯାଏ, ବେଳେବେଳେ ଶିବରାମଙ୍କ ସହ ସେଠି ଦେଖା ହୋଇଥାଏ ଓ ସେତେବେଳେ ଖଟିଟା ବେଶ ଜୀବନ୍ତ ହୁଏ ।

ତାପରେ ହଠାତ୍ ଦେଖାହୁଏ ଭୁବନେଶ୍ୱରରେ ପୁସ୍ତକ ମେଳା ଅବସରରେ । ସେତେବେଳକୁ ମୁଁ ଆସି ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ । ସେ ଆରମ୍ଭ କରିଦେଲେ ଗଂଜାମୀ ଭାଷାରେ କଥାବାର୍ତ୍ତା । ଆନ୍ତରିକତା ତ ନିଗିଡ଼ି ପଡୁଥିଲା, ପ୍ରତ୍ୟେକଟି ଶବ୍ଦରୁ । ଶେଷ ପୁସ୍ତକ ମେଳା ସାକ୍ଷାତ ସମୟରେ ମୋତେ ଟାଣି ନେଇଗଲେ 'ଅନୁପମ ଭାରତ' ଷ୍ଟଲକୁ - କହିଲ, ଜାଣିଛନା ଏ କାଗଜ ଆମ ଗଂଜାମର । ସେ ଜାଣିଥିଲେ ଯେ ମୁଁ ଗଂଜାମର ନୁହେଁ- ଯାଜପୁରର । ତଥାପି ସେ ମୋତେ ସବୁବେଳେ ଗଂଜାମର ବୋଲି ହିଁ ଭାବୁଥିଲେ- ଆପଣାର କରିନେବାର ଏହାଠାରୁ ଭଲି ଲଳିତ କୌଶଳ ଆଉ କ'ଣ ହୋଇପାରେ !

ଶେଷଥର ପାଇଁ ମୁଁ ଶିବରାମଙ୍କୁ ଦେଖିଥିଲି କେଦାରନାଥ ଗବେଷଣା ପରିଷଦର ସଭା ଗୃହରେ- ନୀଳକଣ୍ଠ ସ୍ମୃତି ସଂସଦ ତରଫରୁ ଆହୂତ ଏକ ଆଲୋଚନା ସଭାରେ । ସେତେବେଳକୁ ସେ ଅବସର ନେଲେଣି ଅଧ୍ୟାପନା ବୃତ୍ତିରୁ । ମୁଁ ତାଙ୍କୁ କହିଥିଲି ଏବେ ଆପଣ ଫୁଲଟାଇମର୍ ହୋଇଗଲେ ସାହିତ୍ୟ, ସଂସ୍କୃତି ଓ ସଭାସମିତି ପାଇଁ । ସେ ହସିଲେ ଓ ତାଙ୍କ ନିଜସ୍ୱ ଶୈଳୀରେ କହିଲେ, ''ହଇ'' ।

ହଠାତ୍ ବଂଧୁ ପ୍ରଭାତ ମହାନ୍ତିଙ୍କ ଠାରୁ ଟେଲିଫୋନ ଯୋଗେ ଖବର ପାଇଲି ଯେ ଶିବରାମ ଆଉ ଇହ ଜଗତରେ ନାହାନ୍ତି । ସେତେବେଳକୁ କିଛି ଦିନ ଗଡ଼ି ଗଲାଣି । ମୁଁ ପ୍ରଫେସର ଗଗନେନ୍ଦ୍ର ଦାଶଙ୍କଠାରୁ ଜାଣିଲି ଯେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଚାଲୁଥିବା ଏକ ସେମିନାରରୁ ଯୋଗଦେଇ ଫେରିବାର କିଛି ସମୟପରେ ଅସ୍ୱସ୍ତି ଅନୁଭବ କଲେ ଓ ତାର କିଛି ସମୟ ପରେ ଚାଲିଗଲେ । ସବୁ ଯେପରି ଥିଲା ଆକସ୍ମିକ ।

ଏତେ ଆତ୍ମବିଶ୍ୱାସର ଚାଲିରେ, ଏତେ ଶପଥ ବହନ କରୁଥିବା ସ୍ୱରରେ ହଠାତ୍ ବିରାମ ଆସିଯିବ - ମୁଁ ଗ୍ରହଣ କରିପାରୁନଥିଲି । ଏବେ ବି ବିଶ୍ୱାସ କରିପାରୁନାହିଁ । ପ୍ରଶ୍ନ ବାରମ୍ବାର ଉଠୁଛି ମନରେ 'ଶିବରାମ-ସତରେ କ'ଣ ତୁମେ ନେଇଛ ବିରାମ ?'

ଗଣିତ ବିଭାଗ,ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ମୋର ଜଣେ ମୁରବୀ

ଦେବାଶିଷ ମହାପାତ୍ର

ସେ ଥିଲେ ମୋ'ର ଜଣେ ମୁରବୀ । ତାଙ୍କର ସମ୍ବୋଧନ ଓ ସମ୍ଭାଷଣରେ ଯେଉଁ ମିଠାପଣ ଥିଲା, ଗୁରୁଜନ ସୁଲଭ ଯେଉଁ ଆକଟ ଓ ଅଭିମାନ ଥିଲା ତାହା କ୍ୱଚିତ୍ ଦେଖିବାକୁ ମିଳେ । ତାଙ୍କ ସହ ସମ୍ପର୍କ ହାତଗଣତିରେ ଅଳ୍ପ କେତୋଟି ବର୍ଷ ମାତ୍ର । ତଥାପି ସେଥିରେ ନିବିଡ଼ତା ଓ ଗଭୀରତା ଥିଲା ଆଶାତୀତ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ସଭାସମିତିରୁ ଆରମ୍ଭ ଏହି ସମ୍ପର୍କ । 'ଚିତ୍ରଚତୁର୍ଥୀ' ଦୁଇଦିନିଆ ଆଲୋକଚକ୍ରରେ ଏହି ସମ୍ପର୍କ ଅଧିକ ପ୍ରଗାଢ଼ । ତା' ଭିତରେ କୃଷ୍ଣଚରଣ ସାହୁ ସ୍ମୃତି ସନ୍ଧ୍ୟା, ପାନ୍ଥନିବାସର କବିତା ପାଠ, ଓଡ଼ିଶା ସାହିତ୍ୟ ଏକାଡେମୀର ଅନେକ ଉତ୍ସବ... । କେବଳ ଯେ ସଭା ଥିଲା ଆମର ଦେଖାଚାହାଁର ସ୍ଥାନ, ତା' ନୁହେଁ । ଗଛଭର୍ତ୍ତି ସାଇକେଲ୍‌ରେ କେବେ କେଦାରଗୌରୀ ଛକ ତ କେବେ ପୁନାମାଗେଟ୍ । ବାଟ ଅବାଟ କିଛି ନାହିଁ । ହଠାତ୍ ମୁଲାକାତ୍, ଗପର ଆରମ୍ଭ ଏଇମିତି-ଦେବାଶିଷ ! ଆଉ କ'ଣ ଚାଲିଛି ? କିଛି ବହି ବାହାର କଲଣି ନା ନାଇଁ... ହଉ ବ୍ୟସ୍ତ ନାଇଁ । 'ସରସ୍ୱତୀ' ଅଛି ।... ତା'ପରେ ସାହିତ୍ୟଠୁ ରାଜନୀତି, ଦୁର୍ନୀତି ଏମିତି କେତେ କଥା । କଥାରୁ ନଥା । ସମୟ ଅଣ୍ଟେ ନାଇଁ । ଠିଆ ଠିଆ ରୋକ୍‌ଠୋକ୍ ଠୋସ୍ ଠାସ୍ କଥା । ହଠାତ୍ 'ହଉ' କହି ସାଇକେଲ୍‌ରେ ପୁଣି ଗଛ ସହ ପ୍ରତ୍ୟାବର୍ତ୍ତନ । ଫେରିଯିବା ପରେ ଭାବେ ଏଇ ଦାଢ଼ିଆ ମଣିଷଟାକୁ ଆଗରୁ, ବହୁ ଆଗରୁ, ଆହୁରି ଆଗରୁ ଜାଣିଚି । ସବୁ ଦାଢ଼ିଆ ମଣିଷ କ'ଣ ଏମିତି ପ୍ରଜ୍ଞାଦୀପ୍ତ ? ସକ୍ରେଟିସ୍-ରବୀନ୍ଦ୍ରନାଥ ନୀଳକଣ୍ଠ-ଶିବରାମ... ! ଫେରିଆସେ ପୁଣି ଭାବନାକୁ । ମୁଣ୍ଡର ଝାମ୍ପୁରା ଅଲରା କେଶ ଉପରେ ଶ୍ରଦ୍ଧାରେ ଆଉଁସି ଦେଇଥିବା ସେହି ସ୍ପର୍ଶ, ସେହି ରୋମାଞ୍ଚକୁ ଆଉଥରେ ଅନୁଭବ କରି ପୁଲକି ଉଠେ । ଏଥିପାଇଁ ପ୍ରିୟମ୍ବଦା କି ରମାକାନ୍ତର ପରିଚୟ, ବନ୍ଧୁତା, ଉପକ୍ରମଣିକା, ଚିହ୍ନାମୁହଁର ଚିତ୍ର ... କିଛି ଦରକାର ନଥିଲା ।

ସାର୍‌ଙ୍କ ସହ ସମ୍ପର୍କ ଥିଲା ଗଭୀର, ଅତୁଟ । କଥୋପକଥନରେ ଥିଲା ମୁରବୀର ଅଧିକାର, ଗୁରୁର ଗାମ୍ଭୀର୍ଯ୍ୟ, ବୟସ୍କ ବନ୍ଧୁର ଥଟ୍ଟା ପରିହାସ । ସବୁର ଭାଗମାପ ଏମିତି ଯେ ଉନିଶ୍-ବିଶ୍ ନଥିଲା । ବେଳେବେଳେ ଦିନନାଥ ସାର୍‌ଙ୍କ ସହ ଏକାଠି ଭେଟ ବେଳେ ତାଙ୍କ ସମ୍ବୋଧନ ଭଙ୍ଗି 'ଦେବାଶିଷ' ବଦଳିଯାଏ 'କ'ଣ ଡକ୍ଟର !' କୁଆଡ଼େ ଗଲା ସେଇଦିନ, ସେଇ ସମ୍ବୋଧନ.. ? କୁଆଡ଼େ ଗଲେ ସେଇ ଦାଢ଼ିଆ ମଣିଷ ? ବୟସ୍କ ବନ୍ଧୁ...ମୁରବୀ...ଗମ୍ଭୀର ଗୁରୁ... ? ସତରେ କ'ଣ ଏତେଦିନ ହେବ ସେଇ ଚିହ୍ନା ଚର୍ଚ୍ଚିତ ମୁହଁଟି ଆମଠୁ ଚାଲିଯାଇଚି ? ଆଉ ଫେରିବନି ଗଛ ସହ.. ଆଉଁସି ଦେବନି ଅଲରା କେଶ... ଆକଟ କରିବନି ଗବେଷଣାର ଗଭୀରତା..ପୁଛିବନି ଭଲମନ୍ଦ... ସମ୍ବୋଧିବନି 'ଦେବାଶିଷ' ତ ଆଉ କେତେବେଳେ 'ଡକ୍ଟର୍'... । ଯୁବକ ଅଛ, ଭଲ ଲେଖୁଛ, ଆହୁରି କିଛି କାମ କର, ଅଧିକ ଲେଖ, ଭାଙ୍ଗି ପଡ଼ନି, ଚାକିରି ସବୁ କିଛି ନୁହେଁ, ପରିଚିତ

ବଡ଼କଥା, ବେଶିବେଶି ପଢ଼, ଆମ ସାହିତ୍ୟରେ ବହୁକଥା ଏବେ ବି ସେମିତି ରହିଯାଇଛି, ଆଲୋଚନା କର, ଭିତରକୁ ପଶ, ଖୋଜ, ବାହାରକର, ନୂଆ ନୂଆ କଥା କର... ଅସରନ୍ତି ଉପଦେଶ । ଉପଦେଶ ନୁହେଁ ତ ମୁରବୀ ପଣିଆ । ମୁରବୀ ପଣିଆ ବି ନୁହେଁ, ବରଂ ଆତ୍ମୀୟତା ଓ ଅନ୍ତରଂଗତା । ଆଜି ଯେତେବେଳେ ପୂର୍ବାଞ୍ଚଳ ଭାଷା କେନ୍ଦ୍ରରେ ଅଧ୍ୟାପନା.. ଆଜି ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଦୂର ନିରନ୍ତର ଏମ୍.ଏ ଶ୍ରେଣୀ ପାଇଁ ପାଠ୍ୟ ସାମଗ୍ରୀ ରଚନା ସେତେବେଳେ ତାଙ୍କୁ ପାଖରେ ନ ପାଇବାର ଅବଶୋଷ । ଶୁଣିବାକୁ, ପୁଛିବାକୁ, ଶୁଣିସାରି 'ହଉ' କହି ପିଠି ଥାପୁଡ଼େଇ, ମୁଣ୍ଡ ଆଉଁସି ଫେରିଯିବାକୁ ସେହି 'ଚିହ୍ନାମୁହଁ' ଆଜି କାହିଁ ? ସାର୍ ! ଆପଣ ଯୋଉଠି ଥା'ନ୍ତୁ । ସେମିତି ଆମର ମନେଥିଲା ଭଳି ଥା'ନ୍ତୁ । ଆମକୁ ଚାହିଁଥାନ୍ତୁ । ଆମକୁ ଆକଟ କରନ୍ତୁ । ଆମକୁ ବାଟ ଦେଖାନ୍ତୁ....

ପ୍ଲଟ୍ ନଂ- ୫୭୦/୫, ଡାକବଙ୍ଗଳା ଛକ
ଭୁବନେଶ୍ୱର-୭୫୧୦୦୨

## ମୋ ସ୍ମୃତିରେ ଶିବରାମ ବାବୁ

ସୁବାସ ଚନ୍ଦ୍ର ମିଶ୍ର

ମନେପଡ଼େ, ଲେବାନନ୍‌ର ପ୍ରସିଦ୍ଧ କବି ଖଲିଲ ଜିବ୍ରାନଙ୍କ ଗୋଟିଏ ଧାଡ଼ି- 'ସ୍ମୃତି ମିଳନର ଏକ ସ୍ୱରୂପ ।'

ଏବେ ତାଙ୍କ ସ୍ମୃତିରେ ମୋର ଅନୁଭବଟିକୁ ଶବ୍ଦ ଦେବାର ବେଳ । ଏମିତି ଦିନେ ଜୟପୁର ରେଡ଼ିଓ ଷ୍ଟେସନ୍‌ରେ କାର୍ଯ୍ୟକ୍ରମ ନିଷ୍ପାଦକ କାହ୍ନୀକିଙ୍କର ମିଶ୍ରଙ୍କ ଠାରୁ ଶିବରାମ ବାବୁଙ୍କ ବିଷୟରେ ଏବଂ ବଂଶଧାରା ସଂପାଦନା ସମ୍ବନ୍ଧରେ ଶୁଣିଲି । ଜଣେ ସାହିତ୍ୟ କର୍ମ କରୁଥିବା ମଣିଷ ହିସାବରେ ତାଙ୍କୁ ଜାଣିବା, ଦେଖିବା, ଶୁଣିବା ଇଚ୍ଛାଟି ମନଭିତରେ ଅଙ୍କୁରିଲା ।

ସେତେବେଳକୁ ଶିବରାମ ବାବୁ ଗୁଣୁପୁରରୁ ଆସି ନବରଙ୍ଗପୁର ତେଲି ସାହିରେ ଘରଭଡ଼ା ନେଇ ରହୁଥାଆନ୍ତି । ଆଗରୁ କେବେ ଦେଖିନଥାଏ ତାଙ୍କୁ, ଏଣୁ ମନରେ ତାଙ୍କ ବ୍ୟକ୍ତିତ୍ୱ ବିଷୟରେ କେମିତି ଗୋଟିଏ କାଳ୍ପନିକ ଧାରଣା । ଟିଣ ଦୁଆରର ଗେଟ ଖୋଲି ଭିତରକୁ ଗଲି । ଅଗଣାରେ କାଠଚମ୍ପା ଫୁଲର ଗନ୍ଧ, କାନ୍ଥ ପାଖରେ ହେନାର ବାସ୍ନା । ପିଣ୍ଡାକାନ୍ଥକୁ ଲାଗି କାକଟସ ଗଛର ଗମଲା । ରୁଦ୍ଧ କବାଟ, ଭିତରୁ ବନ୍ଦ । ଡାକିଲି । ସେ କବାଟ ଖୋଲିଲେ । ଦୀର୍ଘକାୟ ମଣିଷ । ଆଖିରେ ପଚାରିଲା ପଚାରିଲା ଭାବ । ଚଉଡ଼ା ଓଠ । ମୁହଁରେ ଦାଢ଼ୀ । ଚଉଡ଼ା କାନ୍ଧର ମଣିଷ । ଇମୋଜିଙ୍ଗ୍ ପର୍ସନାଲିଟି । ସମ୍ଭ୍ରମରେ ନମସ୍କାର ଜଣାଇଲି । ସେ ଘର ଭିତରକୁ ଡାକିନେଲେ, ସତେ ଯେମିତି କେତେଯୁଗର ଚିହ୍ନା । ମୋତେ ଅପରିଚିତ ଭାବ ନାହିଁ । ତାପରେ କପେ ଚା' ଦୁଇଟି ନାଡ଼ି ଓ ସୁପୁରୁ ଭିତରେ ଚିହ୍ନା ଚିହ୍ନିର କଥା । ମୁଁ ହଜିଗଲି ତାଙ୍କ ଥାକ ଥାକ ବହି, ମାଗାଜିନ୍ ଓ ଆଲମାରି ଭର୍ତ୍ତି ବିଭିନ୍ନ ହସ୍ତଶିଳ୍ପର ସଂଗୃହୀତ ବସ୍ତୁ ଭିତରେ । କେମିତି ଯେ କଥା ଭିତରେ ସେ

ଆପଣେଇ ନେଲେ ମତେ ଜାଣି ପାରିଲି ନାହିଁ । ଖାଇକରି ଯିବା ପାଇଁ ବଳେଇଲେ । ମୋର ବେଳ ନଥିଲା, ଆଉ କେବେ କହି ବିଦାୟନେଲି । ଅନୁଭବ କଲି ନିଜ ସାମର୍ଥ୍ୟରୁ ଅଧିକ ଦାନଦେବାର ବଦାନ୍ୟତା ତାଙ୍କ ଚରିତ୍ରର ଗୋଟିଏ ବଡ଼ଗୁଣ କୃଷ୍ଣବର୍ଣ୍ଣ ତେଜୋଦୀପ୍ତ ପ୍ରାଜ୍ଞ ମଣିଷ, ବପୁଶାଳୀ ଦେହର ମଣିଷ କେତେ ସଖ୍ୟମୟ ଥିଲେ, ଯିଏ ତାଙ୍କ ସଂସ୍ପର୍ଶରେ ଆସିଛି, ସିଏ ଜାଣିଛି । କେମିତି ଗୋଟିଏ ଅନ୍ତଃପ୍ରେରଣା ତାଙ୍କୁ ଅଧିକ ପାଖରୁ ଜାଣିବା ପାଇଁ ଆସିଲା ।

ଶୁଣିଥିଲି ସେ ଭଲ କହିପାରନ୍ତି ଯେ କୌଣସି ବିଷୟରେ, ତାହା ପ୍ରତ୍ୟକ୍ଷ କଲି ୧୯୯୩ ମସିହା ଅଗଷ୍ଟ ମାସରେ । ମୋର କୋରାପୁଟ ସ୍ୱାଧୀନତା ସଂଗ୍ରାମକୁ ନେଇ ଜଣେ ସ୍ୱାଧୀନତା ସଂଗ୍ରାମୀର କାହାଣୀ-ରବିସିଂ ମାଝୀ ବହିର ଉନ୍ମୋଚନ ଉତ୍ସବ ଦିନ । ନିମନ୍ତ୍ରଣ ରକ୍ଷା କରି ସେ ଆସିଲେ ମୁଖ୍ୟ ବକ୍ତା ହୋଇ । ବହିର ବିଷୟକୁ ନେଇ କହିଲେ ଘଣ୍ଟେ ପନ୍ଦର ମିନିଟ୍ । କଥାରେ ଗଞ୍ଜାମୀ ଭାଷାର ଛିଟା, ମଝିରେ ମଝିରେ ହ୍ୟୁମର , ଅବାରିତ ଭାଷଣର ଧାରା, ତାହା ମୋ ପାଇଁଥିଲା ତାଙ୍କ ଅନନ୍ୟ ବ୍ୟକ୍ତିତ୍ୱର ପରିଚୟ ।

ତାଙ୍କ ବାରମ୍ବାର ପ୍ରେରଣା ମୋ ସାହିତ୍ୟିକ ଜୀବନକୁ ଯେ ଅଧିକ ପ୍ରଶସ୍ତ କରି ପାରିଥିଲା । ତାଙ୍କ ବିନା ପ୍ରେରଣାରେ ମୋ ଦ୍ୱାରା କୋରାପୁଟ ଜିଲ୍ଲା ସ୍ୱାଧୀନତା ସଂଗ୍ରାମକୁ ନେଇ ବହୁଲେଖା ପ୍ରକାଶ ହୋଇ ପାରିନଥାନ୍ତା । ଆଗକୁ ଚାଲିବାର ଦୀକ୍ଷାଦେବା ପ୍ରେରଣା ପୁରୁଷ ଭାବେ ତାଙ୍କ ନିକଟରେ ମୁଁ ଋଣୀ ।

ତାଙ୍କ ସାମାଜିକତା ବେଶି ମନକୁ ଛୁଏଁ । କେତେବେଳେ କେମିତି ସେ ମୋ ଉମରକୋଟ୍ ସରକାରୀ କ୍ୱାଟରକୁ ଆସନ୍ତି । ଏଣୁ ତେଣୁ କଥା ପଡ଼େ ଫୁଲ, ଧାନୁଆ ମରିଚ, ବଡ଼ିଠାରୁ ଓଡ଼ିଆ ଘରର ଶାକର, ମହୁର, ବେସର କଥା, କାକରା, ଆରିଷା ମଣ୍ଡାର କଥା, ଏବଂ ଲୋକଙ୍କ ଖାଦ୍ୟ ଅଭ୍ୟାସର କଥା ।

ଓଡ଼ିଆ, ଓଡ଼ିଆମୀ, ଓଡ଼ିଆତ୍ୱ, ଓଡ଼ିଆ ଭାଷା, ଚଳଣି, ଚାହାଣି, ଚମକକୁ ନେଇ ତାଙ୍କର ଅନୁଭବ ସବୁକୁ ସେ ଯେତେବେଳେ ବଖାଣି ବସନ୍ତି । ତାଙ୍କ ବିଭିନ୍ନ ଲେଖାରେ ଭାଷାର ପ୍ରୟୋଗ ଯେତିକି ରମ୍ୟ, ତୀର୍ଯ୍ୟକ, ପ୍ରଭାବଶାଳୀ, ସେତିକି ଭାବନିଷ୍ଠ ମନେହୁଏ ଏହା ମୁଁ ଅନୁଭବ କଲି ବଂଶଧାରା ସାହିତ୍ୟ ପତ୍ରିକାର ସଂପାଦନାରୁ, ସୁରେନ୍ଦ୍ର ବିଚାର ମଞ୍ଜୁଷାରୁ ।

ଦୀର୍ଘ ୧୨ ବର୍ଷର ବ୍ୟକ୍ତିଗତ ସମ୍ପର୍କ ଭିତରେ ସେ ଓ ମୁଁ । ବେଳେ ବେଳେ ଏ ସମ୍ପର୍କ ପାରିବାରିକଠୁ ବି ବଳି । ତାଙ୍କ ପତ୍ନୀ, ଝିଅ, ପୁଅଙ୍କର ସ୍ନେହ, ଆଦର, ଶ୍ରଦ୍ଧା ମୋ ପ୍ରତି ଅମାପ, ନିବିଡ଼ । ଏହା ଏମିତି ଏକ ମାନବୀୟ ସମ୍ପର୍କ ଯାହା ଯେତିକି ସୁଖଦ, ସେତିକି ପ୍ରୀତିପ୍ରଦ । ଏହା ତାଙ୍କ ପ୍ରତି ମୋର ଏକ ଅନ୍ୱେଷାର ସମ୍ପର୍କ ।

ସେ ସତେଯେମିତି ଏବେବି କହୁଛନ୍ତି, 'ତୁମେ ମୋତେ କାନ ଦିଅ, ମୁଁ ତୁମକୁ ଶୁଣିବା ଲାଗି ସ୍ୱର ଦେବି ।' ସେ ମୁଁ ଥିଲାଯାଏ ମୋ ଭିତରେ ଥିବେ ଅମ୍ଳାନ ହୋଇ ।

ଉମରକୋଟ, ଜିଲ୍ଲା: ନବରଙ୍ଗପୁର-୭୬୪୦୭୩

# ମୁଁ ତୁମ ବହି କିଣୁଛି

ଚିରଶ୍ରୀ ଇନ୍ଦ୍ର ସିଂ

ମୁଁ ଅଢ଼ଙ୍ଗପୁରରୁ ଆସି ବାଣୀବିହାରରେ ଓହ୍ଲେଇଲି । କଲେଜର ମାଗାଜିନ୍ ସଂକ୍ରାନ୍ତୀୟ କିଛି କାମ ସାରି ଫେରି ଆସୁ ଆସୁ ମନେପଡ଼ିଲା ଅଳ୍ପ କେତେଦିନ ତଳେ ଓଡ଼ିଶା ଲେଖିକା ସଂସଦରେ ଭେଟିଥିବା ଶିବରାମ ସାର୍ କହିଥିଲେ କେତୋଟି ବହି ଦେବାପାଇଁ । ଦିବଂଗତା ଗାଳ୍ପିକ ବସନ୍ତ କୁମାରୀ ଦେବୀଙ୍କ ଗଳ୍ପ ବହିର କଥା ବିଶେଷ କରି କହୁଥିଲେ ସାର୍ । ମୁଁ ଚଳନ୍ତା ବସରୁ ଓହ୍ଲେଇପଡ଼ିଲି ଓ ପେଟ୍ରୋଲ ଟାଙ୍କି ପାଖ ବୁଥ୍‌ରୁ ଫୋନ୍ କଲି ସାରଙ୍କ ଘରକୁ । ଏବେ ଗଲେ ଭେଟି ପାରିବି କି ପଚାରିଲାରୁ ସାର୍ ଟାଇଁ ଟାଇଁ ହସିଲେ ସେ ପାଖରୁ । "ଚାଲିଆସ ଗୌରୀନଗର, ନଖାଇ ଆସିବ, ଏଠି ତୁମପାଇଁ ଖାଇବାକୁ ଅଛି ।"

ସାର୍ ଆସିଥିଲେ ବାଟକୁ ତାଙ୍କ ସାଇକେଲରେ । ତେବେ ତା' ପୂର୍ବରୁ ଅଟୋରୁ ଓହ୍ଲେଇପଡ଼ି ମୁଁ ଅବାଟରେ ଅବାଟରେ ଗୁଡ଼ାଏ ଘୂରି ସାରିଥିଲି ।

ସାର୍‌ଙ୍କ ବାବଦରେ କିଛି ବୋଇଲେ କିଛି ଜାଣି ନଥାଏ ମୁଁ ଏବେ ବି ଯେ ବହୁତ ବେଶି କିଛି ଜାଣିଛି ତା ନୁହେଁ । ଯେଉଁ ନିୟତି ଏସବୁ ପାଇଁ ସୁଯୋଗ ଦେଇନାହିଁ, ହୁଏତ ସେଇ ନିୟତି ସେଦିନ ଭୋକ, ଶୋଷ ଓ କ୍ଳାନ୍ତିରେ ଧଇଁସଇଁ ହୋଇ ପୁରୁଣା ଭୁବନେଶ୍ୱରର ଗଳି ଉପଗଳି ଖୋଜି ଖୋଜି ଶେଷରେ ସାରଙ୍କୁ ଭେଟିଥିବା ମୋର ସ୍ଥିତିର ସମୁଦାୟ ସାରାଂଶକୁ ନେଇ ପହଞ୍ଚେଇ ଦେଇଥିଲା ସାରଙ୍କ ପାଖରେ ଏଇଥିପାଇଁ ଯେ ଭଲପଣ ଉପରେ ଯେତିକି ଆସ୍ଥା ମୋର, ତା'ର ମଞ୍ଜି ଆହୁରି ପାକଳ ହେଉ ।

ସାର ବହିପତ୍ର ଖୋଲି ଗପ ଆରମ୍ଭ କରିଦେଲେ । ଘଣ୍ଟାରେ ଚାରିଟା ବାଜିଲାରୁ ମୁଁ ଫେରିବାକୁ ବାହାରିଲି ତ ସାର ସାନପିଲାଟେ ପରି ଅଳି କରି କରି ମତେ ଅଟକେଇ ରଖିଲେ । ଯେତେ କହିଲି, ସାର୍ ଘରେ ମୋର ସାନ ସାନ ପୁଅଝିଅ । ସେମାନଙ୍କର ବାପା ଓଡ଼ିଶା ବାହାରକୁ ଯାଇଛନ୍ତି । ବୁଢ଼ୀମାଆଙ୍କର ଦେହ ଭଲ ନାହିଁ, ମୁଁ ଫେରିଯିବି । ସାର ନଛୋଡ଼ବନ୍ଧା । ଶେଷ ପର୍ଯ୍ୟନ୍ତ ସାର ଫୋନ କରେଇ କରେଇ ମତେ, ମୋର ସାଢ଼େ ଚାରି ବର୍ଷର ଝିଅଠାରୁ କଥା ଆଦାୟ କରିନେଲେ ଯେ, ମାଆ ଆଜି ନ ଫେରିଲେ ଚଳିବ । ବାସ, ଏଥର ରାଜ୍ୟ ନିଷ୍କଣ୍ଟକ । ସାର୍, ମାଉସୀ, ମୁଁ ଏବଂ ବାଙ୍ଗଲୋରରୁ ଫେରି ଚା କପେ ପିଇ ସାଙ଼୍ଗେ ସାଙ୍ଗେ ଆସରରେ ମିଶିଯାଇଥିବା ସାରଙ୍କ ସାନପୁଅ ଗପି ଚାଲିଲୁ ଯେ ଚାଲିଲୁ । ଗାଁ ଗଣ୍ଡା, ପିଲାଦିନ, କଲେଜଜୀବନ, ସାରଙ୍କ ଚାକିରୀ କାଳର ସାହିତ୍ୟିକ ପାଣିପାଗ, ବସନ୍ତକୁମାରୀଙ୍କ ଗପ, ଡାକ୍ତର ଗୀତା ତ୍ରିପାଠୀଙ୍କର ଗପ, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସଙ୍କର ବ୍ୟକ୍ତିତ୍ୱ--- ସାରା ଦୁନିଆଁର ଗପ ।

ରାତି ବାରଟା ବେଳକୁ ଖିଆପିଆ ପରେ ପ୍ରିୟମ୍ବଦା ମତେ ଟାଣିଲେ ଚାଲ ଆମ ଘରକୁ । ପ୍ରିୟମ୍ବଦାଙ୍କ ସହିତ ମୁଁ ତାଙ୍କ ଘରକୁ ଚାଲିଗଲି, ସକାଳର ଚା କପ ସହିତ ପୁଣି ଭେଟ ହେଇଗଲା ସାରଙ୍କ ସହିତ । ସେ ଜାଣିଥିଲେ ମୁଁ ବଡ଼ି ସକାଳୁ ଫେରିଯିବି । କାଳେ ତାଙ୍କ ଘରକୁ ନ ଯାଇ ସିଧା ମୁଁ ସେଇଠୁ ଫେରିଆସିବି । ସାର ଉଠି ଆସିଥିଲେ ପାହାନ୍ତାରୁ ସିଧା ।

ମୁଁ ଭାରି ଛୋଟ ହୋଇଗଲି ସେଦିନ । ସାରଙ୍କର ହସ ହସ ମୁହଁ ଝଟକୁ ଥିଲା ସଜ ପବନରେ ।

ଦୁଇହଜାର ଚାରି ପୁସ୍ତକ ମେଳାରେ ମୁଁ ଷ୍ଟଲରେ ପଶିବା ବେଳକୁ ସେ କିଣୁଥିଲେ ମୋର ଉପନ୍ୟାସ ଅପରିଚିତ । ହୋ ହୋ ହସରେ ଷ୍ଟଲ ଥରେଇ ଦେଇ କହିଥିଲେ ଦେଖ ମୁଁ ତୁମ ବହି କିଣୁଛି । ମୁଁ ସବୁବେଳେ ବହି କିଣିକରି ପଢ଼େ । ମୋ ଘରକୁ ଆସ । ଦେଖେଇ ଦେବି କେତେ ବହି କିଣିଛି । ଆଉ ହଁ, ଉପନ୍ୟାସ ଲେଖ ତୁମେ । ସାର୍ ମୋ ମୁଣ୍ଡ ଉପରେ ତାଙ୍କର ସ୍ନେହମୟ ହାତ ଥାପି ମତେ ଗେହ୍ଲା କରିଥିଲେ । ସେତେବେଳ ପର୍ଯ୍ୟନ୍ତ ମୁଁ ତାଙ୍କର ନାମ ବି ଜାଣି ନ ଥାଏ । କିଛିଦିନ ପରେ ପୁଣି ଭେଟ ହେଲେ ସାର, ଲେଖିକା ସମ୍ମିଳନୀର ଗୋଟିଏ ସଭାରେ । ସାରଙ୍କୁ ଦେଖୁ ଦେଖୁ ଚିହ୍ନିଲି, କିନ୍ତୁ ନାମଟି ତଥାପି ଜାଣିନଥାଏ । ସାର ତାଙ୍କର ଝୁଲା ମୁଣିରୁ କାଢ଼ି ମତେ ଦେଖେଇଥିଲେ ଫକୀରମୋହନ ବିଚାର ମଞ୍ଜୁଷା । ଶୁଣେଇଲେ ତାଙ୍କର ଯୋଜନା କେତେସବୁ । ମୁଁ ଚମତ୍କୃତ ହେଲି, ଅଭିଭୂତ ହେଇଗଲି । ନିଶ୍ଚିତ କଲି ସାରଙ୍କ ନିମନ୍ତ୍ରଣ ରକ୍ଷା କରି ତାଙ୍କ ଘରକୁ ଯିବି ନିଶ୍ଚୟ ତା'ପରର କଥା ସବୁ ପ୍ରଥମରୁ କହିଛି ।

କେତୋଟି ଘଣ୍ଟାରେ ସାର ମତେ କେତେ କଣ ଦେଇଗଲେ । ଖାଲି ସେ ଦେଲେ ଆଉ ମୁଁ ନେଲି କଥା ସେତିକି ନୁହେଁ ସାର ନେଲେ ବି ମୋ ଠାରୁ ତାଙ୍କର ପ୍ରାପ୍ୟ । ଭଲପାଇବାର ଯେଉଁ ଅରାଏ ଜାଗା ନିଚିପର ହେଇ ରହିଛି ମୋ ଭିତରେ ଏବେ ବି ଜୀବନର କେତେ କେତେ ଘନଘଟା ସତ୍ତ୍ୱେ, ସାରଙ୍କୁ ନେଇ ବଡ଼ ସମ୍ମାନରେ ଆସନ ବିଛେଇ ସେଇଠି ବସେଇ ଦେଇଛି ମୁଁ ।

ମୁଁ ଜାଣିଛି ଯେ ସାର ଏଇଠି କୋଉଠି ଅଛନ୍ତି । କେତେ କେତେ ବହିର ଧାଡ଼ି ତଳେ ତଳେ ପେନ୍‌ସିଲ୍ ଗାର ଟାଣି ରଖା ଯାଇଛି । ବହିପତ୍ର କିଣା ସରିଛି ଅଥଚ ପଢ଼ା ସରିନାହିଁ ।

କିଛି ମଣିଷ ଥାଆନ୍ତି ଯେଉଁମାନେ ଜମା ଏକୁଟିଆ ରହିପାରନ୍ତିନି ମଣିଷର ମେଳ ଛାଡ଼ି । ହଁ, ସ୍ୱର୍ଗସୁଖ ଦେଲେ ବି ନୁହେଁ ସାର୍ ଆମର ସେମିତିକା ମଣିଷ । ଗପୁଡ଼ି ଲୋକ, କେଉଁଠି ଗପ ଜମେଇ ଦେଇଥିବେ । କିନ୍ତୁ ପୁଣି ଦିନେ ସାର୍ ଲେଉଟି ଆସିବେ, ନିଶ୍ଚୟ ଲେଉଟି ଆସିବେ ।

ଅଁଡ଼ଶପୁର,କଟକ

# ଶ୍ରଦ୍ଧା ଓ ସଂସ୍କୃତିର ମଣିଷ : ଶିବରାମ୍ ସାହୁ

ରାଜକିଶୋର ଦାସ

ଆମ ଗାଁ ପାଖରେ ମାନେ ଘୁମୁସରରେ ହିଁ ତାଙ୍କ ମୌଳିକ ଘର ବା ଜନ୍ମସ୍ଥାନ । ଆସିକାରୁ ଭଂଜନଗର ଯାଇଥିବା କଳିଙ୍ଗା ରୋଡ଼ରେ ଗଲେ ଆଗ ତାଙ୍କ ଗାଁ ଗୁଣ୍ଡପଡ଼ା ଏବଂ ସେଇଠୁ ଆଉ ଆଠ କିଲୋମିଟରରେ ଆମ ଗାଁ କେନ୍ଦୁପଦର । ଆସିକା ଆଉ ଆମ ଗାଁର ମଝାମଝିରେ ଗୁଣ୍ଡପଡ଼ା । ସାହୁ ସେତେବେଳେ ଓଡ଼ିଆ ସାହିତ୍ୟ ଏକାଡେମୀର ସଭ୍ୟ । ଏକାଡେମୀ ପାରଳାଖେମୁଣ୍ଡିରେ, ପଣ୍ଡିତ ଗୋପୀନାଥ ନନ୍ଦ ଓ ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଜୟନ୍ତୀ ପାଳନ କରିବା ପଛରେ ମଧ୍ୟ ଶିବରାମ ସାହୁଙ୍କ ଦାବି ଥିଲା ।

ପ୍ରଥମ ଥର ଡେଲି ସାହିତ୍ଯ ତାଙ୍କ ବସାଘରେ ପହଞ୍ଚିଲା ବେଳକୁ ରଡ଼ରଡ଼ ଅଂଧାର । ସାହୁଙ୍କ ସହ ପ୍ରଥମ ସାକ୍ଷାତ ହେଲା । ଆମେ ଗଂଜାମରୁ ତାଙ୍କ ଗାଁ ପାଖରୁ ଆସିଛୁ ଜାଣି ସେ ବୋଧେ ମନେ ମନେ ଖୁସି ହେଇଗଲେ । ଆମକୁ ଭାରି ଆଦର ସ୍ନେହ କଲେ । କଥା କଥାରେ ଘୁମୁସରର ଲୋକ କଥିତ ଶବ୍ଦର ପ୍ରଚୁର ବ୍ୟବହାର । ମାଟିରୁ ଉଚ୍ଛୁରି ପଡ଼ିଲା ଭଳି ଲାଗୁଥିଲେ ଯେମିତି ।

ସେଇଦିନମାନଙ୍କରେ ମୋ ମୁଣ୍ଡରେ ଏକ ଅଦ୍‌ଭୁତ ଚିନ୍ତା ସୃଷ୍ଟି ହୋଇଥିଲା । ହଜାରେ ଓଡ଼ିଆ କବିଙ୍କ ପାଇଁ ପ୍ରସ୍ତୁତିରେ ଥିଲି । ମୁଁ ସାରା ଓଡ଼ିଶା ବୁଲି ବୁଲି କବିତା ସଂଗ୍ରହ କରିବାରେ ଲାଗିଥିଲି । ଅବଶ୍ୟ ଏଥିରେ ମୋତେ ପାରଳାଖେମୁଣ୍ଡିର ତଥା ସାହିତ୍ୟ ଶ୍ୱେତପଦ୍ମାର ସଭ୍ୟସଭ୍ୟା, ମନୋଜ, ଟୁନା , ପଦ୍ମିନୀ ସାହୁ, ବଳରାମ ନାଗା, କୋରାପୁଟର କବି ଜଳଧର ସ୍ୱାଇଁ, କବି ରବି ଶତପଥି, ପ୍ରଭୃତି ଖୁବ୍ ଆନ୍ତରିକ ଭାବେ ସହଯୋଗ କରୁଥିଲେ । ଏଣୁ ଯେତେ ସବୁ ପୁରୁଣା ପତ୍ର ପତ୍ରିକାରୁ ଓଡ଼ିଆ କବିମାନଙ୍କୁ ଖୋଜା ଚାଲିଲା । ଭୁବନେଶ୍ୱର କିମ୍ବା ବ୍ରହ୍ମପୁର ଫୁଟ୍‌ପାଥ୍‌ରୁ 'ଏକା' ନାମରେ ଏକ ପତ୍ରିକା ପାଇଥିଲି । ସେଥିରୁ ଶିବରାମ ସାହୁଙ୍କ କବିତାଟିଏ ପଢ଼ିବାକୁ ମିଳିଥିଲା । କବିତାଟିର ଭାବ, ଆଙ୍ଗିକ ଉଚ୍ଚକୋଟିର ହେଇଥିଲା । ତାକୁ ବାଦ୍ ଦେଲେ, କବିତାରେ ବ୍ୟବହାର ଦେଇଥିବା ଶବ୍ଦ ଯାହାକି ଗଂଜାମର କଥିତ ଶବ୍ଦରେ ଭରପୁର । ସେଇଠୁ ସାହୁଙ୍କ ସହ ଯୋଗାଯୋଗ ଆରମ୍ଭ ହୋଇଥିଲା ।

ସେଇ ଡେଲି ସାହିତର ବସାଘର ଉଚ୍ଚ ପାଚେରି ଘେରା ଥିଲା । ପାଚେରି ଭିତରେ ଗୋଟେ ଦୁଇଟି ଗଛ, ବୋଧେ ଡାଳିମ୍ବ ଓ ବରକୋଳି । ଘର ଉପରେ କୁମ୍ଭାର ତିଆରି ନଳାଝିକର ଓ ତଳେ ପଟାଭାଡ଼ି, ଖୁବ୍‌ଥଣ୍ଡା ଲାଗୁଥିଲା ଘରଟି । ଏମିତି ଘର ବୋଧେ ସାହୁ ତାଙ୍କ ରୁଚି ଅନୁଯାୟୀ ବାଛିଥିଲେ । ନହେଲେ ନବରଙ୍ଗପୁରରେ ଆଧୁନିକ ଢାଞ୍ଚାର ଘର ଅଭାବ ନଥିଲା । ସାହୁଙ୍କ ଘରେ ଚାରିଆଡ଼େ କେବଳ ବହି ଥାକ । ବହୁ ଅମୂଲ୍ୟ ଗ୍ରନ୍ଥ ସବୁ ସଂଗ୍ରହ କରି ରଖିଥିଲେ । ତା ସହ ବିଭିନ୍ନ ହସ୍ତଶିଳ୍ପ ବା ଆଦିବାସୀମାନଙ୍କ ବ୍ୟବହାର୍ଯ୍ୟ ବସ୍ତୁ ତାଙ୍କ ସଂଗ୍ରହରୁ ବାଦ ଯାଇ ନ ଥିଲା । ଓଡ଼ିଆ ସାରସ୍ୱତ ସଂଭାରକୁ ସାଉଁଟି ରଖିବା ଓ ବୃଦ୍ଧି କରିବାରେ ଜଣେ ଯୋଗୀ ପରି ଲାଗୁଥିଲେ ଶିବରାମ ସାହୁ ।

ସେ ହିଁ ମୋତେ ଗଂଜାମର ବହୁ ପୁରୁଣା କବି ସାହିତ୍ୟିକମାନଙ୍କ ସଂପର୍କରେ କହିଥିଲେ । କହିଥିଲେ ଆସିକାର ସୀତାଦେବୀ ଖାଡ଼ଙ୍ଗାଙ୍କ ସଂପର୍କରେ । କମ୍ୟୁନିଷ୍ଟନେତା

ହରିହର ଦାଶଙ୍କ ସଂପର୍କରେ । ଏମାନେ ବି କବିତା ଲେଖୁଥିଲେ ଏବଂ ଏମାନଙ୍କୁ ଛାଡ଼ି ଗଂଜାମ ସାହିତ୍ୟର ଇତିହାସ ଲେଖା ନଯାଇପାରେ । କିନ୍ତୁ, ଦୁଃଖର କଥା ମୁଁ ଆଜି ଯାଏ ସେମାନଙ୍କ ସାରସ୍ୱତ କୃତୀର ଅନୁସଂଧାନ କରିପାରିନି ।

ପରଦିନ ମଧ୍ୟାହ୍ନରେ ସାର୍‌ଙ୍କ ଘରେ ପୁରା ଓଡ଼ିଆ ଖାଦ୍ୟ ଓ ସଂପୂର୍ଣ୍ଣ ଶାକାହାର ପରେ ଖରାବେଳ ସାରା ଗପିଲୁ । କବି ସୀତାକାନ୍ତ ମହାପାତ୍ରଙ୍କ କିଛି କବିତାକୁ ସାର୍ ଦାଣ୍ଡି ବୃତ୍ତରେ ଆବୃତ୍ତି କରି ଆମକୁ ଶୁଣାଇଥିଲେ । ସଂଧ୍ୟାବେଳେ ବୁଲିବା ପାଇଁ ବାହାରିଲୁ । ଆମ ଆଗ ଆଗରେ ସାର୍ ଗପିଗପି ଚାଲିଥାନ୍ତି, ବଜାର ପାର ହେଇ ଶଙ୍ଖାରି ସାହି ଭିତରେ ପଶିଲୁ । ସାର୍ ସେଇଠି କହିଲେ, ଏଠି ଲାଖ ତିଆରି ହସ୍ତଶିଳ୍ପ ହୁଏ, ଏକଥା ଜାଣିଛ ? ପାରଳାର ଶିଙ୍ଗକାମ ପରି ଏଠି ଲାଖରେ ସୁନ୍ଦର ସୁନ୍ଦର କାମହୁଏ । ଜଣକ ଘରକୁ ଗଲୁ । ସେମାନେ ଆମକୁ ବହୁ ଆଦର, ସମ୍ମାନ ସହ ପଟି ପକାଇ ବସାଇଲେ । ବିଭିନ୍ନ କାମ ସବୁ ଦେଖାଇଲେ । ଲାଖର ରଙ୍ଗିନ୍ ହାତୀ, ଘୋଡ଼ା ଇତ୍ୟାଦି କଣ୍ଢେଇ ଏବଂ ବାଉଁଶ ପାତିଆର ସାନବଡ଼ ଡବା ଉପରେ ସୁନ୍ଦର କାମ ହେଇଥିବା ଦେଖିଲୁ । ସେଇ ଘରର ଜଣେ ଝିଅ ସହ ସାର୍ ପରିଚୟ କରିଦେଇଥିଲେ । ତାଙ୍କ ନାଁ ପ୍ରଭାତୀ ପାତ୍ର । ସାର୍‌ଙ୍କ ଉଦ୍ୟମରେ ସେ ଭୁବନେଶ୍ୱର ଯାଇ ଏଇ କାମ ପାଇଁ ଟ୍ରେନିଂ ନେଇ ଆସିଥାନ୍ତି । ସେ ତାଙ୍କର ଛାତ୍ରୀ । କଲେଜ ପାଠ ସାଙ୍ଗକୁ କୌଳିକ ବୃତ୍ତିରେ ଜଡ଼ିତ ସେ ଝିଅ, ସାଙ୍ଗ ସାଥି ଓ ଭାଇ ଭଉଣୀମାନଙ୍କୁ ଏଇ ବୃତ୍ତିର ଶିକ୍ଷା ଦେଇଥାନ୍ତି । ଓଡ଼ିଶା ଓ ଓଡ଼ିଶା ବାହାର ବିଭିନ୍ନ ପ୍ରଦର୍ଶନୀରେ ସେମାନେ ତାଙ୍କ ଜିନିଷ ପ୍ରଦର୍ଶିତ କରିବା ଓ ବିକ୍ରି କରିବା କଥା ଜାଣିଲୁ । ଝିଅଜଣଙ୍କ ଆମ ଆଗରେ ସେ କାମ କରିବାର କିଛି ନମୁନା ଆମକୁ ଦେଖାଇଲେ । ସେଥିରୁ ମୋ ପୁଅ ପାଇଁ ଛୋଟଛୋଟ ଦୁଇଟି ହାତୀ ଆମେ କିଣିଥିଲୁ । ପ୍ରାୟ ଦଶ ବାରବର୍ଷ ତଳୁ ସଂଗୃହୀତ ସେଇ ଲାଖର ହାତୀ ଦୁଇଟି ଆଜି ମଧ ଆମ ଘରେ ସାଇତା ହେଇ ରହିଛି ।

ସେଦିନ କୁମାର ପୂର୍ଣ୍ଣିମା ରାତି, ମୁଁ ରୀତିମତ ସଂଧ୍ୟାରେ ପାରଳା ନେରୋଗେଜ ରେଇଲୱେ ଷ୍ଟେସନରେ ସାଙ୍ଗସାଥୀମାନଙ୍କ ସହ ସମୟ କଟାଇ ଫେରୁଥାଏ । ଦେଖିଲି (ପାରଳା) ଚିତ୍ରକର ସାହିରେ ଗୋଟେ ଧଜାକାର ପାଖରେ ସାର୍ ଠିଆ ହେଇଛନ୍ତି । ନମସ୍କାର ହେଇ ଅନ୍ୟମାନଙ୍କୁ ପରିଚୟ କରାଇଦେଲି । ସେ ମୋତେ ପରିଚୟ କରାଇଦେଲେ ତାଙ୍କ ନିକଟରେ ଠିଆ ହେଇଥିବା ଚିତ୍ରଶିଳ୍ପୀ ଶ୍ରୀ ଦୀନନାଥ ପାଠୀଙ୍କୁ । ସେମାନେ ସେଦିନ ଆସିଥାନ୍ତି ପାରଳା ଚିତ୍ରକରମାନଙ୍କଠାରୁ କିଛି ପାରଂପରିକ ଚିତ୍ର କିଣି ନେବାପାଇଁ । ଗଂଜପା ତାସ, ହାଣ୍ଡିଚିତ୍ର, ପଟ୍ଟଚିତ୍ର ବହୁତ କିଣିଲେ, ମୁଁ ସେଦିନ ବହୁ ସମୟ ଯାଏ ସେଇଠି ଅଟକି ଯାଇଥିଲି ଓ ଏତେ ବର୍ଷ ପାରଳାରେ ରହି ମଧ ଦେଖି ପାରିନଥିବା ପାରଳାର ଚିତ୍ରକଳାକୁ ମନ ଭରି ଦେଖିଥିଲି ।

ସେ ମୋତେ ଘୁମୁସରିଆ କହନ୍ତି । କଥା କଥାରେ ଘୁମୁସରିଆ ଶବ୍ଦ ବ୍ୟବହାର କରନ୍ତି । ଦେଖାହେଲେ ବା ଫୋନ କଲେ ପାରଳାର 'ସାହିତ୍ୟ ଶ୍ୱେତପଦ୍ମ'ଠାରୁ ବ୍ରହ୍ମପୁର 'କଳିଙ୍ଗ ସାହିତ୍ୟ ସମାଜ' ଓ ଦକ୍ଷିଣ ଓଡ଼ିଶାର ବହୁ ସାରସ୍ୱତ ବ୍ୟକ୍ତିତ୍ୱଙ୍କ କଥା ପଚାରି ବୁଝନ୍ତି । ମୋ ପ୍ରତି ତାଙ୍କର ଏତାଦୃଶ ବ୍ୟବହାର ମୋତେ ପ୍ରେରଣା ଦେଇଛି ନିଜ ଜାତି, ଭାଷା, ଜନ୍ମମାଟିକୁ ଭୁଲି ନ'ଯିବା ଓ ସାହିତ୍ୟ, ସଂସ୍କୃତିର ପ୍ରତିଭ୍ତରକୁ ପରଖିବା ଓ ପ୍ରାଣଦେଇ ଭଲପାଇବା ପାଇଁ ।

ପାରଳାଖେମୁଣ୍ଡି

## ଶ୍ରଦ୍ଧା ଓ ସାଧନାର ଆମନ୍ତ୍ରଣ

ଅନନ୍ତ କୁମାର ଗିରି

ସେଦିନ ସଂଧ୍ୟାରେ ଶିବରାମ ବାବୁଙ୍କ ଘରେ ପହଞ୍ଚିଲି । ଶିବରାମବାବୁଙ୍କୁ ସାକ୍ଷାତ କଲାପରେ ଅନୁଭବ କଲି ଯେମିତି କେଉଁ ଯୁଗରୁ ଆମେ ପରସ୍ପରକୁ ଭେଟିଛୁ । ହୃଦୟର ମିଳନ । ରାତି ଅନେକ ହୋଇଯାଇଥାଏ : ପରଦିନ ସକାଳେ ଭାଗ୍ୟଧର ଭାଇ ଆମକୁ ଏକ କ୍ଷେତ୍ରକୁ ନେଇଯିବେ । ମୁଁ ପ୍ରସ୍ତାବ ଦେଲି ସନ୍ତୋଷ ଭାଇ ଓ ମାଧବୀ ଅପାଙ୍କ ଘରକୁ ଟିକିଏ ବୁଲିଗଲେ ହୁଅନ୍ତା ନାହିଁ ? ଅନେକ ଦିନ ହେଲା ଆମର ସାକ୍ଷାତ ହୋଇନାହିଁ । ଏତେ ରାତିରେ ବି ଶିବରାମ ବାବୁ ସାଙ୍ଗରେ ବାହାରିଲେ । ବାଟରେ ଆପଣାର ଜୀବନ ସଂଗ୍ରାମରୁ କେତେ କଥା କହିଲେ । ଛାତ୍ରବେଳେ ତାଙ୍କର ସଂଗ୍ରାମ ଓ ସାହିତ୍ୟ ଜୀବନର ଆୟୋଜନ । ସନ୍ତୋଷ ଭାଇଙ୍କ ଘରୁ ଫେରିବାବେଳକୁ ରାତି ଏଗାର । ଶୋଭନା, ରମାକାନ୍ତବାବୁ, ମାଉସୀ ଓ ଗୁଗୁଲୁ କେତେ ଆଦରରେ ଅପେକ୍ଷା କରିଥାନ୍ତି । ଆମେ ସାଙ୍ଗହୋଇ ଖାଇବସିଲୁ ।

ପଅରଦିନ ସଅଳ ସଅଳ ଉଠିପଡ଼ିଲୁ । ଶିବରାମ ବାବୁ ତାଙ୍କର ହୃଦୟର ଉଦ୍ୟାନଟିଏ ବୁଲାଇ ଦେଖାଇଲେ । ଆମେ ଶ୍ରୀ ଅରବିନ୍ଦ କ୍ଷେତ୍ର ତାଳିଯୋଡ଼ା ଅଭିମୁଖେ ବାହାରିଲୁ । ଭାଗ୍ୟଧର ଭାଇ ଗୋଟେ ଜାଗା ଦେଖିଥାନ୍ତି ଆମେ ଯାଉଥିଲୁ ଦେଖିବାକୁ ସେଠାରେ ବାଡ଼ିଟିଏ ପକାଇବାକୁ । ଭୂମିଟି ପାଖରେ ଏକ ଆଦିବାସୀ ଗାଁ । ଆମେ ଗାଁ ଭିତରକୁ ଗଲୁ । ଶିବରାମବାବୁ କେତେ ଆଦରରେ ସେଠାକାର ଭାଇଭଉଣୀମାନଙ୍କ ସହ କଥାହେଲେ । ଫେରିବା ବାଟରେ ଶିବରାମବାବୁ କହିଲେ, 'ଅନନ୍ତ ଭାଇ, ଆପଣ ଏବେ କେଉଁଠି ଏକ ଜାଗାରେ ଆସ୍ଥାନଟିଏ ସୃଷ୍ଟି କରନ୍ତୁ । ଆପଣ ଅନେକ ବୁଲିଲେଣି ।'

ଏହି ଆମର ସହଯାତ୍ରା ଓ ସଂଳାପ ଏହି ଆଜିଭଳି ଲାଗୁଚି । ମୁଁ ବିଶ୍ୱାସ କରିପାରିଲିନି ଯେତେବେଳେ ଡେନ୍‌ମାର୍କରେ ଥାଇ ଭାଗ୍ୟଧର ଭାଇଙ୍କ ପାଖରୁ ଇ-ମେଲ୍ ପାଇଲି । ଶିବରାମ ବାବୁଙ୍କର ମହାନ୍‌ଯାତ୍ରା ବିଷୟରେ । ଏବେ ଶିବରାମବାବୁ ହସ ହସ ମୁହଁରେ ଆମ ସଭିଙ୍କ ସହିତ ବାଟ ଚାଲିବା ଭଳି ଅନୁଭବ କରେ । ସେ ଶ୍ରଦ୍ଧା ଓ ସାଧନାର ଆମନ୍ତ୍ରଣ ଆମକୁ ଜଣାଉଛନ୍ତି । ଫକୀରମୋହନ ବିଚାର ମଂଜୁଷାରେ ଶିବରାମବାବୁ କେତେ ସ୍ୱଷ୍ଟ ଭାବେ ଆମକୁ କହୁଛନ୍ତି ଯେ ସେ ଜୀବନକୁ ଭଲପାଆନ୍ତି, ସାହିତ୍ୟକୁ ଭଲପାଆନ୍ତି ।

ଫକୀରମୋହନଙ୍କ ସାଧନା ଓ ସଂଗ୍ରାମ ତାଙ୍କୁ ସ୍ପର୍ଶ କରିଛି । ଏହି ମଂଜୁଷା ଏକ ନୂତନ ଗବେଷଣା ଓ ନୂତନ ସର୍ଜନଶୀଳତାର ପୁଷ୍ପଟିଏ । ଶିବରାମବାବୁ ଏମିତି ଆହୁରି ଅନେକ ମହାନ୍ ସ୍ରଷ୍ଟାଙ୍କ ବିଚାରକୁ ନେଇ ମଂଜୁଷା ପ୍ରସ୍ତୁତ କରିବାର ସାଧନାରେ ନିମଜ୍ଜିତ ଥିଲେ । କେତେକ ସ୍ରଷ୍ଟାଙ୍କ ବିଚାରକୁ ନେଇ ସେ ଅନେକ କାମ ମଧ କରିସାରିଥିଲେ । ଶିବରାବାବୁଙ୍କ ସହିତ ଆମେ ସମସ୍ତେ ଏହି ମଂଜୁଷା କାମଟିକୁ ଆଗକୁ ନେଇପାରିବା । ତାଙ୍କର ଜୀବନ ଶ୍ରଦ୍ଧା ଓ ସାହିତ୍ୟ ସାଧନାକୁ ଆମର ଜୀବନରେ ଫୁଟାଇପାରିବା ।

# ପାତ୍ର ସାର୍

ପ୍ରିୟଲତା ଜେନା

ସାର୍‌ଙ୍କ ସହିତ ସଂପର୍କ ମୋର ସ୍କୁଲରେ ପଢ଼ିଲାଦିନରୁ । ଜୟପୁରରେ ଘରକୁ ବାପାଙ୍କ ପାଖକୁ ଆସୁଥିଲେ । ମୁଁ ଛୋଟ ଥିଲି ତେଣୁ ତାଙ୍କ ସହିତ କଥାବାର୍ତ୍ତା କେବେ କରୁ ନଥିଲି । ୧୯୮୧ ମସିହାରେ ଗୁଣୁପୁର କଲେଜରେ ଯୋଗଦେବା ପୂର୍ବରୁ ସେଠିକା ମାର୍କେଟରେ ହଠାତ୍ ଦେଖା ହେଲା ଖଦଡ଼ ପଞ୍ଜାବୀ ପିନ୍ଧା ସାଇକେଲ୍‌ରେ ଯାଉଥିବା ଭଦ୍ରବ୍ୟକ୍ତିଙ୍କ ସହ । ମୁଁ ଦୋ' ଦୋ' ଚିହ୍ନା ହେଉଥାଏ । ସାର୍ ହିଁ ପ୍ରଥମେ ସାଇକେଲ୍‌ରୁ ଓହ୍ଲେଇ ମତେ ପଚାରିଲେ, କୁଆଡ଼େ ଆସିଛ ? ବାପା, ମା' ଭାଇଭଉଣୀ ସମସ୍ତଙ୍କ କଥା ପଚାରିଲେ । ଗୋଟିଏ ଅଜଣା ଯାଗାରେ ଏମିତି ଆତ୍ମୀୟତା ମେଳା କଥା ଶୁଣି ମୁଁ ସ୍ତବ୍ଧ ହୋଇଗଲି, ସେଇ ଦିନଠୁ ତାଙ୍କ ପରିସରର ଜଣେ ସଦସ୍ୟ ହୋଇଯାଇଥିଲି । ୧୯୮୧ରୁ ୧୯୮୬ ଯାଏ ଗୁଣୁପୁରରେ ତାଙ୍କ ରହଣି ସମୟରେ ମୋର ସମୟ ପ୍ରାୟ ତାଙ୍କ ଘରେହିଁ କଟୁଥିଲା ।

ଗୁଣୁପୁରରେ ଥିଲାବେଳେ ଦୁଇଟି ଘଟଣା ମୁଁ କେବେ ବି ଭୁଲିପାରିବି ନାହିଁ । ଥରେ ଗୁଣୁପୁର କଲେଜର ଜଣେ ଅଧ୍ୟାପିକା ତାଙ୍କ ଝିଅର ଦେହ ଖରାପ କଥା କହୁଥିଲେ । ତା'କୁ ଭୀଷଣ ଜର ଓ ସେ ଗୋଡ଼ ସିଧା କରି ଠିଆ ହୋଇପାରୁନି, ଖୁବ୍ କାନ୍ଦୁଛି ବୋଲି ଭାରି ବ୍ୟସ୍ତ ହେଉଥାଆନ୍ତି । ସେଠି ପାତ୍ରସାର୍ ଥାଆନ୍ତି । ସେ ସାଙ୍ଗେ ସାଙ୍ଗେ କହି ଉଠିଲେ ପୋଲିଓ ହୋଇପାରେ । ଆପଣ ତାକୁ ତୁରନ୍ତ ବ୍ରହ୍ମପୁର କିଂବା ପାରଳାଖେମୁଣ୍ଡିରେ ଶିଶୁରୋଗ ବିଶେଷଜ୍ଞଙ୍କୁ ଦେଖାଇବାର ବ୍ୟବସ୍ଥା କରନ୍ତୁ । କିଂତୁ ପିଲାଟିକୁ ସେମାନେ ପୋଲିଓ ଡ୍ରପ୍‌ସ ଖୁଆଇଥିଲେ । ତେଣୁ ପୋଲିଓ କାହିଁକି ହେବ ବୋଲି ମ୍ୟାଡାମ୍ ଜଣକ ବିରକ୍ତ ହୋଇ ଉଠିଲେ । ତାଙ୍କ ଧାରଣା ଯେ ପୋଲିଓ ଟିକା ଦେବାପରେ କାହିଁକି ପୋଲିଓ ହେବ । ତେଣୁ ସେ ଦିଗରୁ ସେମାନେ ନିଶ୍ଚିନ୍ତ ଥିଲେ । କିଂତୁ ସାର୍ ନଛୋଡ଼ବନ୍ଧା । ସେମାନଙ୍କୁ ଜବରଦସ୍ତ ପାରଳାଖେମୁଣ୍ଡିକୁ ଡାକ୍ତର ଦେଖେଇବା ପାଇଁ ପଠେଇଲେ । ସେତେବେଳକୁ ଝିଅର ଗୋଟିଏ ଗୋଡ଼ର କିଛି ଅଂଶ ପୋଲିଓ ଦ୍ୱାରା ଆକ୍ରାନ୍ତ ହୋଇ ସାରିଥିଲା । ଠିକ୍ ସମୟରେ ଚିକିତ୍ସା କଲାପରେ ଝିଅଟିର ବିଶେଷ ଅସୁବିଧା ହେଲାନାହିଁ । ମୁଁ ଭାବି ପାରିଲି ନାହିଁ, ସତେ କ'ଣ ସାର୍‌ଙ୍କ କଣ୍ଠରେ ସରସ୍ୱତୀ ବସିଥିଲେ । ନହେଲେ, ଏମିତି ବାଧ୍ୟକରି ପିଲାର ଚିକିତ୍ସା କରାଇବା ସାଧାରଣରେ ହୁଏ ନାହିଁ ।

ଗୁଣୁପୁରରେ ମୁଁ ମୋ ଝିଅ ସହିତ ଏକୁଟିଆ ରହୁଥାଏ ସେତେବେଳେ ମୋ ସ୍ୱାମୀ ଆସ୍କା ସୂତାକଳରେ ଚାକିରୀ କରୁଥିଲେ । ସେଦିନ ମୋ ଝିଅ ଦେହ ଖରାପ ଥାଏ । ସେ ଭୀଷଣ କାନ୍ଦୁଥାଏ । ଆଦୌ ଥୟ ଧରୁ ନ ଥାଏ । ମୁଁ ସେତେବେଳେ ବଡ଼ ବ୍ୟସ୍ତ ହୋଇ ପଡ଼ିଲିଣି କ'ଣ କରିବି କିଛି ଭାବି ପାରୁ ନଥାଏ । ଝିଅର ସକାଳୁ ପରିସ୍ରା ବନ୍ଦ

ହୋଇଯାଇଥାଏ । ସଂଧ୍ୟା ହେଲାଣି ଭୀଷଣ କଷ୍ଟ ପାଉଥାଏ । ଏତିକି ବେଳେ ଦେବଦୂତ ଭଳି ସାର୍ ଆସି ପହଞ୍ଚିଲେ । ଝିଅର ଅବସ୍ଥା ଦେଖି କହିଲେ, ମୁଁ ହୋମିଓପ୍ୟାଥି ଔଷଧ ଆଣି ପଠେଇ ଦେଉଛି । ଭଲ ହୋଇଯିବ ବ୍ୟସ୍ତ ହୁଅନାହିଁ । ସାହିରେ ଥିବା ଅନ୍ୟମାନେ କହିଲେ ହସ୍ପିଟାଲ ନେଇଯିବା ସେଠି ଡାକ୍ତର ଯାହା କରିବେ । ହୋମିଓପ୍ୟାଥିରେ କେଉଁ ରୋଗ ଭଲ ହେଲାଣି ? ଆପଣ କାହିଁକି ଶୁଣୁଛନ୍ତି ସେକଥା । ଏମିତି ସମସ୍ତେ ମନ୍ତବ୍ୟ ଦେଉଥାନ୍ତି । ମୋର କିଂତୁ ଭରସା ଥିଲା ହୋମିଓପ୍ୟାଥିରେ ନିଶ୍ଚୟ ଭଲ ହୋଇଯିବ ବୋଲି । ଅଧଘଣ୍ଟାଏ ଭିତରେ ସାର୍ ଔଷଧ ପଠେଇଲେ । ୧୫ ମିନିଟ୍ ଅନ୍ତରରେ ୨ ଥର ଦେଲାପରେ ସ୍ୱାଭାବିକ ପରିସ୍ତ୍ରା ହେଲା ଓ ଝିଅର କାନ୍ଦ ବନ୍ଦ ହୋଇଥିଲା ।

ସାର୍‌ଙ୍କ ସହିତ ଶେଷ କଥା ହୋଇଥିଲା ନଅତାଲା ଡି. ପି.ଆଇ. ଅଫିସ ସାମ୍ନାରେ । କେତେ ଦୁଃଖ ସୁଖ ହେଲେ । ମତେ ବରା ଖୁଆଇଲେ । ରିଟାୟର୍ଡ ପରେ ବହୁତ ପ୍ଲାନ କରିଛନ୍ତି କରିବା ପାଇଁ ବୋଲି କହୁଥିଲେ । କ'ଣ ସବୁ ଆଗକୁ କରିବେ ତା'ର ଲମ୍ବା ଲିଷ୍ଟ ମତେ କହିଲେ । ରିଟାୟାର୍ଡ ହେଲେ କିନ୍ତୁ ତାଙ୍କର ଗୁଡ଼ାଏ ଏରିଅର୍ ବାକି ପଡ଼ିଛି । ଠିକ୍ ସମୟରେ ପ୍ରମୋଶନ୍ ହୋଇପାରିଲା ନାହିଁ । କାଗଜପତ୍ର ଠିକ୍ ହୋଇ ପାରିନି । ପେନ୍‌ସନ୍ ପାଇଁ ହଇରାଣ ହେବେ । ଏମିତି ଅନେକ କଥା କହୁଥିଲେ । ମୁଁ ତାଙ୍କୁ କହିଥିଲି ଆପଣ ଭୁବନେଶ୍ୱରରେ ରହୁଛନ୍ତି ଏଠି ଆସିକି ଏତିକି କାମ କରିପାରୁନାହାନ୍ତି ଅଥଚ କାହିଁ କେତେ ଦୂରରୁ ଆସି ଲୋକ ନିଜ କାମ ଏଠି କରେଇ ଯାଉଛନ୍ତି । । ପଇସା ନେଇ ତ ସମସ୍ତେ କାମ କରୁଛନ୍ତି ଏଠି ? ଆପଣ ବି ପଇସା ଦେଇ କାମ କରେଇ ନେଉନାହାନ୍ତି ? ସାର୍ ମତେ ସିଧା ଅନେଇଲେ ମୁଁ ଡରିଗଲି । ସାଲିସ୍ ବିହୀନ ଜୀବନ କାଟିଥିବା ଲୋକକୁ ପଇସା ଦେଇ ସାଲିସ୍ କରିବାକୁ କହିଲି ବୋଲି ନିଜକୁ ସଂକୋଚ ଲାଗିଲା ।

ସେଦିନ ସେଠୁ ବିଦାୟ ନେଲାବେଳେ କହିଥିଲି ଆର ଥରକୁ ଆସିଲେ ଘରକୁ ଯିବି । ସୋନପୁରରୁ କିଛି ଟେରୋକୋଟାର ଜିନିଷ ଆଣିବାକୁ ମତେ କହିଥିଲେ । ମାଟିର ହନୁମାନ ମୂର୍ତ୍ତି ଯେଉଁଟା କି ଏଠି ପିଲାମାନେ ଲଙ୍କାପୋଡ଼ି ପର୍ବ ବେଳେ ଖେଳନ୍ତି ସେ ବିଷୟରେ କହିଥିଲି । ବଡ଼ ଉତ୍ସାହର ସହିତ ସେଇ ମୂର୍ତ୍ତି ଗୋଟିଏ ବଡ଼ ପେଟିରେ ଆଣିବାକୁ କହିଥିଲେ । ମୁଁ ପଚାରିଲି ଏତେ ଗୁଡ଼ାଏ କ'ଣ କରିବେ ସେଥିରୁ କିଛି ନିଜେ ରଖିବେ ଆଉ କିଛି ଅନ୍ୟମାନଙ୍କୁ ଉପହାର ଦେବେ ବୋଲି ବୋଲି କହିଲେ, ସୋନପୁର ଇତିହାସ ସଂପର୍କିତ ଲେଖା ସଂଗ୍ରହ କରି ପଠେଇବାକୁ କହିଲେ, ପ୍ରତିଶ୍ରୁତି ଅନୁସାରେ ସୋନପୁରରୁ ପ୍ରକାଶିତ ଦୁଇଟି ବହି ତାଙ୍କ ପାଖକୁ ପଠେଇଥିଲି, କିନ୍ତୁ ସେ ବହି ତାଙ୍କର କାମରେ ଲାଗିନାକି ନା ଜାଣିନି ... । ଆଉ ମାଟିର ହନୁମାନ ମୂର୍ତ୍ତି ଆଣି ରଖିଛି । କୋଉ ଠିକଣାରେ ପଠେଇଲେ ସାର୍‌ଙ୍କ ପାଖରେ ପହଁଚିବ ଭାବୁଛି ।

ସୋନପୁର କଲେଜ
ସୋନପୁର

# ଶିବରାମ ପାତ୍ର : ଏକ ସିଂହାବଲୋକନ

ମନୁ ଦାଶ

ପ୍ରାୟ ପନ୍ଦର ବର୍ଷତଳେ ଶିବରାମ ପାତ୍ରଙ୍କ ସହ ଭେଟ ହେବାର ସୁଯୋଗ କରାଇଥିଲେ ସାହିତ୍ୟିକ ତଥା ବରିଷ୍ଠ ପୁଲିସ୍ ଅଧିକାରୀ ଶ୍ରୀ ଅନାଦି ସାହୁ । ସେତେବେଳେ ନବରଙ୍ଗପୁର ସହର ଉପାନ୍ତରେ ପ୍ରତିଷ୍ଠିତ ମଙ୍ଗଳମ୍ ଟିମ୍ବର କାରଖାନାରେ ମୁଁ ଚାକିରୀ କରୁଥାଏ ଓ ଶ୍ରୀ ସାହୁ ସରକାରୀ ଗସ୍ତରେ ଉକ୍ତ ଜିଲ୍ଲାକୁ ଆସିବା ସମୟରେ ମଙ୍ଗଳମ୍ ଟିମ୍ବର କାରଖାନାର ଅତିଥି ଶାଳାରେ ଆତିଥ୍ୟ ଗ୍ରହଣ କରିବା ଅବସରରେ ଦୁଇଜଣ ସାହିତ୍ୟପ୍ରେମୀଙ୍କୁ ଖୋଜୁଥିଲେ । ସେଇ ଦୁଇଜଣଙ୍କ ଭିତରେ ଥିଲେ ଶିବରାମ ପାତ୍ର ।

କ୍ରମଶଃ ପରିଚୟରୁ ଘନିଷ୍ଠତା ହେଲା ଖୁବ୍ କମ୍ ସମୟ ଭିତରେ । ନବରଙ୍ଗପୁରରେ ବିଶେଷ ସାହିତ୍ୟିକ ପାଣିପାଗ ନଥିବାରୁ ଆମ ଦୁହିଁଙ୍କ ଭିତରେ ସଂପର୍କ କେବଳ ନିବିଡ଼ ନଥିଲା ବରଂ ଏହା ଆମ ପାରିବାରିକ ଜୀବନ ସ୍ତରକୁ ମଧ୍ୟ ଓହ୍ଲାଇ ଆସିଥିଲା, ପ୍ରାୟ ସବୁଦିନ ଦେଖାହୁଏ । ସେଇ ମଣିଷର ମୁହଁର ଜହ୍ନିଫୁଲିଆ ହସ, ଅନ୍ୟର ହୃଦୟ ଜୟ କରିବାରେ ବେଶି ସମୟ ନିଏ ନାହିଁ ।

ତାଙ୍କ ସହ ଦେଖା ହେବାର ଅନେକ ଆଗରୁ ଅର୍ଥାତ୍ ୧୯୭୭/୭୮ ମସିହାରେ ହିଁ ବଂଶଧାରା ସାହିତ୍ୟ ସମାଜ ତରଫରୁ ପ୍ରକାଶିତ 'ବଂଶଧାରା' ପତ୍ରିକାର ସଂପାଦକ ଭାବେ ସେ ଦୃଷ୍ଟି ଆକର୍ଷଣ କରିଥିଲେ ସାହିତ୍ୟିକମାନଙ୍କର । ନିମାପଡ଼ା ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ, ମୋର ଶିକ୍ଷକ ତଥା କବି ଡଃ ବଂଶୀଧର ଷଡ଼ଙ୍ଗୀଙ୍କ ଠାରୁ ଆଣିଥିବା ବଂଶଧାରା ପତ୍ରିକା ପଢ଼ି ମୁଁ ପ୍ରଥମେ ଶିବରାମ ପାତ୍ରଙ୍କ ସଂପାଦନା ଶୈଳୀ ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲି ।

ମାତ୍ର ପରବର୍ତ୍ତୀ ସମୟରେ ତାଙ୍କ ସହ ମୋର ପରିଚୟ ହେବାବେଳକୁ ସେ ସୃଜନ କର୍ମରେ ଆଦୌ ସମୟ ଦେଉ ନଥିବା ମୁଁ ଲକ୍ଷ୍ୟ କରିଛି, ଅସମ୍ଭବ ସୃଜନ ଶକ୍ତି ଥାଇ ମଧ୍ୟ ସେ କାହିଁକି ଏହାର ବିନିଯୋଗ କରୁ ନଥିଲେ ବୋଲି ଅନେକ ଥର ତାଙ୍କୁ ପ୍ରଶ୍ନ କରିଛି । ଉତ୍ତରରେ ସେଇ ଅକପଟ ହସ ଟିକକ ଯାହା ପାଇଛି ।

ଅନେକ ସ୍ୱପ୍ନ ଦେଖୁଥିଲେ ସେ, ଯେତେବେଳେ ମୁଁ ଖବରକାଗଜମାନଙ୍କରେ ନିୟମିତ ସ୍ତମ୍ଭ ଲେଖିବା ଆରମ୍ଭ କଲି, ମୋର ଲେଖାକୁ ତାରିଫ୍ କରି ସେ ଭୁବନେଶ୍ୱରରୁ ଚିଠି ଲେଖୁଥିଲେ, ପ୍ରକାଶ ଥାଉ କି, ସେତେବେଳକୁ ଆମେ ଦୁହେଁ ନିଜର ବୃତ୍ତିକୁ ଆଶ୍ରା କରି ନବରଙ୍ଗପୁର ସହରରୁ ଦୂରକୁ ଚାଲି ଯାଇଥିଲୁ । ଚିଠିପତ୍ର ଓ ଟେଲିଫୋନ୍ ମାଧ୍ୟମରେ ମାତ୍ର ଆମର ଯୋଗାଯୋଗ ରହୁଥିଲା । ମନେ ପଡୁଛି ଥରେ ଗୋଟେ ଚିଠିରେ ସେ ଲେଖିଥିଲେ : ତୁମ ସ୍ତମ୍ଭରେ 'ଦମ୍ଭ' ଅଛି । ତାଙ୍କର ପ୍ରଶଂସାରେ ମୋର ଛାତି ବୋଧେ ଟିକେ ଚଉଡ଼ା ହେଇଯାଇଥିଲା । ମାତ୍ର ଅଳ୍ପଦିନ ପରେ ଯେତେବେଳେ ତାଙ୍କ ସହ ମୋର

ଭୁବନେଶ୍ୱର ପୁସ୍ତକମେଳାରେ ଦେଖାହେଲା, କାଳ ବିଳମ୍ୱ ନକରି ସେ କହିଲେ : ସ୍ତମ୍ଭ ଛାଡ଼ି ଏଣିକି କ୍ରିଏଟିଭ୍ ଲେଖାରେ ମନ ଦିଅ । ଏ ନେଇ ଆମ ଦୁହିଁଙ୍କର ଅନେକବାର କଥା କଟାକଟି ମଧ୍ୟ ହୋଇଛି । ତେବେ ମନାନ୍ତର ହୋଇ ନାହିଁ କେବେ ।

ମଣିଷକୁ ଗଭୀର ଭାବେ ଭଲ ପାଇବା ଥିଲା ତାଙ୍କ ଜୀବନର ଦୀକ୍ଷା । ଯେତେବେଳେ ଆତ୍ମୀୟମାନେ କୁଶଳ କଥା ଚିନ୍ତା କରୁ ନ ଥିଲେ ମାତ୍ର ଶିବରାମ ବାବୁ, ଭୁବନେଶ୍ୱରରେ ଜମି ଖଣ୍ଡିଏ କିଣି ଘରଟିଏ କରିବାକୁ ଅନେକବାର ପରାମର୍ଶ ଦେଉଥିଲେ । ଅବଶ୍ୟ ସେତେବେଳେ ମୁଁ ତାଙ୍କ କଥାରେ ଟିକେ ବିରକ୍ତ ହେଉଥିଲି ମାତ୍ର ଏବେ ବୁଝୁଛି, ଗଭୀର ମମତା ନ ଥିଲେ କିଏ କାହିଁକି ଅନ୍ୟର ଦୁଃଖ ସୁଖରେ ସାଥି ହେବ ?

ଆଜି ସେ ନାହାନ୍ତି ଅଥଚ ଘଣ୍ଟା ଘଣ୍ଟା ଧରି ଗୋଟେ ନିଭୃତ କୋଠରୀରେ ଔପନ୍ୟାସିକ ଶ୍ରୀ ଅନାଦି ସାହୁଙ୍କ ସହ ସେ ମୋର ଇଂରାଜୀ କବିତାମାନ ଶୁଣିଛନ୍ତି, ଆଲୋଚନା କରିଛନ୍ତି ଓ ପରବର୍ତ୍ତୀ କାଳରେ ସେ ସବୁକୁ ଏକତ୍ର କରି ବହିଟିଏ ଛାପିବାକୁ ପରାମର୍ଶ ଦେଇଛନ୍ତି । ସେସବୁ ଆଜି ସ୍ମୃତି ହୋଇ ନାହୁଡ଼ ମାରୁଛନ୍ତି । ତାଙ୍କ ଅବର୍ତ୍ତମାନ ବେଶ୍ ପୀଡ଼ା ଦେଇଛି ଏବେ । ମନେହେଉଛି, ତାଙ୍କ ବିୟୋଗରେ ମୁଁ ମୋର ଜଣେ ଆତ୍ମୀୟଙ୍କୁ ହରାଇଛି ।

ସେବା କାଗଜ କଳ,ଜେ.କେ. ପୁର
ରାୟଗଡ଼ା

## ସାହିତ୍ୟ କଳା ସଂସ୍କୃତି ପରମ୍ପରାର ଏକ ସମନ୍ୱୟ

ନିହାର ରଞ୍ଜନ ବିଶ୍ୱାଳ
ସସ୍ମିତା ସାବତ

ପ୍ରଥମ ଦେଖା :

୨୦୦୩ ମସିହାର ପୁସ୍ତକ ମେଳା । ଆମର ନୂଆ ନୂଆ ବାହାଘର ହୋଇଥାଏ । ମୁଁ ଓ ମୋ ସ୍ତ୍ରୀ ଯାଇଥିଲୁ । କୁର୍ତ୍ତା ଓ ପାଇଜାମା ପିନ୍ଧି କାନ୍ଧରେ ଗୋଟେ ଲମ୍ୱା ବେଗ୍ ଓହଳେଇଥିବା ବ୍ୟକ୍ତିଜଣଙ୍କୁ ମୋର ସ୍ତ୍ରୀ ନମସ୍କାର କଲା ଏବଂ ମୋତେ ଚିହ୍ନେଇଦେଲା ଆମ ସାର୍ ବୋଲି । ଏବଂ, ସେହି ପରିଚୟ ମାନସିକ ସ୍ତରରେ ମଧ୍ୟ ଏକ ନିବିଡ଼ ସମ୍ପର୍କର ବାଡ଼ ବାନ୍ଧିଦେଇଥିଲା । ସେଇଠି ସାର୍ ଆମକୁ ଗୋଟିଏ ଷ୍ଟଲରୁ ଆଉ ଗୋଟିଏ ଷ୍ଟଲକୁ ନେଇ ଆମପାଇଁ ୧୨୦୦ ଟଙ୍କାର ବହି କିଣେଇ ଦେଇଥିଲେ । ମୋ ସ୍ତ୍ରୀ ମା' ହେବାକୁ ଅଛି ଭାବି ରାମାୟଣ, ଭାଗବତ ଓ ଅନେକ ରୁଚିପୂର୍ଣ୍ଣ ବହି କିଣେଇ ଦେଇଥିଲେ । ଏହି ଭାବନା ତାଙ୍କର ମୋତେ ବିସ୍ମିତ କରିଥିଲା । ସେ ତ ବହିର ମଣିଷଥିଲେ- ଆମକୁ ବି ସେ ସେହି ବାଟ ଦେଖେଇ ଦେଲେ ।

ପ୍ରଥମେ ବନ କରେ ତା'ପରେ ଉପବନ କରିବୁ :

ଏ ଉକ୍ତି ଶିବରାମ ପାତ୍ର ସାରଙ୍କର । ୨୦୦୩ ଡିସେମ୍ବରରେ ମୋ ଜାଗା କିଣିବା ପରେ ସାରଙ୍କ ସାଙ୍ଗରେ ଯେତେବେଳେ ଦେଖାହୋଇଥିଲା, ସେ ଖୁସିହୋଇ ନିଜ ବନରୁ କିଛି ଗଛ ନେଇ ସ୍ୱହସ୍ତରେ ମୋ ଜାଗାରେ ରୋପଣ କରିଥିଲେ ଅନେକଥର । ଏହାଥିଲା ସାରଙ୍କ ଗଛ ଏବଂ ସବୁଜକ୍ଷେତ୍ର ପ୍ରତି ଆଗ୍ରହ । ଅନେକଥର ବି ଫୋନକରି ସେଇଠି, କି କି ଗଛ ଲଗେଇବି କ'ଣ ଚାଷ କରିବି ବତେଇଦିଅନ୍ତି ।

ଘରେ ଅନୁଷ୍ଠାନ :

ଆମେ ଦୁହେଁ ଚାକିରିଆ, ବ୍ୟସ୍ତଜୀବନ ଭିତରେ ମଝିରେ ମଝିରେ ସାରଙ୍କ ଫୋନ ଆସେ - ଆଜି ଗାନ୍ଧୀ ଜୟନ୍ତୀ ସଂଧ୍ୟାବେଳେ ଘରେ ଗୋଟେ ଚର୍ଚ୍ଚା ଅଛି ଆସିବ । ଏମିତି ବେଳେବେଳେ ଆମକୁ ସୁଯୋଗ ମିଳିଯାଏ ବୁଦ୍ଧିଜୀବୀଙ୍କ ଗହଣରେ ବସି କିଛି ଚର୍ଚ୍ଚା ଏବଂ ଜ୍ଞାନ ଆହରଣ କରିବାପାଇଁ । ସଭା ସାଙ୍ଗ ହେଲାପରେ ସମସ୍ତଙ୍କର ଲୋଭ ଥାଏ ଗୋଟେ ସ୍ୱତନ୍ତ୍ର ଖାଦ୍ୟ ପାଇଁ, ତାହାହେଲା- ପାଳୁଅକଟା । ପାଳୁଅକଟା ସେଇଠି ଏକ ଅପୂର୍ବ ଆକର୍ଷଣ । ପାଳୁଅ ହେଉ ବା ଯେକୌଣସି ପୁରୁଣା କାଳିଆ ରୁଚିକର ପଦାର୍ଥ ହେଉ, ସାର୍‌ଙ୍କ ଘରେ ତାହା ନିଶ୍ଚିତ ମିଳିଥାଏ । ତେଣୁ ସେଇଠି ଜ୍ଞାନ, ସଂସ୍କୃତି ଓ ପରମ୍ପରାର ଏକ ଅପୂର୍ବ ସମନ୍ୱୟ ହୁଏ ।

ମୋ ଝିଅର ପ୍ରଥମ ଜନ୍ମଦିନ :

୨୦୦୪ ଡିସେମ୍ବର ମାସରେ ଝିଅର ପ୍ରଥମ ଜନ୍ମଦିନ ଥାଏ । ଆମକୁ ବହୁତ ଜାକଜମକରେ ପାଳନ କରିବାର ଇଚ୍ଛା ଥିଲା । ଭାବୁଥିଲୁ ଗୋଟେ ବଡ଼ ହୋଟେଲ୍‌ରେ କରିବୁ, ତା' ସାଙ୍ଗକୁ ଗୋଟେ ଭଜନ ସମାରୋହ ଆୟୋଜନ କରିବାର ବହୁତ ଇଚ୍ଛା ଥିଲା । ହେଲେ ଆମେ ବହୁତ ବ୍ୟସ୍ତ ହୋଇପଡ଼ିଥିଲୁ । ଆଧୁନିକତା ଏବଂ ପରମ୍ପରାର ପହେଳି ଭିତରେ ଛନ୍ଦି ହୋଇପଡ଼ିଥିଲୁ । କିଛି ସମାଧାନ କରିପାରୁନଥିଲୁ, ତା'ପରେ ଆମେ ସାରଙ୍କ ଘରକୁ ଯାଇଥିଲୁ । ବହୁତ ଜୋର କରି ନିଜର ଭାବ ରଖି ଆମକୁ ବହୁତ ଗାଳି ଦେଲେ, ଏବଂ ବହୁତ ସୁନ୍ଦର ଭାବେ ଆମ ସବୁ ସମସ୍ୟାର ସମାଧାନ କରିଦେଇଥିଲେ । ସେ କହିଲେ ଜଗନ୍ନାଥ ମନ୍ଦିରରେ ପ୍ରଭୁ ଜଗନ୍ନାଥଙ୍କୁ ଭଜନ ଅର୍ପଣ କରିବା ମନ୍ଦିରରେ ରୋଷେଇ କରି ଭଗବାନଙ୍କୁ ଅର୍ପଣ କରି ପ୍ରସାଦ ଖାଇବା । ଭଜନ ସମାରୋହ ପୁଣି ହୋଟେଲ୍‌ରେ, ଯେଉଁଠି ଲୋକ ଠିଆହୋଇ ବୁଫାଇ ସିଷ୍ଟମ୍‌ରେ ହୋଟେଲ୍ ରନ୍ଧା ଖାଦ୍ୟ ଖାଉଥିବେ । ଭଜନ ଶୁଣିବାପାଇଁ ବା ଗାଇବା ପାଇଁ ଭକ୍ତିଭାବ ଦରକାର । ତାପରେ ସେ ନିଜେ ଦାୟିତ୍ୱ ନେଇ ରୋଷେଇ, ଅତିଥିଚର୍ଚ୍ଚାରୁ ଆରମ୍ଭ କରି ଖାଇବା, ପିଇବା ସବୁ ଜିନିଷ ସୁଚାରୁ ରୂପେ ସୁନ୍ଦର, ମାର୍ଜିତ ଏବଂ ରାଜକୀୟ ଢଙ୍ଗରେ ସମାପନ କରିଥିଲେ । ସେଦିନର ସଂଧ୍ୟା ଆମପାଇଁ ଏବଂ ଆମ ଅତିଥିମାନଙ୍କପାଇଁ ଏକ ଅଭୁଲା ସ୍ମୃତି । ସେଦିନ ସାରଙ୍କୁ ଯେଉଁମାନେ ଦେଖିଛନ୍ତି ଆଉ ଭୁଲିପାରିନାହାନ୍ତି ।

ସେ ଥିଲେ ଆମ ପରମ୍ପରା ଓ ସଂସ୍କୃତିକୁ ଜାବୁଡ଼ି ଧରିଥିବା ପ୍ରିୟ ଅଭିଭାବକ ।

କେଦାରଗୌରୀ ପାଖ, ,ଭୁବନେଶ୍ୱର

# ପ୍ରାୟଶ୍ଚିତ

**ଅଭିଳାଷ ନାୟକ**

ଶିବରାମ ସାର୍‌ଙ୍କ ସହିତ ମୋର ସଂପର୍କ ଦିନେ ଦୁଇଦିନର ନୁହଁ, ଦୀର୍ଘ କୋଡ଼ିଏ ବର୍ଷର ।

ମୁଁ ସାର୍‌ଙ୍କ ଛାତ୍ର ନଥିଲି କିନ୍ତୁ ତାଙ୍କରି ଛାତ୍ରଙ୍କର ସାମସମୟିକ ଥିଲି । ତାଙ୍କରି ଗୁଣପୁର ରହଣି କାଳରେ ପ୍ରଥମଥର ମୋର ଜଣେ ବଂଧୁଙ୍କ ସହିତ ତାଙ୍କ ଘରକୁ ଯାଇଥିଲି । ଖାଲି ଦେଖା କରିବା ପାଇଁ । ସେଇ ପ୍ରଥମ ଦେଖାରେ ସେ ମୋ ଭିତରେ କ'ଣ ଦେଖିଲେ କେଜାଣି, ମୁଁ ତାଙ୍କ ଭିତରେ କ'ଣ ଦେଖିଲି କେଜାଣି, ଆମେ ପରସ୍ପରର ନିକଟ ହୋଇଚାଲିଲୁ । ଦେଖାଚାହାଁରୁ ମିଳାମିଶା, ମିଳାମିଶାରୁ ଆନ୍ତରିକତା । ପ୍ରଥମେ ତ ସେ ମୋ ପାଇଁ କିଛି ନଥିଲେ । କିନ୍ତୁ ସମୟକ୍ରମେ ସେ ମୋର ପିତୃପ୍ରତିମ ଗୁରୁ, ସଖା, ସହୋଦର, ଦିଗ୍‌ଦର୍ଶକ ପାଲଟିଗଲେ । ତାଙ୍କରି ସାମଗ୍ରିକ ସତ୍ତା ମୋର ଜୀବନର ପ୍ରତ୍ୟେକ ପ୍ରଷ୍ଠକୁ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ପ୍ରଭାବିତ କରିଥିଲା ।

ମୁଁ ବାଣୀବିହାରରେ ପଢ଼ିବା କାଳରେ ଗୁଣପୁରର 'ବଂଶଧାରା ସାହିତ୍ୟ ସମାଜ' ତରଫରୁ ଏକ ସୋଭେନିଅର୍ ପ୍ରକାଶପାଇବାର ଥିଲା ମୁଁ ମଧ୍ୟ କବିତାଟେ ଦେଇଥିଲି ସେଥିପାଇଁ । ସାର୍ ସଂପାଦକ ଥାଆନ୍ତି । ସଂପାଦନା କରୁ କରୁ ସାର୍ କବିତାଟିର ରୂପରେଖ ଏମିତି ବଦଳାଇଦେଲେ ଯେ ପ୍ରଥମେ ମୋତେ ଅଡୁଆ ଅଡୁଆ ଲାଗିଲା । ମୁହଁଖୋଲି କିଛି କହିପାରିଲିନି । କିନ୍ତୁ ପରବର୍ତ୍ତୀ ସମୟରେ ସେଇ କବିତାକୁ ବାରଂବାର ପଢ଼ିବାପରେ ଜାଣିଲି ସେତିକି ସଂପାଦନା ବିନା କବିତାଟି ଅସଂପୂର୍ଣ୍ଣ ରହିଯାଇଥାନ୍ତା । ଯାହା ଠିକ୍, ଯାହା ଭଲ ତା'କୁ ପ୍ରକାଶ କରିବାରେ ସାର୍ କେବେ କୁଣ୍ଠାବୋଧ କରୁନଥିଲେ । ତାଙ୍କରି ସ୍ୱରର ଦୃଢ଼ତା, ଅକାଟ୍ୟ ଯୁକ୍ତିରେ ଥିବା ଗାମ୍ଭୀର୍ଯ୍ୟ ଓ ବ୍ୟକ୍ତିତ୍ୱରେ ଥିବା ଆକର୍ଷଣ ତାଙ୍କୁ ଲୋକପ୍ରିୟ କରିଥିଲା ।

ସାର୍ ନବରଙ୍ଗପୁରରେ ଥିଲାବେଳେ ମୋତେ ବେଶୀ ସୁଯୋଗ ମିଳିଥିଲା ତାଙ୍କୁ ନିକଟରୁ ଦେଖିବା ଲାଗି, ଅନ୍ତରଂଗ ଆଳାପ କରିବା ଲାଗି । ସେ ନବରଙ୍ଗପୁର ଯିବାପରେ ପରେ ମୋର ଇନ୍ଦ୍ରାବତୀ ପ୍ରକଳ୍ପ ମହାବିଦ୍ୟାଳୟ ଲାଗି ସିଲେକ୍‌ସନ୍ ହୋଇଯାଇଥିଲା । ସେତେବେଳେ ମୁଁ ସଂବଲପୁରରେ ଏମ୍.ଫିଲ୍ କରୁଥାଏ । କଲେଜ ପରିଚାଳନା ତରଫରୁ ମୋ ପାଖରେ ନିଯୁକ୍ତ ପତ୍ର ପହଞ୍ଚିବା ଆଗରୁ ସାର୍‌ଙ୍କ ଚିଠି ପହଞ୍ଚି ଯାଇଥିଲା ମୋ ପାଖରେ । ଏକ ଦରଦୀ, କୋମଳ, ପରୋପକାରୀ ହୃଦୟଟେ ଥିଲା ସାର୍‌ଙ୍କର । ପ୍ରଥମ ଚାକିରୀରେ ଜଏନ୍ କରିବାଦିନ ମଧ୍ୟ ସାର୍‌ଙ୍କ ଘରୁ ହିଁ ବାହାରି ଯାଇଥିଲି । ବାହାରିବାବେଳେ ସାର୍ ଆଉ ମାଡାମ୍ ଉଭୟେ ମୋତେ କିଛି ଖାଇ ଯିବା ଲାଗି ବାଧ କରିଥିଲେ, ନୂଆଯାଗାରେ କାଳେ କିଛି ଅସୁବିଧା ହେବ ଭାବି । ମୁଁ ଇନ୍ଦ୍ରାବତୀ ଗଲାବେଳେ ସାର୍ ନବକିଶୋର ରାଜ

ସାର୍‌ଙ୍କ ପାଖକୁ ଖଣ୍ଡିଏ ଚିଠି ଦେଇଥିଲେ । ରାଜ୍ ସାର୍ ସେତେବେଳେ ଇନ୍ଦ୍ରାବତୀ ପ୍ରକଳ୍ପର ଏଫ.ଏ. ଥାଆନ୍ତି । ଶିବରାମ ସାର୍‌ଙ୍କ ଚିଠିରେ କି ଯାଦୁ ଥିଲା କେଜାଣି, ରାଜସାର୍ ମୋତେ ଏକ୍‌ଦମ୍ ଆପଣେଇ ନେଲେ । ଆମ ସଂପର୍କର ଘନିଷ୍ଠତା ବଢ଼ିଚାଲିଲା ।

ଚାକିରୀର ପ୍ରଥମବର୍ଷରେ ପ୍ରତି ସପ୍ତାହନ୍ତରେ ମୁଁ ଚାଲିଯାଉଥିଲି ନବରଙ୍ଗପୁର । ସାର୍‌ଙ୍କ ଘରକୁ ଯାଇ ମୁଁ ଉଣା ଅଧିକେ ମୋର ଗୁଣପୁର ଯିବାର ଆବଶ୍ୟକତାକୁ ମେଣ୍ଟାଇ ପାରୁଥିଲି । ଉଭୟେ ସାର୍ ଓ ମାଡାମ୍‌ଙ୍କଠାରୁ ମୁଁ ଭରପୁର ଆଦର ପାଇଛି । ସାର୍‌ଙ୍କ ସହିତ ବୁଲିବୁଲି ନବରଙ୍ଗପୁର ସାହିତ୍ୟ ସମାଜର ବିଭିନ୍ନ କର୍ମକର୍ତ୍ତାଙ୍କ ସହିତ ପରିଚୟ ହୋଇଛି । ଲଳିତ ମୋହନ ପଟ୍ଟନାୟକ, ଭାଗିରଥି ପାତ୍ର, ମନୁଦାଶ ଓ ବଲ୍ଲଭ ରାଉତଙ୍କ ପରି ବିଭିନ୍ନ ସାହିତ୍ୟିକ ବଂଧୁଙ୍କ ସହିତ ସାକ୍ଷାତ ହୋଇଛି । ମୋର ଜୀବନର ସାହିତ୍ୟପ୍ରସ୍ଥ ସମୃଦ୍ଧ ଓ ସଂପ୍ରସାରିତ ହୋଇଛି । କ୍ରମଶଃ କୋରାପୁଟ ଜିଲ୍ଲାର ବିଭିନ୍ନ ସାହିତ୍ୟିକ ଓ ସାହିତ୍ୟ ଅନୁଷ୍ଠାନ ସହିତ୍ ସଂପର୍କ ବଢ଼ିଛି । କ୍ୟାରିଅର ପଛରେ ଗୋଡ଼ାଇ ବିଶେଷ କିଛି ସାହିତ୍ୟ ସାଧନା କରିପାରିନି, କିନ୍ତୁ ଯତ୍‌କିଞ୍ଚିତ ସମ୍ଭବ ହୋଇଛି ସେଥିରେ ସାର୍‌ଙ୍କ ଯୋଗଦାନ ଅଗ୍ରଣୀ ଭୂମିକା ନେଇଛି ।

ସାର୍‌ଙ୍କ ଘରଥିଲା ଏକ ମିନି ପାଠାଗାର । ଖାଲି ଓଡ଼ିଆ ସାହିତ୍ୟ ନୁହଁ, ଇଂରାଜୀ ସାହିତ୍ୟର ଅନେକ ଉପାଦେୟ ପୁସ୍ତକ ମଧ ସାର୍‌ଙ୍କ ସଂଗ୍ରହାଳୟରେ ସ୍ଥାନ ପାଇଥିଲା । ସାହିତ୍ୟ, ସଂସ୍କୃତି, ଇତିହାସ, ଭୂଗୋଳ, ନୃତତ୍ତ୍ୱ ଓ ମନସ୍ତତ୍ତ୍ୱ ଭଳି ବିବିଧ ବିଷୟ ଉପରେ ଅଗଣିତ ବହିର ଗନ୍ତାଘର ଥିଲା ତାଙ୍କ ଘର । ଏକ ବ୍ୟକ୍ତିଗତ ଗବେଷଣା କେନ୍ଦ୍ର କହିଲେ ବି ଅତ୍ୟୁକ୍ତି ହେବନାହିଁ । ଯେତେବେଳେ ଯାହା ଦରକାର, ସବୁ ମିଳିଯାଉଥିଲା ସେଇଠି । ଘରର ସବୁକୋଣରେ, କାନ୍ଥରେ, ସେଲଫ୍‌ରେ, ଆଲମାରୀରେ ସବୁଠି ବହି । ସବୁ ଆଗନ୍ତୁକଙ୍କୁ ସେମାନେ ଯେମିତି କହୁଥିଲେ, 'ଆମକୁ ପଢ଼, ଆଗକୁ ବଢ଼ ।' ସେଇ ଘରର ବାତାବରଣ ଭିତରେ ଜଣେ ଅକବିକୁ କବି, ଅସଭ୍ୟକୁ ସଭ୍ୟ ଓ ଅସମର୍ଥକୁ ସମର୍ଥ କରିବାର ଏକ ଅଦ୍ଭୁତ ଶକ୍ତି ଯେମିତି ଛପି ରହିଥିଲା ! ଯିଏ ଘରକୁ ଯାଉଥିଲା, ସାର୍ ଗୋଟିଏ କଥା କହୁଥିଲେ, ସାହିତ୍ୟିକ ହୋଇ ଜୀଇଁବାର ଅଛି ତ ଯଥେଷ୍ଟ ପଢ଼ । ନ ପଢ଼ିଲେ ନିଜ ସଂକୀର୍ଣ୍ଣ ଚିନ୍ତାଧାରାର ବଳୟ ଭିତରେ ବାଷ୍ପରୁଦ୍ଧ ହୋଇଯିବ । ମୋ ପରି କମ୍ ପଢ଼ାପଢ଼ି କରୁଥିବା ବ୍ୟକ୍ତିଟିଏ ମଧ ତାଙ୍କରି ଅନୁପ୍ରେରଣାରେ ଉତ୍ସାହିତ ହୋଇ ବହିପତ୍ର କିଣି ପଢ଼ାପଢ଼ି ଆରଂଭ କରିଥିଲା । ସାହିତ୍ୟିକ ବନିବା ନ ବନିବା ସଂପୂର୍ଣ୍ଣ ଅଲଗା କଥା ।

ପରିବାରର ପରିସୀମା ଭିତରେ ସାର୍‌ଥିଲେ ସବୁକିଛି । ସେ ଯାହା ଚାହୁଁଥିଲେ ସେଇୟା ହେଉଥିଲା । ତାଙ୍କରି ବଳିଷ୍ଠ ବ୍ୟକ୍ତିତ୍ୱ ଆଗରେ ଯୁକ୍ତି ବାଢ଼ିବାକୁ ସୁ' ନଥିଲା କାହାର । ପିଲାମାନେ ବି ସାର୍‌ଙ୍କ କଥା କେବେ ଅମାନ୍ୟ କରିବାର ମୁଁ ଦେଖିନି । ସରଳ ନିରାଡ଼ମ୍ବର ଜୀବନ ସହିତ ପ୍ରଗତିମୁଖୀ ଉନ୍ନତ ଚିନ୍ତାଧାରା ନେଇ ଜୀଇଁବାର ଦୀକ୍ଷାରେ ଯେମିତି ସଭିଏଁ ଦୀକ୍ଷିତ ଥିଲେ ! ସଂପୂର୍ଣ୍ଣ ଶୃଙ୍ଖଳା ଭିତରେ ଚାଲିଥିଲା ସବୁକିଛି । ପିଲାମାନଙ୍କ କ୍ୟାରିଅର ଲାଗି ସାର୍ ଓ ମାଡାମ୍ ନିଜର ସମସ୍ତ ବ୍ୟକ୍ତଗତ ସୁଖସୁବିଧାକୁ ପଛରେ ପକାଇ ଦେଇଥିଲେ । ସେମାନଙ୍କର ଉନ୍ନତିରେ ଖୁବ୍ ଖୁସି ହେଉଥିଲେ ।

ଗୁଣ୍ଡୁଚି ମୂଷାଟିଏ ପରି ସାହିତ୍ୟ, ସଂସ୍କୃତି ସମ୍ବନ୍ଧିତ ସମସ୍ତ ନଥିପତ୍ର, ପୁରୁଣାବହି ଓ ଜିନିଷ ସଂଗ୍ରହ କରିବା ଥିଲା ସାର୍‌ଙ୍କ ସଉକ । ଯେଉଁଠି ଯାହା ମିଳିଲା ଆଣିବେ, ସାଇତି ରଖିବେ । ଆସିବା ଯିବା ଲୋକଙ୍କୁ ଦେଖାଇବେ ଓ ତାହାର ତାତ୍ପର୍ଯ୍ୟ ବୁଝାଇବେ । ସାରା ଓଡ଼ିଶାର ସାହିତ୍ୟିକ ଓ ସଂସ୍କୃତି ପ୍ରେମୀଙ୍କ ନାଁ ଯେମିତି ତାଙ୍କ ଜିଭ ଅଗରେ ଥିଲା ! ଯାହା ବିଷୟ କୁହ, ସାର୍ ତାଙ୍କ ସହିତ ନିଜର ବ୍ୟକ୍ତିଗତ ସଂପର୍କର କଥା ଅବତାରଣା କରିବେ । ତାଙ୍କ ସାନ୍ନିଧ୍ୟରେ ଥାଇ ବେଳେବେଳେ ଲାଗୁଥିଲା ଓଡ଼ିଶାର ସମସ୍ତ ସାରସ୍ୱତ ସାଧକଙ୍କ ଗହଣରେ ଥିଲାପରି ।

ସାର୍‌ଙ୍କ କବିତା ପଢ଼ିବାର ଢାଞ୍ଚାବି ନିଆରା । ଗମ୍ଭୀର ସ୍ୱରରେ କବିତାପଢ଼ି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିପାରୁଥିଲେ ସିଏ । କୌଣସି ବ୍ୟକ୍ତି ବା ଦ୍ରବ୍ୟକୁ କେବେ ଅଲୋଡ଼ା ମଣୁନଥିଲେ । ରଫ୍ କାଗଜ ଖଣ୍ଡିଏ କାମରେ ଲାଗୁଥିଲା । ଖାଲି ସମୟରେ କଇଁଚିଟିଏ ଧରି ସାର୍ ସେସବୁ ଛୋଟ ଛୋଟ ଖଣ୍ଡକରି କାଟୁଥିଲେ ଓ ସେଗୁଡ଼ିକୁ ନିକଟସ୍ଥ ହୋମିଓପ୍ୟାଥି କ୍ଲିନିକ୍‌ରେ, ବିଭିନ୍ନ ଡାକ୍ତରଖାନାରେ ଦେଇ ଆସୁଥିଲେ । ଔଷଧ ପୁଡ଼ିଆ ବାନ୍ଧିବାରେ ଓ ପ୍ରେସ୍‌କ୍ରିପ୍‌ସନ୍ ଲେଖିବାରେ ବ୍ୟବହୃତ ହେଉଥିଲା ତାହା । ସାଧାରଣ ଲୋକଙ୍କ ନଜରରେ ଏତାଦୃଶ କାମ ନଗଣ୍ୟ ହୋଇପାରେ, କିନ୍ତୁ ଏହା ସାର୍‌ଙ୍କ ବ୍ୟକ୍ତିତ୍ୱର ଏକ ମହନୀୟ ଦିଗକୁ ସୂଚିତ କରୁଥିଲା । ପୁରୁଣା ମୋଟା ନିମନ୍ତ୍ରଣ ପତ୍ର ସବୁ ନିଜେ ବହି ବନ୍ଧେଇ କଲାବେଳେ ବ୍ୟବହାର କରୁଥିଲେ । ଛୁଟୀ ଦିନମାନଙ୍କରେ ସହରର ପାଠାଗାରମାନଙ୍କର ବହିସବୁ ବନ୍ଧେଇ କରୁଥିଲେ ।

ଇନ୍ଦ୍ରାବତୀ(ଖାତିଗୁଡ଼ା)ରେ ରହିବା କାଳରେ ସାର୍‌ଙ୍କ ଘରକୁ ଘନଘନ ଯିବାଆସିବା କରୁଥିଲି । ଏହି ସମୟକାଳ ଭିତରେ ସାର୍‌ଙ୍କ ଉପଦେଶ ଓ ଦିଗ୍‌ଦର୍ଶନ ମୋର ବ୍ୟକ୍ତିଗତ ଜୀବନ, ଅଧ୍ୟାପନା କ୍ୟାରିଅର ଓ ସୀମିତ ସାହିତ୍ୟିକ ଜୀବନକୁ ଯଥେଷ୍ଟଭାବେ ପ୍ରଭାବିତ କରିଥିଲା । ମୋର ଅନେକ କବିତା ଓ ପ୍ରବଂଧର ଏକୁଡ଼ିଶାଳ ଥିଲା ସାର୍‌ଙ୍କ ଘର । ଥରେ ସଂଧ୍ୟାରେ ସାର୍‌ଙ୍କ ଘରେ ପହଞ୍ଚି ଜାଣିଲି ବୃନ୍ଦାବନ ନାୟକଙ୍କ ଉପରେ ଲେଖା ଆବଶ୍ୟକ । ସାର୍ ତତକ୍ଷଣାତ୍ ତଥ୍ୟ ଯୋଗାଇଦେଲେ । ବାସ୍, ସେଇ ତଥ୍ୟକୁ ଆଧାର କରି କବିତା ଲେଖା ହୋଇଥିଲା, ସେଇଠାରେ, ସେଇ ରାତିରେ । ଆଉଥରେ ଜୟପୁର ଆକାଶବାଣୀର ଚିଠି ଆସିଥିଲା ଦେଶୀୟାଭାଷା ଉପରେ ଟକ୍ ଦେବାଲାଗି । ଅସହାୟ ହୋଇ ଧାଇଁ ଗଲି ସାର୍‌ଙ୍କ ପାଖକୁ । କାମ ହୋଇଗଲା । ମୁଁ ପି.ଏଚ୍‌ଡି. କରିବା ସମୟରେ ମଧ ବାରଂବାର ସାରଙ୍କର ସାହାଯ୍ୟ, ସହଯୋଗ ଲୋଡ଼ିଛି ଓ ପାଇଛି । ଭାଷାବିତ୍ ପ୍ରଫେସର ଗଗନେନ୍ଦ୍ର ଦାଶ, ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କଠାରୁ କିଛି ତଥ୍ୟ ପାଇବାର ଥିଲା । ମୋର ସାହସ ହୋଇନଥିଲା ଚିଠିଦେବାକୁ । ସାର୍ ମୋତେ ଉଭୟଙ୍କ ଠିକଣାଦେଇ ଚିଠି ଲେଖିବାକୁ ଉତ୍ସାହିତ କରିଥିଲେ । ମୁଁ ଚିଠି ଲେଖିଥିଲି ଓ ଉଭୟଙ୍କଠାରୁ ଉତ୍ତର ମଧ ପାଇଥିଲି । ମୋର ପୁଅ ଦୁଇଜଣ (ଅଭିଷେକ ଓ ଅଭିଜିତ) ନବରଙ୍ଗପୁର କ୍ରିଷ୍ଟିୟାନ୍ ହସ୍‌ପିଟାଲରେ ଜନ୍ମ ହେବା ସମୟରେ ସାର୍ ନବରଙ୍ଗପୁରରେ ଥିଲେ । ସେ ସମୟରେ ସାର୍, ମାଡାମ୍ ଓ ତାଙ୍କ ପିଲାମାନେ ବାରଂବାର ହସପିଟାଲ ଆସି ଯେତିକି ସାହାଯ୍ୟ ସହଯୋଗ କରିଥିଲେ, ତାହା କେବଳ କୌଣସି ନିକଟ ସଂପର୍କୀୟ କରିପାରନ୍ତା । ଖାଲି ମୋ ସହିତ ନୁହଁ, ସାର୍‌ଙ୍କ ଘରକୁ ଯିବାଆସିବା କରୁଥିବା ସମସ୍ତ ବ୍ୟକ୍ତିଙ୍କ ସହିତ ସାର୍‌ଙ୍କ ପରିବାରର ବ୍ୟବହାର ଠିକ୍ ଏଇମିତି ଥିଲା ।

ସିଂହଦ୍ୱାର ସତତ ଖୋଲା ରହୁଥିଲା ସାର୍‌ଙ୍କ ଘରେ, ଆତିଥ୍ୟ ବିନା କୌଣସି ଅତିଥି ଫେରିବାର ଶୁଣିନି ଏଯାଏଁ ।

ଖାଲି ସ୍ନେହ, ମମତା ଉପଦେଶ ନୁହଁ । ବେଳେବେଳେ ଖୁବ୍ ଗାଳିବି ଶୁଣିବାକୁ ପଡୁଥିଲା ସାର୍‌ଙ୍କ ଠାରୁ, କୌଣସି ବିଷୟରେ ତାଙ୍କରି ଯୁକ୍ତିକୁ କାଟିବାକୁ ଅଯଥା ପ୍ରୟାସ କଲେ । ସାର୍ ବାରଂବାର କଥା ଛଳରେ କହୁଥିଲେ, 'ତମେ ଗୁଣପୁରିଆ ବ୍ରାହ୍ମଣ ସବୁ ଏକାପରି । ସବୁକଥାରେ ହିସାବ କିତାବ ।' ମୁଁ ଗୁଣପୁରିଆ ବ୍ରାହ୍ମଣ ହେଲେବି ଟିକିଏ କମ୍ ହିସାବୀ । ତେଣୁ ଟିକିଏ ଖରାପ ଲାଗୁଥିଲା ମୋତେ । କିନ୍ତୁ ପରେ ବୁଝିପାରିଥିଲି ସାର୍ ଠିକ୍ କଥା କହୁଥିଲେ । ସବୁ କଥାର ଲାଭକ୍ଷତି ହିସାବ କରିବା ଗୁଣଟି ଯେମିତି ଉତ୍ତରାଧିକାର ସୂତ୍ରରେ ମୋ ଅଜାଣତରେ ମୋ ଭିତରେ ବସାବାଂଧି ସାରିଥିଲା ।

ଆଉ ଗୋଟିଏ ଦିନର କଥା । ୧୯୯୭ ମସିହାରେ କଲ୍ୟାଣୀ ପ୍ରକାଶନ, ଲୁଧିଆନା ଦ୍ୱାରା ମୋର ଇଂରାଜୀ ବ୍ୟାକରଣ ବହି Practical English Grammer ପ୍ରକାଶିତ ହେବାପରେ ସାର୍‌ଙ୍କୁ ନେଇ ଦେଖାଇଥିଲି । ଭାବିଥିଲି ସାର୍ ବହୁତ ଆନନ୍ଦିତ ହେବେ । କିନ୍ତୁ ସାର୍ କହିଥିଲେ, ''ନୂଆ ନୂଆରେ ଭଲଲାଗିବ । ପରେ ଜାଣିବ ଏସବୁ କିଛି ନୁହଁ ।'' ଭାରି ଖରାପ ଲାଗିଥିଲା ମୋତେ । ମୋର ଯାହା ମନେପଡ଼େ ମାଡାମ୍ ମଧ ସାର୍‌ଙ୍କର ଏହି ମନ୍ତବ୍ୟ ଉପରେ ଆପତ୍ତି ପ୍ରକାଶ କରିଥିଲେ । କିନ୍ତୁ ମୁଁ ବର୍ତ୍ତମାନ ଭାବୁଛି, ବହିଟା ସେତେବେଳେ ନ ଲେଖି ଏବେ ଲେଖିଥିଲେ ଭଲହୁଅନ୍ତା । ଅଧିକା ନିଖୁଣ ହୋଇପାରନ୍ତା । ଅଧିକା ଅନୁଭୂତି ଦ୍ୱାରା ଋଦ୍ଧିମନ୍ତ ହୋଇ ଆହୁରି ଉନ୍ନତ ହୋଇପାରିଥାନ୍ତା ।

ମୋ ନନାଙ୍କ ବିରୁଦ୍ଧରେ ମୁଁ ଯାହା କିଛି କହିଲେ, ସେ ଧଡ଼କିନା ପ୍ରତିରୋଧ କରୁଥିଲେ । ନନାଙ୍କ ସପକ୍ଷରେ ଯୁକ୍ତି ବାଢୁଥିଲେ । ସତେ ଯେମିତି ନିଜ ପୀଢ଼ିର ପ୍ରତିନିଧି ଥିଲେ ସେ !

ଓଡ଼ିଶା ଛାଡ଼ି ଚଣ୍ଡୀଗଡ଼ ଆସିଗଲି । କିନ୍ତୁ ସାର୍‌ଙ୍କୁ ଜଣାଇବାକୁ ଭୁଲିଗଲି ସାର୍‌ଙ୍କ ଠିକଣା ପାଖରେ ନଥିଲା । ସେ ବୋଲଗଡ଼ରୁ ଯାଇ ଏକାମ୍ର କଲେଜରେ ଯୋଗ ଦେଲେ । ମୁଁ ଅଧମ ସାର୍‌ଙ୍କ ଠିକଣା ରଖିପାରିନଥିଲି କିନ୍ତୁ ସାର୍ ମୋ ଠିକଣା ସଂଗ୍ରହ କରିବାରେ କେବେ ହେଳା କରିନଥିଲେ ।

କାଳର କରାଳ ସୁଅରେ ଆମେ ପରସ୍ପରଠାରୁ ଦୂରକୁ ଚାଲିଗଲୁ । ମୁଁ କେତେ ସ୍ୱାର୍ଥପର ଓ କୃତଘ୍ନ ହୋଇଗଲି ! ସାର୍‌ଙ୍କ ପାଖକୁ ଖଣ୍ଡିଏ ଚିଠିବି ଦେଇପାରିଲିନି । ମୁଁ କିନ୍ତୁ ସାର୍‌ଙ୍କ ସହିତ ସଂପର୍କ ତୁଟାଇବା କଥା ଭାବିନି । ଅକସ୍ମାତ ସାର୍‌ଙ୍କ ଦେହାନ୍ତ କଥାଶୁଣି ମୋର ପାଦ ତଳରୁ ମାଟି ଖସିଗଲା ପରି ଲାଗିଛି । ନିଜର କେହି ଜଣେ ପ୍ରିୟ ପରିଜନକୁ, ନିଜର ପ୍ରେରଣାର ଉତ୍ସକୁ ହରାଇବାର ଦୁଃଖରେ ଛୋଟ ଛୁଆଟିଏ ପରି କଇଁକଇଁ ହୋଇ କାନ୍ଦିଛି । ତାଙ୍କରି ପରି ଜଣେ ସାହସୀ, ନିର୍ଭୀକ ଓ ଧୈର୍ଯ୍ୟବାନ ବ୍ୟକ୍ତି ଯେ ହୃଦ୍‌ଘାତର ଶିକାର ହୋଇପାରେ ଏକଥା ମୋର ବିଶ୍ୱାସ ହୋଇନି । ମାଡାମ୍ କହିଛନ୍ତି ସାର୍ ମୋତେ ବହୁତ ମନେ ପକାଉଥିଲେ ବୋଲି । ମୃତ୍ୟୁର ପ୍ରାୟ ଏକମାସ ଆଗରୁ ଗୁଣପୁର ଗଲାବେଳେ ନନାଙ୍କ ସହିତ କଥାହୋଇ ମୋ କଥା ପଚାରିଛନ୍ତି ଓ ଅଭିଳାଷ ଆମକୁ ଭୁଲିଗଲା କହି ଦୁଃଖ

କରିଛନ୍ତି । ମୁଁ ବହୁତ ଦୁଃଖ କରିଛି, ଅନୁତାପ କରିଛି । ନିଜକୁ ଧିକ୍କାର କରିଛି । କିନ୍ତୁ ସେତେବେଳକୁ ସବୁକିଛି ସରିଯାଇଛି । ମୁଁ ପ୍ରାୟଶ୍ଚିତ କରିବାଲାଗି ଚାହିଁଛି, କିନ୍ତୁ ସାର୍‌ଙ୍କ ଅନୁପସ୍ଥିତିରେ ସେ ସୁଯୋଗବି ହରାଇବସିଛି । କାହା ପାଖରେ ଯାଇ ପ୍ରାୟଶ୍ଚିତ କରିବି ?

ଶେଷରେ ଖାଲି ଏତିକି କହିବି, ସାର୍, ଆପଣଙ୍କ ଶାରୀରିକ ସତ୍ତାର ସିନା ମୃତ୍ୟୁ ଘଟିଛି, ଆପଣଙ୍କ ନିଷ୍ପାପ ଆତ୍ମା ଅଜର, ଅମର । ଆର ଜନ୍ମରେ ମୋତେ ଆପଣଙ୍କ ପରିବାରରେ ଜନ୍ମହୋଇ ଏ ଜନ୍ମର ଋଣ ପରିଶୋଧ କରିବାର ସୁଯୋଗ ପ୍ରାପ୍ତି ହେଉ ।

ସରକାରୀ ସ୍ନାତକୋତ୍ତର ମହାବିଦ୍ୟାଳୟ,
ଚଣ୍ଡୀଗଡ଼ ୧୬୦୦୪୭

## ସ୍ମୃତିରେ ଶିବରାମ

କିଶୋର ଚନ୍ଦ୍ର ପଣ୍ଡା

ଶିବରାମ ପାତ୍ର, ଜଣେ ବ୍ୟକ୍ତିବିଶେଷର ନାମ । ମୋର କିନ୍ତୁ ମନେହୁଏ ଏ ନାମଟି ଥିବା ଏକ ଅନୁଷ୍ଠାନର ନାମ ଫଳକ । ଯେଉଁ ଅନୁଷ୍ଠାନରେ ସୃଷ୍ଟି ହୁଅନ୍ତି କବି, ଲେଖକ, ନାଟ୍ୟକାର ଇତ୍ୟାଦି ସାହିତ୍ୟ ସ୍ରଷ୍ଟାମାନେ । ଶିବରାମ ପାତ୍ର ନାମକ ସେ ବ୍ୟକ୍ତିଟି ସହିତ ଏବଂ ସାହିତ୍ୟ ସ୍ରଷ୍ଟା ସୃଷ୍ଟିର ସେ ଚଳଚଞ୍ଚଳ ଅନୁଷ୍ଠାନଟି ସହିତ ମୋର ପ୍ରତ୍ୟକ୍ଷ ସଂପର୍କ ସ୍ଥାପିତ ହୁଏ ୧୯୮୪ ମସିହାର ଶେଷ ଭାଗରେ ଗୁଣୁପୁରରେ ।

ଅଳ୍ପ କିଛିଦିନ ଭିତରେ ସେ ଯେତେବେଳେ ମୋର ମାତୃଭାଷା ପ୍ରୀତି ଏବଂ ସାହିତ୍ୟକୃତି ସଂପର୍କରେ ଜାଣିଲେ ଏବଂ ମୁଁ ତାଙ୍କୁ ଜାଣିଲି ଜଣେ ସାହିତ୍ୟ-ସୁଧା-ପାନପ୍ରମତ୍ତ ଚିହ୍ନରା ଗ୍ରାହକ ଭାବରେ ଆମର ବନ୍ଧୁତ୍ୱ ଗାଢ଼ରୁ ଗାଢ଼ତର ହୋଇଗଲା । ଆମେ ଦୁହେଁ ହୋଇଗଲୁ ପରସ୍ପର ପ୍ରତି ଏକାନ୍ତ ଅନୁରକ୍ତ ଦୁଇ ଯାଆଁଳା ଭାଇ ପରି । ଜଣକୁ ଜ୍ୱର ହେଲେ ଅନ୍ୟ ଜଣକ ଦେହରେ ବି ତାତି ଭରିଯାଏ ।

ବଂଶଧାରା ସାହିତ୍ୟ ସମାଜ ପାଠାଗାରକୁ ମୁଁ ପ୍ରାୟ ଯାଉଥାଏ ପଢ଼ାପଢ଼ି କରିବାକୁ ଜଣେ ପାଠକ ଭାବରେ । କ୍ରମେ ପାଠାଗାରର ସଦସ୍ୟମାନଙ୍କ ସହିତ ମୋର ପରିଚୟ ହୁଏ ଏବଂ ମୁଁ ନିର୍ବାଚିତ ହୁଏ ସାହିତ୍ୟ ସମାଜର ସଭାପତି ଭାବରେ । ଶିବରାମ ବାବୁ ହୁଅନ୍ତି ଉପସଭାପତି । ଶିବରାମ ବାବୁଙ୍କର ସ୍ୱପ୍ନ ଅନେକ । ବଂଶଧାରା ସାହିତ୍ୟ ସମାଜକୁ ଓଡ଼ିଶାର ଏକ ପ୍ରମୁଖ ଏବଂ ଅଗ୍ରଣୀ ଅନୁଷ୍ଠାନ ଭାବରେ ଗଢ଼ି ତୋଳିବାକୁ ତାଙ୍କର ଇଚ୍ଛା ଥିଲା । କଥା ପ୍ରସଙ୍ଗରେ ସେ ତାଙ୍କର ମନୋଭାବ ପ୍ରକାଶ କରନ୍ତି ଏକ ବନ୍ଧୁମିଳନରେ ସେହି ପାଠାଗାରଟିର ଛୋଟ କୋଠରୀଟି ଭିତରେ । ପ୍ରସ୍ତାବ ସ୍ୱାଗତ ଯୋଗ୍ୟ ନିଶ୍ଚୟ । ଉପସ୍ଥିତ ସମସ୍ତ ବନ୍ଧୁ ଆନନ୍ଦର ସହିତ ତାଙ୍କୁ ସମର୍ଥନ କରି ଶୀଘ୍ର ସେ ଦିଗରେ କାର୍ଯ୍ୟାରମ୍ଭ କରିବାକୁ ମତ ଦିଅନ୍ତି । ବଂଶଧାରା ସାହିତ୍ୟ ସମାଜ ତରଫରୁ ଓଡ଼ିଶାର ଖ୍ୟାତନାମା ସାହିତ୍ୟ ରଥୀମାନଙ୍କର ଏକ ସମ୍ମେଳନ ହେବ ଗୁଣୁପୁର ସହରରେ । ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାର ଲୋକେ ସେମାନଙ୍କ ମୁହଁରୁ ଶୁଣିବେ ସୁଚିନ୍ତିତ ଭାଷଣ । ଆନ୍ଧ୍ରସୀମା

ସଂଲଗ୍ନ ସୁଦୂର ଗୁଣୁପୁର ସହରରେ ସୃଷ୍ଟିହେବ ଏକ ରସମୟ ପରିବେଶ । ଆଃ, ପ୍ରସ୍ତାବଟି ଶୁଣି ସନ୍ନିହିତ ବନ୍ଧୁମାନଙ୍କ ସହିତ ମୁଁ ଉଲ୍ଲସିତ ହୋଇ ଉଠିଲି । ତେବେ ଏପରି ଏକ ବିରାଟ ଆୟୋଜନ ପାଇଁ ଅର୍ଥ ଆସିବ କେଉଁଠୁ ? ସାହିତ୍ୟ ସମାଜର ଆର୍ଥିକ ଅବସ୍ଥାତ ଅତ୍ୟନ୍ତ ଶୋଚନୀୟ । ଅର୍ଥ କେଉଁଠୁ ଆସିବ ? ଏ ପ୍ରଶ୍ନର ଉତ୍ତରରେ ଶିବରାମବାବୁ କହିଥିଲେ, ବଂଶଧାରା ସାହିତ୍ୟ ସମାଜର ସାହିତ୍ୟ ସାଧକ ଏବଂ ସରକାରୀ ଅଧିକାରୀଙ୍କ ସହିତ ତାଙ୍କର ସଦ୍‌ଭାବ ଅଛି । ସାଧାରଣ ଲୋକଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ଅଛି । ସମ୍ମାନ ଅଛି । ସମସ୍ତଙ୍କ ସହଯୋଗରେ ଏ କାର୍ଯ୍ୟଟି ସେ କରିଦେଇ ପାରିବେ ବୋଲି ତାଙ୍କର ବିଶ୍ୱାସ । ତାଙ୍କର ଏ କଥା ଶୁଣି ମୁଁ ଉଚ୍ଚାଟିତ ହୋଇ ପଡ଼ିଲି । ମୋର ଧାରଣା ହେଲା । ସେ ଯାହା କହୁଚନ୍ତି ଅସତ୍ୟ ନୁହେ । ସାଧୁ ଉଦ୍ୟମ କେବେ ଅସଫଳ ହୁଏନାହିଁ । ସରକାରୀ ଅଧିକାରୀମାନଙ୍କ ସହଯୋଗ ଏବଂ ଜନ ସାଧାରଣର ସଦିଚ୍ଛା ମିଳିଲେ ସମ୍ମେଳନ କାର୍ଯ୍ୟ ସୁରୁଖୁରୁରେ ହୋଇ ଯାଇପାରିବ ।

ସାହିତ୍ୟ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାଶୀଳ ଶିବରାମ ବାବୁଙ୍କର ଓଡ଼ିଶାର ବହୁ ସାହିତ୍ୟ ସାଧକଙ୍କ ସହିତ ଥାଏ ଘନିଷ୍ଠ ସମ୍ପର୍କ । ସ୍ୱତଃପ୍ରବୃତ୍ତ ଭାବରେ ସାହିତ୍ୟର ବିଭିନ୍ନ ବିଭାଗରେ ନାମାର୍ଜନ କରିଥିବା ସାହତ୍ୟିକମାନଙ୍କୁ ନିମନ୍ତ୍ରଣ କରି ଆଣିବାର ଦାୟିତ୍ୱ ସେ ବହନ କରିଥିଲେ ।

ସାହିତ୍ୟପ୍ରାଣ ଶିବରାମ ବାବୁଙ୍କର ସକାଳ ହୁଏ ସାହିତ୍ୟରେ । ସଂଧ୍ୟାହୁଏ ତାଙ୍କର ସାହିତ୍ୟସଂଧ୍ୟା, ରାତ୍ରି ସାହିତ୍ୟରାତ୍ରି । ନିଦରେ ଶୋଇପଡ଼ିଲେ ସାହିତ୍ୟ ସହିତ ହୁଏ ତାଙ୍କର ସ୍ୱପ୍ନରେ ବାର୍ତ୍ତାଳାପ । ସାହିତ୍ୟ ସମ୍ମେଳନର ବାର୍ତ୍ତାନେଇ ସେ ଯାଇ ପହଞ୍ଚିଥିଲେ ଓଡ଼ିଶାର ପ୍ରଖ୍ୟାତ ଶିଳ୍ପପତି ବଂଶୀଧର ପଣ୍ଡାଙ୍କ ସାହିତ୍ୟ ଅନୁରକ୍ତା ପତ୍ନୀ ଇଲାଦେବୀଙ୍କ ପାଖରେ । ଉପାନ୍ତ ଅଞ୍ଚଳ ଗୁଣୁପୁରରେ ସାହିତ୍ୟ ସଭାଟାଏ ହେବ ଶୁଣିବା ମାତ୍ରେ ଇଲାଦେବୀ ଅତି ଆଗ୍ରହରେ ଅତିଥିମାନଙ୍କୁ ଭୁବନେଶ୍ୱରରୁ ଗୁଣୁପୁର ନେଇ ପହଞ୍ଚାଇ ଦେବାର ବ୍ୟବସ୍ଥା କରିଦେବାପାଇଁ ରାଜି ହୋଇ ଯାଇଥିଲେ । ଏପରି ଭାବରେ ଗୋଟାଏ ସମସ୍ୟାର ସମାଧାନ ଶିବରାମଙ୍କ ଚେଷ୍ଟାରେ ଖୁବ ସହଜରେ ହୋଇ ଯାଇଥିଲା ।

ସେତେବେଳେ ଗୁଣୁପୁରରେ ସବ କଲେକ୍ଟର ଥାଆନ୍ତି ଅଶୋକ କୁମାର ଡାଲ୍‌ଭାଇ । ସେ ମହାଶୟ ଥିଲେ ଅତ୍ୟନ୍ତ ଅମାୟିକ ସହଯୋଗ ମନୋଭାବାପନ୍ନ ଉତ୍ସାହୀ ଯୁବ ଆଇ.ଏ.ଏସ୍. ଅଫିସର । ଓଡ଼ିଆ ଭାଷାର ପ୍ରତିଷ୍ଠିତ କବି, ଗାଳ୍ପିକ ଏବଂ ଅନ୍ୟାନ୍ୟ କ୍ଷେତ୍ରରେ କଲମ ଚାଳନା କରୁଥିବା ସାହିତ୍ୟ ସାଧକମାନଙ୍କର ସମ୍ମେଳନ ଗୁଣୁପୁର ପରି ଏକ ଉପାନ୍ତ ଅଞ୍ଚଳରେ ହେବାକୁ ଯାଉଥିବା ଖବର ତାଙ୍କୁ ଯେମିତି ଉଲ୍ଲସିତ କରିଦେଲା । ସେ କହିଥିଲେ ଆଗେଇ ଯାଆନ୍ତୁ ମୁଁ ଆପଣମାନଙ୍କ ପଛରେ ଅଛି । ପ୍ରାୟ ସମସ୍ତ ଉପଖଣ୍ଡୀୟ ଅଧିକାରୀଙ୍କ ସହିତ ମୋର ଥାଏ ସଦ୍‌ଭାବ, ବନ୍ଧୁଭାବ । ଆମେ ଯାହା ପାଖକୁ ଯେଉଁଠିକି ଯାଉଛୁ ସବୁଠୁ, ସମସ୍ତଙ୍କଠାରୁ ସହଯୋଗର ପ୍ରତିଶ୍ରୁତି । ସେ କେତେଦିନ ସବୁକିଛି ଭୁଲିଯାଇ ଶିବରାମବାବୁ ଓ ମୁଁ ଲାଗି ଯାଇଥିଲୁ ସାହିତ୍ୟ ସଭା କାର୍ଯ୍ୟରେ, ବଂଶଧାରା ସାହିତ୍ୟ ସମାଜର ସଦସ୍ୟମାନେ ଏବଂ ନବ ନିର୍ବାଚିତ ଯୁବ

ସଂପାଦକ ପୂର୍ଣ୍ଣଚନ୍ଦ୍ର ସାହୁ ବେଶ୍ ଉତ୍ସାହର ସହ ପଦେ ପଦେ ଆମକୁ ସାହାଯ୍ୟ କରିଥିଲେ । ସବୁଆଡୁ ସହଯୋଗର ହାତବି ଲମ୍ବି ଆସିଥିଲା ଆମ ଆଡ଼କୁ ।

ବିପୁଳ ଜନ ସମାବେଶ, ଉତ୍ସାହ ଏବଂ ଉଦ୍ଦୀପନା ମଧ୍ୟରେ ଦୁଇଦିନ ଧରି ଅନୁଷ୍ଠିତ ହୋଇଥିଲା ସେ ରସୋତ୍ସବ । ୧୯୮୫-୮୬ରେ ହୋଇଥିବା ସେ ସାହିତ୍ୟ ସଭାର ସ୍ମୃତି ଏବେବି ଗୁଣ୍ଡୁପୁରବାସୀଙ୍କୁ ଉଚ୍ଚକିତ କରିଦିଏ । ତେବେ ଭୁଲିପାରିନାହିଁ କରିତ୍କର୍ମା ବନ୍ଧୁ ଶିବରାମ ପାତ୍ରଙ୍କ ଯାଦୁକରି ପ୍ରଭାବରେ ଗୁଣ୍ଡୁପୁର ପରି ଏକ ଉପାନ୍ତ ଉପଖଣ୍ଡରେ ସଫଳତାର ସହିତ ଆୟୋଜିତ ହୋଇ ପାରିଥିବା ସେ ସାହିତ୍ୟ ସଭାର ମଧୁର ସ୍ମୃତିକୁ, ବନ୍ଧୁ ଶିବରାମଙ୍କ ହସହସ ମୁହଁଟିକୁ ।

ଶିବରାମ ଏକ୍ସପ୍ରେସ୍ ଗାଡ଼ି । ପଛରେ ଆସି ଆଗରେ ଚାଲିଗଲେ । ତେବେ ସାହିତ୍ୟ ପାଇଁ ଏତେ କିଛି କରିଥିବା, କରିପାରିଥିବା ସେ ସାହିତ୍ୟଗତ ପ୍ରାଣ, କାବ୍ୟାମୋଦୀ ମଣିଷଟା ସେଠିବି କ'ଣ ସାହିତ୍ୟ କରୁଥିବେ ? ଦିବଂଗତ ସାହିତ୍ୟିକ ବନ୍ଧୁମାନଙ୍କୁ ନେଇ ସେଠି କଣ ସେ କରୁଥିବେ ସାହିତ୍ୟ ସଭାର ଆୟୋଜନ ? ତାଙ୍କର ସ୍ମୃତି କିନ୍ତୁ ଅମଳିନ ରହିଥିବ ତାଙ୍କୁ ଝୁରି ହେଉଥିବା ଲୋକମାନେ ସେ ରାଜ୍ୟକୁ ଯାଇ ତାଙ୍କ ସହ ମିଳିତ ହେବାଯାଏଁ ।

ପାତ୍ରପଡ଼ା,ଭୁବନେଶ୍ୱର-୧୯

## ବୀର ଓଡ଼ିଆ

ଡକ୍ଟର ଲମ୍ବୋଧର ସାହୁ

୧୯୯୧ ମସିହାର ପ୍ରଥମାର୍ଦ୍ଧ, ମୁଁ ଥାଏ ଜୟପୁର ବିକ୍ରମଦେବ ମହାବିଦ୍ୟାଳୟରେ । ସେଠାରେ ଅଗ୍ରଜ-ପ୍ରତିମ ବନ୍ଧୁ ଡ଼: କିଶୋର ଦାସଙ୍କ ସହିତ ତାଙ୍କ ବାସଭବନରେ ଆଳାପ କରୁ କରୁ ହଠାତ୍ ପ୍ରଚଣ୍ଡ ବାତ୍ୟା ପରି ଆଜାନୁଲମ୍ବିତ ଧୂସର-କାମିଜ-ପରିହିତ ଜଣେ ଶ୍ମଶ୍ରୁଧାରୀ ବ୍ୟକ୍ତି ଉପସ୍ଥିତ ହେଲେ । ବନ୍ଧୁ କିଶୋର ଦାସ ତାଙ୍କ ସହିତ ମୋତେ ପରିଚିତ କରାଇ ଦେଇ କହିଲେ, ''ଏହେଉଛନ୍ତି ଅଧ୍ୟାପକ ଶିବରାମ ପାତ୍ର । ନବରଙ୍ଗପୁର ମହାବିଦ୍ୟାଳୟରେ ଅଛନ୍ତି । ମୋର ପୁରୁଣା ବନ୍ଧୁ ।''

ସେଦିନ ଶିବରାମ ସାର୍ ଆମ ଦୁହିଁଙ୍କୁ ''ବୀର ଓଡ଼ିଆ'' ବୋଲି ସମ୍ବୋଧନ କରିଥିଲେ । ଏ ପ୍ରକାର ସମ୍ବୋଧନର ତାତ୍ପର୍ଯ୍ୟ ମୁଁ ସଙ୍ଗେ ସଙ୍ଗେ ବୁଝି ନପାରିବାରୁ କିଶୋର ବାବୁ କହିଲେ, ''ଓଡ଼ିଆ ଜାତିର ବୀରତ୍ୱପୂର୍ଣ୍ଣ ଇତିହାସ ସମ୍ବନ୍ଧରେ ଅବଗତ ହୋଇ ସେ ଆମକୁ ବୀର ଓଡ଼ିଆ କହି ଗୌରବାନ୍ୱିତ କରିବାକୁ ଚାହୁଁଛନ୍ତି । ଶିବରାମ ସାର୍ଙ୍କ ଏ ପ୍ରକାର ସମ୍ଭାଷଣ ଅବିସ୍ମରଣୀୟ ସ୍ମୃତିରେ ଯେ ପରିଣତ ହେବ- ଜାଣି ନଥିଲି । ସେଇ ଦିନଠୁ କିଶୋର ବାବୁ ଏବଂ ମୁଁ ତାଙ୍କୁ ବୀର ଓଡ଼ିଆ ବୋଲି ଶ୍ରଦ୍ଧା ଓ ସମ୍ମାନରେ ସମ୍ବୋଧନ କରିଥାଉ ।

କିଛି ବର୍ଷ ପରେ ମୁଁ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟକୁ ବଦଳି ହୋଇ ଆସିଲି । ହଠାତ୍ ଦିନେ ଭୁବନେଶ୍ୱରରେ ବୀର ଓଡ଼ିଆଙ୍କୁ ଭେଟି ହଜିଲା ଅତୀତକୁ ପାଇଲାପରି ମୋତେ ଲାଗିଲା । ଭୁବନେଶ୍ୱରସ୍ଥ ଏକାମ୍ର ମହାବିଦ୍ୟାଳୟକୁ ସ୍ଥାନାନ୍ତରିତ ହୋଇ ଆସିଲା

ପରେ ଆମେ ପରସ୍ପରକୁ ବହୁଥର ଭେଟିଛୁ । ଅନେକ ସନ୍ଧ୍ୟା ଆମର ଅତିବାହିତ ହୋଇଛି କେଉଁ ସାହିତ୍ୟ-ଆସରରେ କିମ୍ବା ନିଜ ନିବାସରେ ଅଥବା ଅଦୂର କେଉଁ ଏକ ନଦୀ-ତୀରରେ । ଖୋଲା ପୁସ୍ତକ ପରି ସେ । ଜୀବନର ଅନେକ ଅନୁଭୂତି ମୋ ପାଖରେ ସେ ବଖାଣିଛନ୍ତି । ମୋ ସୁଖ-ଦୁଃଖରେ ମଧ୍ୟ ସହାନୁଭୂତି ପ୍ରକାଶ କରିଛନ୍ତି ।

ଦିନେ ତାଙ୍କ ସହିତ ଆଳାପ କରୁ କରୁ ମୁଁ ପଚାରିଲି, 'ଆପଣଙ୍କର ହୃଦୟ ଏତେ କୋମଳ, ଅଥଚ କଣ୍ଠସ୍ୱର କର୍କଶ ହେଲା କିପରି ?' ହସିହସି ଉତ୍ତର ଦେଇଥିଲେ ଅକପଟ ଭାବରେ । ନବରଙ୍ଗପୁରରେ ଥିଲାବେଳେ ଏକ ଭଲ୍ଲୁକର ଆକ୍ରମଣରୁ ଜଣକୁ ରକ୍ଷା କରିବାକୁ ଯାଇ କିପରି ସେ ସାହସିକତା ପ୍ରଦର୍ଶନ କରିଥିଲେ ଏବଂ ଭଲ୍ଲୁକଟି ଯେତେବେଳେ ତାଙ୍କୁ ମଧ୍ୟ ଆକ୍ରମଣ କରିବା ପାଇଁ ଅଗ୍ରସର ହେଲା, ସେତେବେଳେ ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଚିତ୍କାର କରିଥିଲେ । ସେହି ପ୍ରାଣରକ୍ଷାକାରୀ ଚିତ୍କାରରେ ଗଗନ ପବନ ପ୍ରକମ୍ପିତ ହୋଇଉଠିଲା ଏବଂ ଭୟରେ ଭଲ୍ଲୁକ ସେଠାରୁ କ୍ଷିପ୍ରଗତିରେ ପଳାୟନ କରିଥିଲା । ତା'ପରଠୁ ତାଙ୍କ କଣ୍ଠର ଏପରି ଅବସ୍ଥା !

ଯଥାର୍ଥରେ ସେ ହିଁ ବୀର ଓଡ଼ିଆ । ସେ ଆମ ଗହଣରେ ଆଉ ନାହାନ୍ତି - ଏକଥା ଭାବିବାକୁ କଷ୍ଟ ହେଉଛି । ବିଶ୍ୱାସ ହେଉନି-ଏକ ଜୀବନ୍ତ ଆଗ୍ନେୟଗିରି ହଠାତ୍ ସୁପ୍ତ ହୋଇଯାଇଛି କିପରି ?

କେଉଁଝର

## ଆମ ନାନା

ସୁଷମା ଜୈନ

ନୂଆ ନୂଆ ବାହା ହୋଇ ଅନୁଗୁଳରୁ ନବରଙ୍ଗପୁରକୁ ଆସିଥାଏ । ମୋ ପରିବାରଟି ସଂପୂର୍ଣ୍ଣ ସଂଘ ସଂସ୍କାରିତ ହେବା କାରଣରୁ ସରସ୍ୱତୀ ଶିଶୁମନ୍ଦିରର ମଧ୍ୟ ପ୍ରତ୍ୟେକ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ସହଯୋଗୀ ବୁହେ । ଥରେ ବିଦ୍ୟାଳୟର ବନବିହାର କାର୍ଯ୍ୟକ୍ରମରେ ନବରଙ୍ଗପୁର ପାଖ ଚଟାହାଣ୍ଡିକୁ ଯାଇଥାଏ । ଚଟାହାଣ୍ଡିରେ ଏକ ପ୍ରସିଦ୍ଧ ଶିବ ମନ୍ଦିର ଥିଲା । ମନ୍ଦିରର ପ୍ରାୟ ଦେଢ଼ କି.ମି. ଦୂରରେ ଏକ ପାହାଡ଼ ଦିଶୁଥାଏ । ଯାହାକୁ ଧାନ କ୍ଷେତ ଭିତର ଦେଇ ଯିବାକୁ ପଡ଼େ । ସେ ପାହାଡ଼ରେ କିଛି ପୁରୁଣା ଗୁମ୍ଫା ଓ ବିଭିନ୍ନପ୍ରକାର ଜଙ୍ଗଲି ଗଛ ଦେଖିବାକୁ ମିଳେ । ତେଣୁ ଭୋଜିଭାତପରେ ଅଭିଭାବକମାନେ ବିଲ ହିଡ଼ ଉପର ଦେଇ ଧାଡ଼ିରେ ପାହାଡ଼ ଦର୍ଶନ ପାଇଁ ଗଲୁ । ଫେରିବା ସମୟରେ ମୋ ସାମନାରେ ସମସ୍ତଙ୍କଠାରୁ ଅଲଗା ଦିଶୁଥିବା ଲୋକଟିକୁ ଦେଖିଲି । ସେତେବେଳେ ମୋ ବୟସ ପ୍ରାୟ ୨୦/୨୧ । କୌତୁକିଆ ମନ । ଦେଖିଲି ଅଦ୍ଭୁତ ରୂପ । ମୁହଁରେ ଧଳା କଳା ହୋଇ ଦାଢ଼ି ବଢ଼ିଛି । ଖଦଡ଼ର ଲମ୍ବା କୁରତା ତଳେ ପାଇଜାମାଟିଏ । ପୁଣି କୁରତା ପକେଟରେ କେତେ ବଣୁଆ ଗଛର ଡାଳ ପଶିଛି । କାନ୍ଧରେ ଏକ କପଡ଼ାର ଖୋଳା ବେଗ୍‌ଟିଏ ଝୁଲୁଛି । ହାତରେ ମଧ୍ୟ ଅନେକ ବଣ ଫୁଲ ଥିବା ଡାଳ । ମନେ ମନେ ଭାବିଲି ଏ ଲୋକଟି ଏପରି ରୂପ କି ପାଇଁ ହୋଇଛି । ଲେଖିବାକୁ ଖରାପ ଲାଗୁଛି ସିନା, ସତରେ ସେଦିନ ସେ ଚମତ୍କାର ରୂପକୁ ଦେଖି

'ପାଗଳଟିଏ' କି ଭାବିଲି । ପରେ ପରେ ସମସ୍ତେ ଆସି ଗୋଟିଏ ଜାଗାରେ ବସିଲୁ । ସଂଘ ପଦ୍ଧତିରେ ବୌଦ୍ଧିକ କାର୍ଯ୍ୟକ୍ରମ ହେଲା । ମୁଁ ଯେତେବେଳେ ଦେଖିଲି ସାମନାରେ ସେହି ବ୍ୟକ୍ତି ଜଣକ ଚୌକି ଉପରେ ବସିଛନ୍ତି ମନରେ ଆହୁରି କୌତୂହଳ ହେଲା । ଅଳ୍ପ ସମୟ ପରେ ତାଙ୍କୁ ମୁଖ୍ୟ ବକ୍ତା ରୂପେ ମାର୍ଗଦର୍ଶନ ଦେବେ ବୋଲି ଅନୁରୋଧ କରାଗଲା । ଠିଆ ହୋଇ ତାଙ୍କର ମତବ୍ୟକ୍ତ କଲେ, ମୋ ଭିତରେ ଆଲୋଡ଼ନ ସୃଷ୍ଟି ହେଲା । ପରେ ପରେ ତାଙ୍କ ଆଡ଼କୁ ଏପରି ଟାଣି ହେଲି ଶେଷରେ ତାଙ୍କୁ ନାନା ବୋଲି ସମ୍ବୋଧନ କଲି, ତାଙ୍କର ଝିଅ, ବୋହୂ ରୂପେ ଏକ ନିବିଡ଼ ସଂପର୍କ କିମିତି ହୋଇଗଲା, ଜାଣି ପାରିଲି ନାହିଁ ।

ମୁଁ ରାଷ୍ଟ୍ର ସେବିକା ସମିତିର ଶାଖା ନବରଙ୍ଗପୁରରେ ଚଳାଏ । ଅଖିଳ ଭାରତୀୟ ସମ୍ମିଳନୀ ଦିଲ୍ଲୀରେ ଅନୁଷ୍ଠିତ ହେଉଥାଏ । ସେବିକାମାନଙ୍କୁ ନେଇ ଦିଲ୍ଲୀ ଯିବା କଥା । ମୋ ମନରେ ଅନେକ ଚିନ୍ତା । ସେ ଭିତରେ ନାନାଙ୍କ ସହିତ ଦେଖାହେଲା,ସହଜରେ କଥାଟିକୁ ସମାଧାନ କଲେ ଏବଂ ମୋ ସହିତ ଝିଅ ଚିତ୍ରାକୁ ମଧ ପଠାଇବେ ବୋଲି ସାହସ ଦେଲେ । ତାଙ୍କ ପରିଚିତମାନଙ୍କୁ ମଧ ଅନୁରୋଧ କଲେ । ଯେଉଁ କାରଣରୁ ଆମେ ୧୭ଜଣ ଦିଲ୍ଲୀ ଯାଇ ପାରିଥିଲୁ । ଫେରିବାପରେ ସେ ଆମକୁ ଯେତେବେଳେ ଦେଖିଲେ 'ଚଣ୍ଡୀ ବାହିନୀ' ଆସିଲେ ବୋଲି ଡାକିଲେ । ହସହସ ତାଙ୍କର ସେ ମୁଖଭଙ୍ଗୀ ଓ ସରଳ ସ୍ନେହପୂର୍ଣ୍ଣବାକ୍ୟ ଆଜି ମଧ ମୋତେ ଅନେକ କାମ କରିବାରେ ପ୍ରେରଣା ଦେଇଥାଏ ।

ପରିବାର ବିଷୟରେ କ'ଣ କହିବି ? ମୁଁ ଯେତେବେଳେ ପ୍ରଥମଥର ଘରକୁ ଗଲି, ଆଶ୍ଚର୍ଯ୍ୟ ! ସବୁଆଡ଼େ ବହି । ପ୍ରତ୍ୟେକ ଆଲମାରୀ ଥାକ ବହିରେ ପରିପୂର୍ଣ୍ଣ । ପୁଣି କହିଲେ କ'ଣ ନା ଦୁଇଟି ଆଲମାରୀ ତିଆରି କରିବାର ଅଛି । ପଛପାଖ ବାଡ଼ିକୁ ଗଲି, ଦେଖିଲି ଅନେକ ପ୍ରକାର ଗଛ । ଯାହା ଆମେ ରାସ୍ତାରେ ଦେଖିଲେ ଆଡ଼େଇ ଚାଲିଯାଉ, ନାନାଙ୍କ ବାଡ଼ିରେ ତାର ଭିନ୍ନ ରୂପ, ଯେପରି ଗଛଟି କହୁଛି ଦେଖ ଏ ହେଉଛି ମୋର ଠିକ୍ ଜାଗା । ସେ ମୋତେ ଖୁସିରେ ଗଛ ଦେଲେ ଯାହାକୁ ମୁଁ ଆଜି ପର୍ଯ୍ୟନ୍ତ ସଜାଡ଼ି ରଖିଛି । ହଁ, ଏ ପ୍ରସଙ୍ଗରେ ଅସଲ କଥା ଭୁଲିଯାଉଛି । ତାଙ୍କ ଜୀବନରେ ସଂଗ୍ରହ କ୍ଷମତା ବିଶେଷ ରୂପରେ ଫୁଟୁଥିଲା । ସାଧାରଣରେ ଆମେ ଯାହାକୁ ବ୍ୟବହାର ନଜାଣି ଫୋପାଡ଼ି ଦେଉ, ନାନା ତାକୁ ଏତେ ମହତ୍ତ୍ୱ ଦିଅନ୍ତି ତାଙ୍କ ସଂସ୍ପର୍ଶରେ ଆସିବା ମଣିଷମାନେ ନିଶ୍ଚୟ ଦେଖିଥିବେ ।

ଅନେକ ବର୍ଷ ତାଙ୍କ ସହିତ କଟାଇଲି ଘଟଣା କ୍ରମରେ ବହୁତ କିଛି ଶିଖିବାର ସୁଯୋଗ ପାଇଥିଲି । ଯେତେବେଳେ ସେ ନବରଙ୍ଗପୁର ଛାଡ଼ିଗଲେ ମୋତେ ଭିତରଟା ଖାଲି ଖାଲି ଲାଗିଲା । ଅକୁହା ଦୁଃଖକୁ ମାରି ହସି ହସି ତାଙ୍କୁ ବିଦାୟ ଦେଲି ।

ଏ ତ ଗଲା ମୋର ବ୍ୟକ୍ତିଗତ କଥା । ନବରଙ୍ଗପୁରର ମୁଁ ଜଣେ ନୁହେଁ ଆଜି ପ୍ରତ୍ୟେକ ସ୍ତରର ବ୍ୟକ୍ତି ତାଙ୍କୁ ସ୍ମରଣ କରୁଛନ୍ତି । ତାଙ୍କର ଜୀବନ ଶୈଳୀ ବ୍ୟବହାର, ବିଜ୍ଞତା ଯୋଗୁଁ ସେ ସମସ୍ତଙ୍କୁ ବାନ୍ଧି ରଖିଥିଲେ । ଏଠାକାର ପ୍ରତ୍ୟେକ ସାମାଜିକ, ଧାର୍ମିକ କାର୍ଯ୍ୟକ୍ରମର ସଂଯୋଜକ ନାନା କହିଲେ ଅତ୍ୟୁକ୍ତି ହେବନାହିଁ । ସେ ନବରଙ୍ଗପୁର ଜନଶିକ୍ଷା ସମିତିର ସଂଯୋଜକ ଥିଲେ । ଏହି ସମିତି ମାଧମରେ ନବରଙ୍ଗପୁରରେ ଅନେକ ବଡ଼ ବଡ଼ ସାଧୁ ମହାତ୍ମାଙ୍କର ପ୍ରବଚନର କାର୍ଯ୍ୟକ୍ରମ 'ପ୍ରଜ୍ଞା ମିଳନ' ସଫଳ ହୋଇଥିଲା ।

ପ୍ରକୃତରେ ବ୍ୟବସାୟ ହେଉଛି ତାଙ୍କର ଅଧ୍ୟାପନା । କିନ୍ତୁ ସମାଜରେ ହେଉଥିବା ପ୍ରତ୍ୟେକ ସାମାଜିକ କାର୍ଯ୍ୟରେ ସେ ଉତ୍ସାହର ସହିତ ଭାଗ ନେଉଥିଲେ । ଯେତେବେଳେ ଜୈନମୁନି ଗୁଲାବଚନ୍ଦ ନିର୍ମୋହୀ ନବରଙ୍ଗପୁରରେ ପଦାର୍ପଣ କଲେ, ନିର୍ମୋହୀଙ୍କ କାର୍ଯ୍ୟକ୍ରମରେ ଭାଗନେବା ସହିତ କାର୍ଯ୍ୟକ୍ରମକୁ ସଫଳ କରାଇବାରେ ନାନାଙ୍କର ବ୍ୟକ୍ତିଗତ ପ୍ରୟାସ ହିଁ ରହିଥିଲା । ନବରଙ୍ଗପୁର ନଗରରେ ରାଷ୍ଟ୍ରୀୟ ବିଚାର ଧାରାର ସଂଗଠନ,ସରସ୍ୱତୀ ଶିଶୁମନ୍ଦିର, ବିଶ୍ୱହିନ୍ଦୁ ପରିଷଦ, ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ, ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ, ଇତିହାସ ପୁନର୍ଲେଖନ ସମିତି, ସାହିତ୍ୟ ସଂସଦ ଆଦିରେ ତାଙ୍କର ପ୍ରତ୍ୟକ୍ଷ ଭୂମିକା ଥିଲା ।

ଥରେ 'ମହାବୀର ଜୟନ୍ତୀ' ରେ ସେ ଜୈନ ସଂପ୍ରଦାୟର ପୁରୁଣା ଇତିହାସ, ଯାହାକି ନବରଙ୍ଗପୁରର ଆଖପାଖ ପାହାଡ଼, ଜଙ୍ଗଲ, ଗାଁରୁ ସଂଗୃହୀତ, ତାହାର ସ୍ପଷ୍ଟ ରୂପ Vidio cassate ମାଧ୍ୟମରେ ଦେଖାଇଥିଲେ । ଯାହା ସେତେବେଳେ ଉପସ୍ଥିତ ଜୈନ ସାଧୁ ଏବଂ ସମସ୍ତ ସଂପ୍ରଦାୟର ବ୍ୟକ୍ତି ବିଶେଷଙ୍କୁ ଆଶ୍ଚର୍ଯ୍ୟ କରିଥିଲା ।

ଆମର ନାନା ଯାହାଙ୍କୁ ନବରଙ୍ଗପୁରରେ ସମସ୍ତେ ଗୋପବନ୍ଧୁ ବୋଲି ହିଁ ଜାଣିଥିଲେ । ସେ ମହତ୍ ଆତ୍ମା ଆଜି ପ୍ରତ୍ୟକ୍ଷ ରୂପେ ନାହାନ୍ତି କିନ୍ତୁ ତାଙ୍କ ଜୀବନକାଳରେ ଅର୍ଜିଥିବା ଅଗାଧ ସମ୍ପତ୍ତିକୁ ଆମେ ଯେ ସମସ୍ତେ ଉପଭୋଗ କରୁଛୁ ଏହା ପ୍ରତି ମୁହୂର୍ତ୍ତରେ ଆମକୁ ଅନୁଭବ କରାଉଛି । କରୁଥିବୁ ମଧ---

କୈଳାଶ ଫେସନ୍ ହାଉସ୍, ନବରଙ୍ଗପୁର

## ସେ ଏବେ 'ଅୟଂ ଆତ୍ମା ବ୍ରହ୍ମ' ବୋଲି ନିଜକୁ ଚିହ୍ନୁଛନ୍ତି

ଡକ୍ଟର ହୃଷୀକେଶ ପଣ୍ଡା

ଶାବର ଶ୍ରୀକ୍ଷେତ୍ର କୋରାପୁଟର 'ସଭା' ସାହିତ୍ୟ ସଂସଦ ପକ୍ଷରୁ ରାଜ୍ୟସ୍ତରୀୟ ବିଷୁବମିଳନ'ର ଆୟୋଜନ ହୋଇଥାଏ ୨୦୦୪ର ବିଷୁବ ସଂକ୍ରାନ୍ତିରେ । ସଭାପତି କବି ଜଳଧର ସ୍ୱାଇଁ ମୋତେ ଆମନ୍ତ୍ରଣ କରି ଅତିଥି ଆସନରେ ବସାଇଥାନ୍ତି, ସେ ସଭାରେ ଅନ୍ୟତମ ଅତିଥି ଥାନ୍ତି ବଂଧୁ ଅଧ୍ୟାପକ ଶିବରାମ ପାତ୍ର ।

ସେଦିନ ସଭାରେ ଶିବରାମ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟର ସଂକଟ ଓ ସାଂଗଠନିକ ଉଦ୍ୟମରେ ତା'ର ସମାଧାନ ପାଇଁ ଅତ୍ୟନ୍ତ ଭାବାବେଗର ସହିତ ଆହ୍ୱାନ ଦେଲେ ଏ ଦିଗରେ ଆକାଶବାଣୀ ମାଧ୍ୟମରେ ମୋର ଭୂମିକାକୁ ମଧ ଉଚ୍ଚ ପ୍ରଶଂସା କଲେ । ତାଙ୍କର ତଥାକଥିତ ଚଟୁଳତାପୂର୍ଣ୍ଣ ବକ୍ତବ୍ୟ, ଆନ୍ତରିକତା ପୂର୍ଣ୍ଣ ମତ ଓ ମନ୍ତବ୍ୟ ତଥା ହାସ ପରିହାସ ସହିତ ମୁଁ ଦୀର୍ଘକାଳରୁ ନିବିଡ଼ ଭାବରେ ପରିଚିତ ।

ବୋଧହୁଏ ମୃତ୍ୟୁ ଚେତନାଟି ତାଂକ ମନତଳେ ବହୁ ଦିନରୁ ରହିଥିଲା, ସେଥିପାଇଁ ସୁରେନ୍ଦ୍ର ମହାନ୍ତିଙ୍କ ପଥ ଓ ପୃଥିବୀରୁ ମୃତ୍ୟୁଚେତନା ସମ୍ବଳିତ କବିତାଟିଏ ତାଂକ ସଂପାଦିତ 'ସୁରେନ୍ଦ୍ର ବିଚାର ମଞ୍ଜୁଷା' ପୁସ୍ତକରେ ପ୍ରଥମେ ଉତ୍ସର୍ଗ ପୃଷ୍ଠରେ ସ୍ଥାନିତ କରିଥିଲେ ।

"ଆରେ ପାନ୍ଥ !
ତୁ କ୍ଳାନ୍ତ ହୋଇ ବସି ପଡ଼ିଲେ
କ'ଣ ରାସ୍ତାକୁ ଫାଂକି ଦେଇପାରିବୁ ?
ଯେତେବେଳେ ଜୀବନର
ଏଇ ନାଲି ସଡ଼କରେ ଥରେ
ବାହାରି ପଡ଼ିଛୁ ଆଉ
ଫେରିବାର ଉପାୟ ନାହିଁ
ଯେଉଁଠି ଟଳି ପଡ଼ିବୁ
ସେଇଠି ତୋ ରାସ୍ତା ସରିଲା
ବ୍ୟସ୍ତ କାହିଁକି ?
ସବୁ ରାସ୍ତାର ଶେଷଥାଏ ।"

ବୋଧହୁଏ, ଜୀବନର ନାଲି ସଡ଼କରେ କେଉଁଠି ଟଳି ପଡ଼ିବାର ଶେଷ ଦୃଶ୍ୟଟିଏ ସେ ଦେଖି ଆସିଥିଲେ ମନଶ୍ଚକ୍ଷୁରେ, ତାହାହିଁ ତ ସେ ପ୍ରତ୍ୟକ୍ଷ କଲେ ନିଜ ଜୀବନରେ ।

ଶିବରାମଙ୍କ ସହିତ ସାରସ୍ୱତ ସାଧନା ମାଧ୍ୟମରେ ଆତ୍ମିକ ସଂପର୍କ ଥିଲା ବହୁଦିନରୁ । ୧୯୮୪ରେ କଟକରୁ ବଦଳି ହୋଇ ମୁଁ ଯୋଗ ଦେଲି ଆକାଶବାଣୀ ଜୟପୁର କେନ୍ଦ୍ରରେ । ସେହିବର୍ଷ ଗୁଣପୁର ବଂଶଧାରା ସାହିତ୍ୟ ସଂସଦର ବାର୍ଷିକୋତ୍ସବରେ ଯୋଗଦେବା ପାଇଁ ଆମନ୍ତ୍ରଣ କଲେ ଅଧ୍ୟାପନା ଶିବରାମ । ବଂଶଧାରା ସାହିତ୍ୟ ସଭାରୁ ତାଙ୍କ ସହ ଦୀର୍ଘ କୋଡ଼ିଏ ବର୍ଷ ଧରି ଆମର ଅନାବିଳ ବନ୍ଧୁତ୍ୱ, ସଭା, ସମିତି, ସଂଗଠନ, ଆକାଶବାଣୀରେ ପ୍ରଚାର ପାସାର ଏସବୁ ବାହାରେ ନିରୁତା ବନ୍ଧୁତା ନେଇ ମୋ ପାଖକୁ ଭେଟିବାକୁ ଆସୁଥିଲେ ବଂଧୁ ଅଧ୍ୟାପକ ଶିବରାମ ।

ଇନ୍ଦ୍ରିୟାଧୀନ ଚଞ୍ଚଳତାହିଁ ଜୀବ ଧର୍ମ । ଇନ୍ଦ୍ରିୟାତୀତ ସ୍ଥିରତା ହିଁ ଶିବଧର୍ମ । ସେ ଜୀବ ଥିଲେ ଏବେ ଶିବ ହୋଇ ଅଛନ୍ତି, ଆତ୍ମା ଶରୀରତର ଥାଇ 'ଅୟଂ ଆତ୍ମା ବ୍ରହ୍ମ' ବୋଲି ଚିହ୍ନୁଛନ୍ତି ସେ ଇନ୍ଦ୍ରିୟମାନଙ୍କର ଅଧିକର୍ମ । ସ୍ଥିର, ମଂଗଳମୟ ଚିରନ୍ତନ ତେଣୁ ଶିବ । ସେହି ଆତ୍ମା ରାମ ନୟନାଭିରାମ ଅଭିରାମ ନାମ-ସେ ହିଁ ଶିବରାମ-ତେଣୁ ସେ କେବେ ସ୍ମୃତି ହେବେ ନାହିଁ ସ୍ମୃତିରେ ହଜିବେ ନାହିଁ । ସେ ଥିବେ ଚିର ବର୍ତ୍ତମାନ ।

ସହ କେନ୍ଦ୍ର ନିର୍ଦ୍ଦେଶକ, ଆକାଶବାଣୀ,,ସମ୍ବଲପୁର

## ଆପେ ଆପେ ଆଖିରୁ ଦୁଇଟୋପା ଲୁହ ଖସିପଡ଼ିଲା

କବିଚନ୍ଦନ ନିରଞ୍ଜନ ରଥ

ଖବର କାଗଜ ପୃଷ୍ଠାରୁ ଦେଖିଲି ଅଧ୍ୟାପକ ଶିବରାମ ପାତ୍ରଙ୍କ ଅକାଳ ବିୟୋଗ । ଆଖିରୁ ଦୁଇଟୋପା ଲୁହ ଖସିପଡ଼ିଲା । ଆତ୍ମାର ସଦ୍‌ଗତି ପାଇଁ ଦୁଇମିନିଟ୍ ନିରବ ପ୍ରାର୍ଥନା କଲି ।'ଗଞ୍ଜାମର ସାରସ୍ୱତ ସାଧକ' ବହି ଖଣ୍ଡିଏ କରିବା ପାଇଁ ବିଭିନ୍ନ ଲେଖକଙ୍କର ପରିଚୟ

ସଂଗ୍ରହ ନିମନ୍ତେ ବାଲିଗୁଡ଼ା, ପୁରୀ, କଟକ, ଭୁବନେଶ୍ୱର ସମେତ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ବୁଲିବାକୁ ପଡ଼ିଥିଲା । ଏହି ଅବସରରେ ଡଃ ଦୁର୍ଗାମାଧବ ନନ୍ଦଙ୍କୁ ସାକ୍ଷାତ୍ କରିଥିଲି ପୁରୀରେ । କିଛି ଲେଖକଙ୍କ ଠିକଣା ଦେଇ ସେ କହିଲେ, ରଥବାବୁ ! ଭୁବନେଶ୍ୱର ଗୌରୀ ନଗରରେ ଅଧ୍ୟାପକ ଶିବରାମ ପାତ୍ର ରହୁଛନ୍ତି । ତାଙ୍କର ଘର ଗଞ୍ଜାମ ଜିଲ୍ଲା ଗୁଣ୍ଡପଡ଼ା । ସେ ଜଣେ ବିଶିଷ୍ଟ ଲେଖକ, ନିରଳସ, ନିରାଡ଼ମ୍ବର, ନିର୍ଭୀକ, କର୍ମଯୋଗୀ । ତାଙ୍କୁ ସାକ୍ଷାତ କରନ୍ତୁ ।

ନନ୍ଦବାବୁ ଏତିକି କହିସାରିବା ପରେ ଶିବରାମ ବାବୁଙ୍କୁ ଫୋନ୍ କରି କହିଲେ ପାତ୍ରବାବୁ, ଗଞ୍ଜାମର ଅଧ୍ୟାପକ, ପ୍ରଫେସର ଯେଉଁ କାର୍ଯ୍ୟ କରିପାରିଲେ ନାହିଁ, ସେପରି ଗୋଟିଏ କଷ୍ଟସାଧ୍ୟ କାର୍ଯ୍ୟ, ରାଜସ୍ୱ ବିଭାଗରୁ ଅବସର ନେଇଥିବା ଜଣେ କର୍ମଚାରୀ ତଥା ଉଚ୍ଚକୋଟୀର ଲେଖକ ପ୍ରକାଶ କରିବାକୁ ଯାଉଛନ୍ତି । ତାଙ୍କୁ ଆପଣ ସାହାଯ୍ୟ କରିବେ ।

ଭୁବନେଶ୍ୱର ଅଭିମୁଖେ ବାହାରି ପଡ଼ିଲି, ଶିବରାମ ବାବୁଙ୍କୁ ସାକ୍ଷାତ୍ କରିବା ପାଇଁ । ଘର ପାଖରେ ପହଞ୍ଚି ଗେଟ୍ ଖୋଲିବା ଶବ୍ଦ ଶୁଣି ପାତ୍ରବାବୁ ଘର ଭିତର ପଟ ଝରକା ପାଖରେ ଥାଇ ପାଟି କଲେ, ସ୍ୱାଗତମ୍, ସ୍ୱାଗତମ୍ ରଥବାବୁ ସ୍ୱାଗତମ୍ । ଦୁହେଁ ଅତି କମ୍ ସମୟ ମଧ୍ୟରେ ବନ୍ଧୁତ୍ୱର ଦୃଢ଼ ବନ୍ଧନରେ ଛନ୍ଦି ହୋଇଗଲୁ । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଜୀବନୀ ଉପରେ ଆଧାରିତ ୫ଖଣ୍ଡ ବହି ମୋତେ ଦେଇ କହିଲେ, ପାଠ କଲା ପରେ ମତାମତ ଖଣ୍ଡିଏ ପଠାଇବେ । ଦାରୁଣ ଦୁଃଖର କଥା, ମତାମତ ପଠାଇବା ପୂର୍ବରୁ ସେ ଇହଧାମ ତ୍ୟାଗ କଲେ ।

ସେଦିନ ଉତ୍କଳ ଜନନୀର ଆଖିରୁ ମଧ୍ୟ ଲୁହ ଝରି ପଡ଼ିଥିବ ତା'ର କୋଳରୁ ଗୋଟିଏ ସୁପୁତ୍ରକୁ ହରାଇ ।

ରାମନଗର, ବ୍ରହ୍ମପୁର-୮

## ସ୍ମୃତିରେ ଶିବରାମ ସାର୍

ଡଃ ଅନିରୁଦ୍ଧ ପଣ୍ଡା

ସାର୍ ବୋଲଗଡ଼ର ପରମାନନ୍ଦ ମହାବିଦ୍ୟାଳୟରେ ୨୦/୭/୧୯୯୭ରେ ଯୋଗଦେଲେ । ସେହି ଦିନଠୁ ତାଙ୍କ ସହ ସ୍ନେହରେ ବାନ୍ଧି ହୋଇଥିଲୁ ପରିବାର ସହ । ବୋଲଗଡ଼ରେ କର୍ମମୟ ଜୀବନ ତାଙ୍କର ଦେଢ଼ବର୍ଷ । ସେହି ସମୟର ଅନୁଭୂତି ଅନେକ । ବର୍ତ୍ତମାନ ଆଖି ଆଗରେ ନାଚି ଉଠେ ।

ତାଙ୍କୁ ମୁଁ ଜାଣେ, ସେ ଜଣେ କର୍ମଠ, ସାହିତ୍ୟ ଅନୁରାଗୀ, ସତ୍ୟବାଦୀ, ବନ୍ଧୁବତ୍ସଳ ବ୍ୟକ୍ତି ଭାବରେ । ସୁବିଧା, ଅସୁବିଧା ସମୟରେ ସେ ଉପଦେଶ ଦିଅନ୍ତି । ନିଜେ ଗୁଡ଼ାଏ ବହିପତ୍ର ସାଇତି ରଖିଥାନ୍ତି ଏବଂ ସେ ଦିଗରେ ଅନ୍ୟମାନଙ୍କୁ ଉତ୍ସାହିତ କରିଥାନ୍ତି । ଜଣେ ଖାଣ୍ଟି ଓଡ଼ିଆ ଭାବରେ ପରିଚିତ । ଓଡ଼ିଆ ଭାଷା, ସଂସ୍କୃତିର ବିକାଶ ପାଇଁ ସଦାବେଳେ କାମ କରୁଥିଲେ । ଏହି କଲେଜରେ ଥିବା ସମୟରେ ଓଡ଼ିଶାର ବରପୁତ୍ରମାନଙ୍କର ତୈଳ ଚିତ୍ର କମନ୍‌ରୁମ୍‌ରେ ରଖିବାର ବ୍ୟବସ୍ଥା କରିଥିଲେ । ଜାତୀୟ ଦିବସମାନଙ୍କରେ ନୂଆ ନୂଆ କାର୍ଯ୍ୟକ୍ରମ ହାତକୁ ନେଉଥିଲେ । ବର୍ତ୍ତମାନ ସୁଦ୍ଧା ତାଙ୍କ ହାତଲଗା ଫୁଲଗଛ ଏଠି

ଦଣ୍ଡାୟମାନ । ତାଙ୍କ ସହ ଦେଖା ହେଲେ ଜଣେ ଆପଣାର ଲୋକକୁ ଦେଖିବା ଭଳି ଲାଗେ । ଅଳ୍ପ ସମୟ ମଧ୍ୟରେ ଅନେକ କିଛି ପଚାରି ବୁଝନ୍ତି । ତାଙ୍କ ସାଙ୍ଗରେ ମିଶି ପରିବା କିଣିବା, ଖାଇବା ଇତ୍ୟାଦି ମନେ ପଡ଼ିଯାଉଛି । ଚାକିରୀରୁ ଅବସର ନେବାପରେ ଅନେକ ଯୋଜନା ଥିଲା ତାଙ୍କର । ଆଜି ସାର୍‌ଙ୍କୁ ହରାଇ ଆମେ ମ୍ରିୟମାଣ ।

ପରମାନନ୍ଦ ମହାବିଦ୍ୟାଳୟ,,ବୋଇଗଡ଼

## ଶିବରାମ ଭାଇଙ୍କ ସ୍ମୃତିରେ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ଶ୍ରୀମତୀ କୁମୁଦିନୀ ପଣ୍ଡା (ବ୍ରହ୍ମା)

ଶିବରାମ ଭାଇ ଚାଲିଯିବାର କିଛିଦିନ ପୂର୍ବରୁ ସସ୍ତ୍ରୀକ ଆମ ଘରକୁ ଆସିଥିଲେ ଶିବଲକ୍ଷ୍ମୀ ମୋର ସହକର୍ମୀ ହେଲେ ମଧ୍ୟ ମୁଁ ତାଙ୍କୁ ମୋର ସାନଭଉଣୀ ପରି ଭାବେ ଆଉ ସ୍ନେହରେ ଡାକେ 'ଶିବା' ।

ସେ ଦିନ ସେମାନଙ୍କ ସହ ମୁଁ ଓ ମୋ ସ୍ୱାମୀ ଶରତଚନ୍ଦ୍ର ପଣ୍ଡା ଗପୁ ଗପୁ କେତେବେଳେ ଯେ ତିନିଘଣ୍ଟା ବିତିଗଲା ଜାଣି ହେଲାନି । ପାରଳାଖେମୁଣ୍ଡି, ଗୁଣୁପୁର, ଜୟପୁରର ସଂସ୍କୃତି ବିଷୟରେ ସେ ବହୁତ କହୁଥାନ୍ତି । ମୁଁ ତାଙ୍କୁ କହିଥିଲି ପିଲାଦିନେ ଉଟକାମଣ୍ଡରେ 'ଅଲ୍ ଇଣ୍ଡିଆ ମ୍ୟୁଜିକ୍ କମ୍ପିଟିସନ୍'ରେ ମୁଁ ଫାଷ୍ଟ ହୋଇଥିବାରୁ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମୋ ସହ ଓଡ଼ିଶା ଦଳକୁ ତାଙ୍କର 'ନୀଳଗିରି ହାଉସ୍'କୁ ଡାକିଥିଲେ । ତାଙ୍କ ସହ ମୋର ସାକ୍ଷାତ ବିଷୟରେ ବର୍ଣ୍ଣନା କଲାବେଳକୁ ମୋ ପାଟିରୁ ବାରମ୍ବାର ମହାରାଜାଙ୍କ 'ନିଶ'ର ବର୍ଣ୍ଣନା ବାହାରିଯାଉଥିଲା । ଶିବରାମ ଭାଇ ମନଦେଇ ଆଗ୍ରହରେ ଶୁଣୁଥାଆନ୍ତି, ଆଉ କାଗଜ ଖଣ୍ଡେ ଧରି କିଛି ଲେଖୁଥାଆନ୍ତି । ମୋ କଥା ଶେଷ ହେଉ ହେଉ ସେ କହିଲେ, ଦେଖନ୍ତୁ ମ୍ୟାଡାମ୍, ଆପଣ ଯାହା କହିଲେ, ଲେଖିକରି ମୋତେ ଦେବେ, ସେସବୁ ପ୍ରକାଶିତ ହେବାକୁ ଥିବା ମ୍ୟାଗାଜିନ୍‌ରେ ସ୍ଥାନ ପାଇବ । ଆଉ ସେ ଲେଖାର ଶିରୋନାମା ହେବ । ''ମହାରାଜାଙ୍କର ବାଘୁଆ ନିଶ'' ଏବଂ ତାହା ମହାରାଜାଙ୍କ ଜନ୍ମ ଜନ୍ମ ବାର୍ଷିକୀ ଉପଲକ୍ଷେ ।

ମୋ ସ୍ୱାମୀଙ୍କର ମଧ୍ୟ ବହୁ ଅପ୍ରକାଶିତ ଲେଖା ଦେବାପାଇଁ କହିଥିଲେ କୌଣସି ଏକ ମ୍ୟାଗାଜିନ୍‌ରେ ଛପେଇବା ପାଇଁ । ପରେ ପରେ ଆରମ୍ଭ କଲେ ସଂଗୀତଚର୍ଚ୍ଚା । ମୋର ଅଜା ଘର ବଂଶଜ କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ବିଷୟରେ ଅନେକ କଥା ପଚାରି ବୁଝିଲେ, ଆଉ କହିଲେ ନବରଙ୍ଗପୁରର କୃଷ୍ଣଦାସୀ ଶ୍ରୀମତୀ ପ୍ରମିଳା କୁମାରୀ ପଟ୍ଟନାୟକଙ୍କ ବିଷୟରେ । କବି ଶ୍ରୀମତୀ ପଟ୍ଟନାୟକଙ୍କ ଲେଖାଗୁଡ଼ିକର ଭୂରି ଭୂରି ପ୍ରଶଂସା କରି କହିଲେ, ''ମୁଁ ଆପଣଙ୍କୁ ତାଙ୍କର ଲେଖା ବହି ''ବ୍ରଜମାଧୁରୀ'' ଦେବି । ସେଥିରେ ତାଙ୍କର ଅନେକ ଭଜନ, ଜଣାଣ, ଓଡ଼ିଶୀ ଗୀତ ସବୁ ସ୍ଥାନ ପାଇଛି । ଆପଣ ସେ ସବୁର ସ୍ୱର ସଂଯୋଜନା ଡାକି ସମ୍ବର୍ଦ୍ଧନା ଦବା ଆଉ ଆପଣ ତାଙ୍କରି କେତୋଟି ଗୀତ ଗାଇବେ'' ମୁଁ ଆମ

ସଂଗୀତ ଗୁରୁଙ୍କ ସହ କଥା ହେବି ବୋଲି ତାଙ୍କୁ କହିଥିଲି । ସେମାନେ ଯିବାକୁ ବାହାରିଲେ । ଯାଉ ଯାଉ ପୁଣି ପଛକୁ ଫେରି ଶିବରାମ ଭାଇ କହିଲେ, ''ମ୍ୟାଡାମ୍'' ଗୋଟିଏ ସପ୍ତାହ ଭିତରେ ଲେଖା ଯଦି ଅଳ୍ପ ସମୟରେ ସେ ଆମକୁ କେତେ ଆପଣାର କରିଦେଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗୁଥିଲା ମୋତେ । ଦୁଇ ଦିନ ପରେ ଜଣେ ସମ୍ପାଦକ ବନ୍ଧୁ ଫୋନ୍ କରି ଶିବରାମ ଭାଇଙ୍କଠାରୁ ସେ ସବୁ ଲେଖା ବିଷୟରେ ଜାଣିଲେ ଓ ତାଙ୍କ ମ୍ୟାଗାଜିନ୍‌ରେ ପ୍ରକାଶ କରିବେ ବୋଲି କହିଥିଲେ । କିଛିଦିନ ପରେ 'ବ୍ରଜମାଧୁରୀ' ବହିଟା ମୋ ପାଖରେ ପହଞ୍ଚଇଦେଲେ ଓଡ଼ିଶା ଲେଖିକା ସଂସଦର ବାର୍ଷିକ ଉତ୍ସବରେ ଜୟଦେବ ଭବନରେ ପୁଣି ତାଙ୍କ ସହ ଦେଖାହେଲା । ସେଠି ମଧ୍ୟ ମନେପକେଇ ଦେଲେ ଗୀତର ସ୍ୱର ସଂଯୋଜନା ପାଇଁ । ଏମିତି ଅନେକ ଅନେକ କାମ ହାତକୁ ନେଇ ଅନେକ ସ୍ୱପ୍ନ ସେ ଦେଖିଥିଲେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା, ସେ ସ୍ୱପ୍ନଗୁଡ଼ିକୁ ସାକାର କରିବାକୁ ତାଙ୍କ ପାଖରେ ଆଉ ରାତି ରହିଲା ନାହିଁ । ସୁନ୍ଦର ବ୍ୟକ୍ତିଟିଏ ତାଙ୍କ ଭିତରେ ସେ ଗଢ଼ି ତୋଳିଥିଲେ । ସେ ଭଲ ପାଉଥିଲେ ପୃଥିବୀକୁ, ଗଛଲତା, ପଶୁପକ୍ଷୀଙ୍କୁ, ସଂଗୀତକୁ, ସାହିତ୍ୟକୁ । ତାଙ୍କର ସୌନ୍ଦର୍ଯ୍ୟ ବୋଧ ଥିଲା ଅନନ୍ୟ । ତାଙ୍କ ବଗିଚାର ଗଛସବୁ ତାଙ୍କରି ହାତର ସ୍ପର୍ଶରେ ହସୁଛନ୍ତି ଯେମିତି । ମୋ ପୁଅର ବିବାହ ନିମନ୍ତ୍ରଣ ଦେବାକୁ ତାଙ୍କ ଘରକୁ ମୁଁ ଯେତେବେଳେ ଗଲି, ମୋ ହାତରେ ଧରେଇ ଦେଇଥିଲେ ଶିବରାମଭାଇ ଗୋଟିଏ ଗୋଲାପଚାରା । ଆଉ କହିଲେ, ''ଏଇ ଗଛଟି ଆପଣ ହିଁ ଲଗେଇବେ ଆଉ ଆପଣଙ୍କ ନାମରେ ରହିବ ଏ ଗଛ ।'' ଏତେ ଆତ୍ମୀୟତା, ଏତେ ବନ୍ଧୁତା, ଏତେ ସମ୍ପର୍କ ରଖିଥିବା ବ୍ୟକ୍ତିଜଣକ ଏତେ ଶୀଘ୍ର କିପରି ସଂସାରର ସମସ୍ତ ସମ୍ପର୍କ ତୁଟେଇଦେଇ ପାରିଲେ !

ଶିବରାମ ଭାଇଙ୍କ ଗୌରୀ ନଗରସ୍ଥ ବାସଭବନରେ ପହଞ୍ଚିଲାବେଳକୁ ଦେଖିଲି, ତାଙ୍କର ବନ୍ଧୁ ବାନ୍ଧବ, ସାଙ୍ଗସାଥୀ ସମସ୍ତେ ଅଛନ୍ତି, କିନ୍ତୁ ନିସ୍ତବ୍ଧତାର ଏକ କରୁଣଛାୟା ଘେରି ଯାଇଛି ଘରସାରା । ସବୁ କିଛି ଲାଗୁଛି ଫାଙ୍କାଫାଙ୍କା ଶବ ଶଯ୍ୟା ପାଖରେ, ଠିଆହୋଇ ଛାତିଏ କୋହ ନେଇ ମୁଁ ଦେଖୁଥିଲି, ନିଶ୍ଚିନ୍ତ ନିଦ୍ରାରେ ଶାନ୍ତିରେ ମୃତ୍ୟୁକୋଳରେ ଶୋଇଯାଇଛନ୍ତି ଶିବରାମଭାଇ । ତାଙ୍କର ଅତି ଆଦରର ''ହଇଓ'' (ଶିବଲକ୍ଷ୍ମୀ) କାନ୍ଦି କାନ୍ଦି ଆଲୁଆମାଲୁଆ ହୋଇ ଗଡୁଛନ୍ତି ତଳେ, ତାଙ୍କର ମହାନିଦ୍ରା ଯାଇଥିବା ଶରୀର ପାଖରେ, ହାତକୁ ତାଙ୍କର ଜାବୁଡ଼ି ଧରିଛନ୍ତି । କାଳେ ଭାଇଙ୍କୁ କିଏ ନେଇଯିବ ତାଙ୍କଠୁ ଛଡ଼େଇ । କିନ୍ତୁ କାଳ ତ କେତେବେଳୁ ତାଙ୍କୁ ନେଇସାରିଲାଣି ! କେବଳ ଶରୀରଟା ପଡ଼ିରହିଛି ବରଫର ଜଳରେ ଭିଜିଭିଜି । ମୁଣ୍ଡରୁ ଗୋଡ଼ଯାଏ ଛାଇଯାଇଛି କିସମ କିସମର ଫୁଲ ଓ ଫୁଲମାଳ । ମୁଣ୍ଡପାଖରେ ତୁଳସୀ ଗଛର କୁଣ୍ଡ, କୁଣ୍ଡର ମଝିରେ ଅନେକ ଧୂପକାଠି । ଧୂପ ଗନ୍ଧରେ ମହକି ଉଠୁଛି ଚତୁର୍ଦ୍ଦିଗ । ପାଖକୋଠରୀରୁ ଭାସିଆସୁଛି ଧୀର ସ୍ୱରରେ ଭଗବଦ୍‌ଗୀତାର ଶ୍ଳୋକ ।

ହେ ବିଶ୍ୱମୟ । କଳାପ୍ରେମୀ, ସାରସ୍ୱତ ସାଧକ ଶିବରାମଭାଇଙ୍କ ଆତ୍ମାର ସଦ୍‌ଗତି କରନ୍ତୁ ଏତିକି ତାଙ୍କ ପାଇଁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।

ଏଚ୍.ଆଇ.ଜି ୧/୨, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର

## କର୍ମବୀର

ଶ୍ରୀ ଆର୍. କେ. ଏନ୍. ଏସ୍. ବର୍ମା

କର୍ମ ମଧ୍ୟରେ ମଣିଷ ବଞ୍ଚି ରହେ । ଦେଶ, ସମାଜ ଓ ଜାତି ଉଦ୍ଦେଶ୍ୟରେ ଯେଉଁମାନଙ୍କର କର୍ମ ଉଦ୍ଦିଷ୍ଟ, ସେମାନେ ଦୀର୍ଘ ଦିନ ଧରି ଲୋକସ୍ମୃତିରେ ଉଜ୍ଜିବୀତ ।

ଜଣେ ବିଶିଷ୍ଟ ସାହିତ୍ୟିକ, ସଂପାଦକ, ସମାଜସେବୀ, ଶିକ୍ଷା ଓ ସଂସ୍କୃତିପ୍ରେମୀ ଭାବେ ସମାଜ ପ୍ରତି ଶିବରାମବାବୁଙ୍କର ଦାନ ଅତୁଳନୀୟ । ଛାତ୍ରବତ୍ସଳତା, ଜ୍ଞାନ ଆହରଣ ଓ ବିତରଣରେ ତାଙ୍କର ଅଖଣ୍ଡ ଆନନ୍ଦ । ସରଳ ଜୀବନଯାପନ ଓ ଉଚ୍ଚ ଚିନ୍ତନ ତାଙ୍କର ଜୀବନଧାରା । ମୋର ପରମ ସୌଭାଗ୍ୟ ଯେ ତାଙ୍କ ପରିବାର ସହ ମୁଁ କେବଳ ସହକର୍ମୀଭାବେ ନୁହଁ ବରଂ ଜଣେ ଅନ୍ତରଙ୍ଗ ବନ୍ଧୁ ହିସାବରେ ଘନିଷ୍ଠ ଭାବେ ଜଡ଼ିତ ହୋଇପଡ଼ିଥିଲେ । ତାଙ୍କ ସହ ଅନେକ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ ।

ହଠାତ୍ ଦେହାନ୍ତ ଖବର ଶୁଣି ମୁଁ ହତବାକ୍ ହୋଇପଡ଼ିଲି । କାରଣ ପାତ୍ରବାବୁ ନିରୋଗ, ସୁସ୍ଥ ଓ ସମର୍ଥ ବ୍ୟକ୍ତି । ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ କରି ନଥିଲା । ତାଙ୍କୁ ଦେଖିଲେ ମନେହେଉଥିଲା ଯେ ସେ ଚାକିରୀ ଜୀବନରୁ ଅବସର ଗ୍ରହଣ କରିନାହାନ୍ତି ।

ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ତାଙ୍କର ଆତ୍ମା ଶାନ୍ତିଲାଭ କରୁ - ଏହାହିଁ ଶ୍ରୀ ଜଗନ୍ନାଥଙ୍କ ପାଖରେ ମୋର ପ୍ରାର୍ଥନା ।

ଅର୍ଥନୀତି ବିଭାଗ, ଏକାମ୍ର ମହାବିଦ୍ୟାଳୟ
ଭୁବନେଶ୍ୱର

## ସ୍ମୃତିରେ ସ୍ମୃତିରେ ଶିବରାମ

ଶ୍ରୀ ଲଳିତ ମୋହନ ପଟ୍ଟନାୟକ

ଦିବ୍ୟଜନନୀ ଶ୍ରୀମାଙ୍କୁ ଜଣେ ଶ୍ରଦ୍ଧାଳୁ ପ୍ରଶ୍ନ କରିଥିଲେ, -"ଆମେ କ'ଣ କଲେ ବିଗତ ଆତ୍ମା ଖୁସି ହେବ ଏବଂ ତାହା ଉତ୍ତମ ପରିବେଶରେ ଅର୍ଥାତ୍ ଆଧ୍ୟାତ୍ମିକ ପରିବେଶରେ ଜନ୍ମଗ୍ରହଣ କରିପାରିବ ?"

ଶ୍ରୀମା ଉତ୍ତର ଦେଇଥିଲେ- "ଟିକିଏ ବି ଦୁଃଖ ପ୍ରକାଶ କର ନାହିଁ ଏବଂ ଏକାନ୍ତ ଶାନ୍ତ ଓ ନୀରବ ରୁହ; ଆଉ ବିଗତ ବ୍ୟକ୍ତିଙ୍କ ପ୍ରତି ଏକ ସ୍ନେହପୂର୍ଣ୍ଣ ସ୍ମରଣ ରଖ ।"

ଶିବରାମ ବାବୁ ମୋର ସାହିତ୍ୟିକ ବନ୍ଧୁ ଥିଲେ । ସେ ଗୁଣପୁର ମହାବିଦ୍ୟାଳୟରେ ଥିଲାବେଳେ ମୋର ତାଙ୍କ ସହ ଥିଲା ପରୋକ୍ଷ ସମ୍ପର୍କ । ଗୁଣପୁରର ବଂଶଧାରା ସାହିତ୍ୟ ଅନୁଷ୍ଠାନ ସହ ଆମର ନବରଙ୍ଗପୁରର ନବଜାଗରଣ ସାହିତ୍ୟ ସଂସଦର

ଥାଏ ନିବିଡ଼ ସାରସ୍ୱତ ଓ ସାଙ୍ଗଠନିକ ସମ୍ପର୍କ । ଏହି ପରିପ୍ରେକ୍ଷୀରେ ବନ୍ଧୁ ଶିବରାମଙ୍କ ସହ ଏବଂ କବି ୰ଗୋବନ୍ଦ ଖୁଣ୍ଟିଆଙ୍କ ସହ ଚିଠିପତ୍ର ଓ ଭାବ ବିନିମୟ । ସେତେବେଳେ ଶୁଣିଥିଲି ଏହି ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱକୁ; ଜାଣିଥିଲି- ସେ ଜଣେ ସାହିତ୍ୟ ସଙ୍ଗଠକ ।

ପରେ ପରେ ଶିବରାମ ବାବୁ ବଦଳି ହୋଇ ଆସନ୍ତି ନବରଙ୍ଗପୁର ମହାବିଦ୍ୟାଳୟକୁ ଓଡ଼ିଆ ଅଧ୍ୟାପକ ଭାବେ । ସେଇଠୁ ଆମର ପ୍ରତ୍ୟକ୍ଷ ସମ୍ପର୍କ ଗଢ଼ିଉଠେ । ନବରଙ୍ଗପୁରରେ ଆମ ଘର ବାଡ଼ି ତାଙ୍କ ଘର ବାଡ଼ିକି ଲାଗିଛି । ଏବେ ବି ସେଇ ଘରକୁ ଦେଖିଲେ ମନେ ପଡ଼ନ୍ତି ଶିବରାମ ବାବୁ ।

ତାଙ୍କ ଘରଟା ମନେହୁଏ ବିରାଟ ଲାଇବ୍ରେରୀ । ବିଭିନ୍ନ ଉଚ୍ଚତାର କାଠ ଓ ଲୁହାର ଆଲ୍‌ମୀରା । ଆଲ୍‌ମୀରା ଭିତରେ ବହିର ଭିଡ଼ । ସେ ଥିଲେ ବହିର ପ୍ରେମିକ । ବହି ସଂଗ୍ରହ କରି ଉପଯୁକ୍ତ ସଂରକ୍ଷଣ କରିବା ଥିଲା ତାଙ୍କର ନିଶା ।

କେବଳ ସିଏ ନିଜେ ବହି ରଖନ୍ତି ନାହିଁ ଅନ୍ୟମାନଙ୍କୁ ବହି ରଖିବା ପାଇଁ ପ୍ରେରଣା ଦିଅନ୍ତି । ସମୟ ସମୟରେ ଅନ୍ୟମାନଙ୍କୁ ବିଭିନ୍ନ ପ୍ରକାର ଉପାଦେୟ ବହି ଯୋଗାଇ ଦିଅନ୍ତି । ପାଠକ ସୃଷ୍ଟି କରିବା ତାଙ୍କ ବ୍ୟକ୍ତିତ୍ୱର ଏକ ଉଲ୍ଲେଖନୀୟ ଦିଗ ।

ମୁଁ ଶ୍ରୀମା ଶ୍ରୀଅରବିନ୍ଦଙ୍କ ପ୍ରବର୍ତ୍ତିତ ପୂର୍ଣ୍ଣାଙ୍ଗଯୋଗର ଜଣେ ସକ୍ରିୟ ଭକ୍ତ, କର୍ମୀ ତଥା ସଙ୍ଗଠକ । ମୁଁ ଯେତେବେଳେ ତାଙ୍କ ବ୍ୟକ୍ତିଗତ ପାଠାଗାରରେ ଦେଖିଲି ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ରଚିତ ସମସ୍ତ ମୂଲ୍ୟବାନ ଗ୍ରନ୍ଥ; ସେତେବେଳେ ମୋର ହୃଦୟ ପୁଲକରେ ନାଚି ଉଠିଥିଲା । ଆହୁରି ବିସ୍ମିତ ହେଲି ଯେତେବେଳେ ଶିବରାମ ବାବୁ କଥା ପ୍ରସଙ୍ଗରେ ପୂର୍ଣ୍ଣାଙ୍ଗ ଯୋଗର ଧରା ଓ ଧାରା ସମ୍ବନ୍ଧେ ବିଶଦ ଆଲୋଚନା କଲେ । ଏଥିରୁ ଜାଣିଲି ଯେ ଶିବରାମ ବାବୁ କେବଳ ବହି ସଂଗ୍ରହ କରୁଥିଲେ ତାହା ନୁହେଁ ଅଧିକନ୍ତୁ ସେ ଥିଲେ ଜଣେ ଅନନ୍ୟ ପାଠକ । ବିଭିନ୍ନ ସାହିତ୍ୟ, ଦର୍ଶନରେ ଥିଲା ତାଙ୍କର ଅଗାଧ ପାଣ୍ଡିତ୍ୟ ।

ତାଙ୍କ ଘରକୁ ଗଲେ ବିଭିନ୍ନ ପ୍ରକାର ପିଠା ନଖୁଆଇ କାହାକୁ ସେ ଛାଡ଼ନ୍ତି ନାହିଁ । ବିଭିନ୍ନ ଅବକାଶରେ ଯାଇ ଏଣ୍ଡୁରି, ଚକୁଳି, ପୋଡ଼ପିଠା, ଦାନ୍ତିକିଲୁ, ଖଡ୍ଡୁ, ପିଢ଼ିଆବଡ଼ି, କାକରା, ପକୋଡ଼ି ଇତ୍ୟାଦି ମୁଁ ଶ୍ରଦ୍ଧାରେ ଖାଇଛି । ତାଙ୍କର ଅନନ୍ୟ ସ୍ନେହ, ବନ୍ଧୁ ବତ୍ସଳତା, ମମତା, ଅନ୍ୟକୁ ଅତି କମ୍ ସମୟରେ ଆପଣାର କରିନେବାର ଭାବାବେଗତା, ମୁଁ ଆଦୌ ପାଶୋରି ପାରୁନାହିଁ ।

ତାଙ୍କ ସହ ବିଭିନ୍ନ ସାରସ୍ୱତ, ସାମାଜିକ, ଆଧ୍ୟାତ୍ମିକ ବନ୍ଧୁମିଳନରେ ପାଖେ ପାଖେ ବସି ଖାଇଛି । ଏବେ ବି ଭୋଜି ଭାତରେ ଖାଇଲାବେଳେ ତାଙ୍କର କଥା ମନେପଡ଼େ- ''ପଇଡି ଟିକେ ଆଣ ।'' ସେ ''ଡ଼ାଲି ଦିଅ'' ବୋଲି କହନ୍ତି ନାହିଁ । ଅନେକ କ୍ଷେତ୍ରରେ, କଥାବାର୍ତ୍ତାରେ, ଅଧ୍ୟାପନା କଲାବେଳେ ସେ ବହୁଧା ଦେଶଜ ଶବ୍ଦ, ଖାଣ୍ଟି ଓଡ଼ିଆ ଶବ୍ଦ ହିଁ ବ୍ୟବହାର କରନ୍ତି । ଅନେକ ଇଂରେଜ ଶବ୍ଦର ଖାଣ୍ଟି ଓଡ଼ିଆ ଶବ୍ଦ ହିଁ ସେ ବ୍ୟବହାର କରୁଥିଲେ । ଗୋଟିଏ କଥା ମୁଁ ଭଲଭାବେ ଲକ୍ଷ୍ୟ କରିଛି - ସେ ଖୁବ୍ ଶ୍ରଦ୍ଧାର ସହିତ, ଆନ୍ତରିକତାର ସହିତ ଶବ୍ଦଗୁଡ଼ିକୁ ପ୍ରୟୋଗ କରିଥାନ୍ତି । ଶିବରାମଙ୍କ କଥାରେ ଅନେକ ଅବଲୁପ୍ତପ୍ରାୟ, ବିସ୍ମୃତ, ଅବ୍ୟବହୃତ ଶବ୍ଦାବଳୀ ଶୁଣିବାକୁ ମିଳୁଥିଲା ।

ଓଡ଼ିଆ ଭାଷା, ଓଡ଼ିଆ ସଂସ୍କୃତି, ଓଡ଼ିଶାର ପରମ୍ପରା, ଚଳଣି, ଜାତୀୟତାର ସେ ଥିଲେ ବଳିଷ୍ଠ ପୂଜାରୀ ।

ସାହିତ୍ୟ ସଭା, କବିତା ପାଠୋତ୍ସବ ପ୍ରଭୃତିକୁ ସେ ନୂତନ ଭଙ୍ଗୀରେ ପରିଚାଳନ କରନ୍ତି । ଥରେ ସେ କହିଥିବା କଥା ମୋର ମନେପଡୁଛି । ଏହା ଅତି ଗୁରୁତ୍ୱପୂର୍ଣ୍ଣ ମଧ୍ୟ । ସେ କହିଲେ ଯେ ଏଥର ନିଜର କବିତା ଆବୃତ୍ତି ନକରି ଜଣେ ଆଉ ଜଣଙ୍କର କବିତା ପାଠ କରିବା । ଏହାଦ୍ୱାରା ପାରସ୍ପରିକ ଆବେଗିକ ସଦ୍‌ଭାବ ବଢ଼ିବ ।

ଆଉ ଥରକର କଥା । ମୁଁ ଓ ସୁବାସ ମିଶ୍ର ଭୁବନେଶ୍ୱର ଯାଇଥିଲୁ । ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ ତରଫରୁ ରାଜ୍ୟ ଓଡ଼ିଆ ଭାଷା ତତ୍ତ୍ୱଜ୍ଞ କର୍ମଶାଳାରେ ଯୋଗ ଦେଇଥାଉ । ସେତେବେଳେ ଶିବରାମ ବାବୁଙ୍କ ନୂତନ ଗୃହ 'ଅଜରମ୍' କୁ ଯାଇଥିଲୁ । ସେହି ସମୟରେ ଶିବରାମ ବାବୁଙ୍କ ଆତିଥ୍ୟ ଏକାନ୍ତ ଅବିସ୍ମରଣୀୟ । ତାଙ୍କ ବୈଠକଖାନାରେ ଅବିଭକ୍ତ କୋରାପୁଟ ଜିଲ୍ଲାର ବିଭିନ୍ନ ଆଦିବାସୀଙ୍କ ବାଦ୍ୟଯନ୍ତ୍ର ଓ ମାଟି-ପ୍ରସ୍ତର-କାଠ ଖୋଦେଇ କାମର ଅପୂର୍ବ ସଂରକ୍ଷଣର ଦୃଶ୍ୟ ଅତ୍ୟନ୍ତ ଧନ୍ୟବାଦାର୍ହ ।

ସେ ଥିଲେ ଚିତ୍ରକଳାର ପୂଜାରୀ । ନବରଙ୍ଗପୁରର କଳାଶିକ୍ଷକ ଶ୍ରୀ ପର୍ଶୁରାମ ସାହୁଙ୍କ ତତ୍ତ୍ୱାବଧାନରେ ତାଙ୍କ ତେଲିସାହିସ୍ଥ ବାସ ଭବନର ବାରଣ୍ଡାରେ ଆରମ୍ଭ କରିଥିଲେ SUNDAY ART SCHOOL । କଳାକାର ଶ୍ରୀ ସାହୁଙ୍କୁ ମଧ୍ୟ ସେ ସମ୍ବର୍ଦ୍ଧନା ଦେଇ ଉତ୍ସାହିତ କରିଥିଲେ ।

ବର୍ଷକ ତଳେ ହଠାତ୍ ଏଭଳି ଏକ ମହାନ୍ ବ୍ୟକ୍ତିଙ୍କର ତିରୋଧାନ ହେଲା ଏକଥା ଏବେ ବି ବିଶ୍ୱାସ କରିହେଉନି । ସଙ୍ଗେ ସଙ୍ଗେ ନବଜାଗରଣ ସାହିତ୍ୟ ସଂସଦ ତରଫରୁ ବନ୍ଧୁ ଶିବରାମଙ୍କ ବିୟୋଗରେ ଶୋକ ସଭା ଆୟୋଜନ କଲୁ । ସାହିତ୍ୟ ସଂସଦର ପ୍ରତିଷ୍ଠାତା ୰ଭାଗୀରଥି ପାତ୍ରଙ୍କ ଦଶାହ ଅବସରରେ ଶିବରାମ ବାବୁ ଧାଇଁ ଆସିଥିଲେ ଭୁବନେଶ୍ୱରରୁ । ଏତେ ସ୍ନେହ ସଦିଚ୍ଛା ଏହି ମାଟିର ମଣିଷଙ୍କ ପାଇଁ ! ଅନନ୍ୟ ତାଙ୍କ ବନ୍ଧୁତା ।

ଶ୍ରୀ ଅରବିନ୍ଦଙ୍କ ଭାଷାରେ, 'Death is a wedding gate.','Death is our road to immortality.','Our death is made a passage to new worlds.'

ସ୍ମୃତିରେ ସ୍ମୃତିରେ କହିଲେ, ଶିବରାମ ବାବୁଙ୍କ ଜୀବନ ଧନ୍ୟ ହୋଇଛି । ପ୍ରାଣୀଙ୍କ ଭଲ ମନ୍ଦବାଣୀ, ମରଣ କାଳେ ତାହା ଜାଣି । ଶିବରାମ ବାବୁଙ୍କ ବିଦାୟରେ ଓଡ଼ିଶାର ପୁରପଲ୍ଲୀରେ, ତାଙ୍କ ଅଗଣିତ ଛାତ୍ର-ଅଧ୍ୟାପକ ମେଳରେ ଅନୁଷ୍ଠିତ ଶୋକସଭା, ଶ୍ରଦ୍ଧାଞ୍ଜଳି ହିଁ ମୂକସାକ୍ଷୀ ।

''ଜୀବନ ଯଦି ମୃତ୍ୟୁ ପାଇଁ
ମୃତ୍ୟୁ ତେବେ ଜୀବନର ଉତ୍କର୍ଷତା ପାଇଁ ।''(ଶ୍ରୀଅରବିନ୍ଦ)

ନୂଆବନ୍ଧ ସାହି
ନବରଙ୍ଗପୁର-୭୬୪୦୫୯

# ଅନୁଭୂତିରୁ ଆଞ୍ଜୁଳାଏ

**ଭୁବନବିହାରୀ ଦାଶ**

ଅଜବ ମଣିଷଟିଏ । ଦେଖିଲେ ଭାରୀ ଖୁସି ଲାଗେ । ଖଦଡ଼ର କୁର୍ତ୍ତା ପାଇଜାମା, କାନ୍ଧରେ ଲମ୍ବା ଝୁଲା ମୁଣିଟିଏ । ପାଚିଲା ଦାଢ଼ିକୁ ହସ ହସ ମୁହଁ । କୋଡ଼ିଏ ବର୍ଷ ପୂର୍ବେ ଦେଖିଥିଲା ବେଳେ ଲାଗୁଥିଲେ ଯେମିତି, ମୃତ୍ୟୁର ତିନିଦିନ ପୂର୍ବରୁ ବି ଠିକ୍ ସେହିପରି ।

ଗୁଣପୁରର ଜନଗହଳି ରାସ୍ତା ଭିତରୁ ଭାସି ଆସିଲା ଏକ କଣ୍ଠ ସ୍ୱର, ବାବୁ ତୁମେ କଲେଜରେ କେଉଁ କ୍ଲାସରେ ପଢୁଛ । ବୋଧହୁଏ ଲାଗୁଥିଲି ପିଲାଳିଆ । କାରଣ ମାତ୍ର ୨୨ବର୍ଷରେ ଚାକିରୀ କରିବାକୁ ଯାଇଥିଲି ଗୁଣପୁର । ହଠାତ୍ ପାଟିରୁ ବାହାରି ଗଲା ନା ସାର୍ ମୁଁ ବ୍ୟାଙ୍କରେ ଜଏନ୍ କରିଛି । କହିଲେ କଲେଜ ପିଲା ଭଳିଆ ଲାଗୁଛି । ସେଦିନର ବିଶେଷ ମୁହୂର୍ତ୍ତର ସାକ୍ଷାତ୍ ପରିବର୍ତ୍ତିତ ହେଲା ବନ୍ଧୁତାରେ ।

ସଂପର୍କ ଯେତେବେଳେ ପିଲାଙ୍କର ମାମୁଁ ସଂପର୍କରେ ପରିଣତ ହେଲା ସେଠାରୁ ଆରମ୍ଭ ହେଲା ମଧୁର ସଂପର୍କ ଏବଂ ଅନେକ ଥଟ୍ଟା ତାମସା । ସଂପର୍କ ଗଢ଼ିଉଠିଲା ଆମ ବ୍ୟାଙ୍କର ଅନ୍ୟ କର୍ମଚାରୀମାନଙ୍କ ସହ ଏବଂ ଅନ୍ୟ ବ୍ୟାଙ୍କର କର୍ମଚାରୀଙ୍କ ସହ । ୧୯୮୪ ମସିହାରୁ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଅନ୍ତରଙ୍ଗ ଆଳାପ ଓ ବନ୍ଧୁତା, ଘରକୁ ଯିବା ଆସିବା ଏବଂ ତାଙ୍କର ପ୍ରତିଟି କଥା କହିବା ମୁହୂର୍ତ୍ତରେ ସମସ୍ତେ ଆନନ୍ଦ ଅନୁଭବ କରୁଥିଲେ । କିଛି ଦିନର ଆନନ୍ଦ ଉଲ୍ଲାସ ପରେ କ୍ରମାନ୍ୱୟରେ ସମସ୍ତଙ୍କର ବଦଳି ହେଲା ଅନ୍ୟ ଯାଗାକୁ ।

ଦୀର୍ଘ ୧୦ ବର୍ଷର ବ୍ୟବଧାନ ପରେ ହଠାତ୍ ସେଇ ମହାତ୍ମାଙ୍କୁ ଆବିଷ୍କାର କଲି ଭୁବନେଶ୍ୱରର ବରଗଡ଼ ହାଇସ୍କୁଲ ପଡ଼ିଆଠାରେ । ଅବାକ୍ ହୋଇଗଲି ମୁଁ । ସେଇ ବେଶ ସେଇ ଝୁଲାମୁଣି ଓ ପାଚିଲା ଦାଢ଼ି ସାଙ୍ଗରେ ହସ ହସ ମୁହଁ । ଯାହାହେଉ ଖୁବ୍ ଖୁସିଲାଗିଲା ବନ୍ଧୁତା ପୁଣି ନିବିଡ଼ରୁ ନିବିଡ଼ତର ହେବାକୁ ଲାଗିଲା । ସୁଖର କଥା ମୋର ଘର ଗୌରୀ ଗାର୍ଡ଼େନ୍ ଠିକ୍ ତାଙ୍କ ଘର ପାଖରେ । ପୂର୍ବପରି ଥଟ୍ଟା ଓ ମଜା । ଘର ଥିଲା ତାଙ୍କର ଏକ ଉପବନ, ଗୋଟିଏ ଆଶ୍ରମ କହିଲେ ଅତ୍ୟୁକ୍ତି ହେବନାହିଁ । ଅନେକ ଜାତିର ଗଛ ଓ ଲତା ମଧ୍ୟରେ ଘରଟି ମୁନିଋଷିମାନଙ୍କର ଜଙ୍ଗଲରେ ଥିବା କୁଡ଼ିଆଟିଏ ପରି ଶୋଭାପାଏ । ଘର ଭିତରେ ଭରି ରହିଥିଲା ଅନେକ ଦୁର୍ଲଭ ସମ୍ପଦ, ଯାହାକି ସହଜରେ ପାଇହେବନାହିଁ, ସମୁଦ୍ର ମଝିର ଶାମୁକାଠାରୁ ଆରମ୍ଭ କରି ବାଇଆ ଚଢ଼େଇର ବସା ପର୍ଯ୍ୟନ୍ତ । ସତେ ଯେପରି ଲାଗୁଥିଲା ବାଇଆ ଚଢ଼େଇ ଗଛ ଡାଳ ଛାଡ଼ି ବସା ବାନ୍ଧିଛି ସାରଙ୍କ ଘର କୋଣରେ ।

ମଣିଷ ଭିତରେ ମଣିଷଟିଏ ସେ । ଯେଉଠି ଖୋଜିବ ସେଇଠି ପାଇବ । ସେହି ଅଭିନବ ପୋଷାକ ସାଙ୍ଗକୁ ସାଇକେଲଟି । ଭୁବନେଶ୍ୱରର ଶିଶୁପାଳଗଡ଼ ଠାରୁ ଶୈଳଶ୍ରୀ ବିହାର ଏବଂ ଖଣ୍ଡଗିରି ଠାରୁ ରସୁଲଗଡ଼ ପର୍ଯ୍ୟନ୍ତ ସେଇ ସାଇକେଲଟି ।

ଗୌରୀ ଗାର୍ଡ଼େନ, ଭୁବନେଶ୍ୱର-୨

## ଶୁଭଲକ୍ଷ୍ମୀ ର ଚିଠି

ବାଲୁଗାଁ
ତା ୨୩-୨-୦୫

ପୂଜନୀୟ ବାପା,

ମୋର ନମସ୍କାର ନେବେ । ମା'ଙ୍କୁ ମୋର ନମସ୍କାର ଜଣାଇଦେବେ । ଜ୍ୟେଷ୍ଠମାନଂକୁ ମୋର ନମସ୍କାର ଜଣାଇବେ । ସାନମାନଙ୍କୁ ମୋର ସ୍ନେହ ଦେବେ ।

ପୁସ୍ତକ ଖୋଲୁ ଖୋଲୁ ଆଖିପଡ଼ିଲା "ପୂଜ୍ୟପଣ୍ଡିତ କବିରାଜ ଶ୍ରୀକୃଷ୍ଣ ଚନ୍ଦ୍ର ତ୍ରିପାଠୀ ଶର୍ମା" ଉପରେ । ଆପଣ ତାଂକର ଋଣକୁ ଅପରିଶୋଧୀୟ ବୋଲି କହିଛନ୍ତି, ତାଂକ ମୁଖ ନିଃସୃତ ପରାମର୍ଶ ଆପଣଂକ ପ୍ରତି ଥିଲା- "କୋ ଗହଲିରେ ପଶନା, ଭଲ ପାଇଟି କରିବୁ, ଭଲରେ ରହିବୁ" ଆପଣଂକର ଏହି ଉପସ୍ଥାପନା ହୃଦୟସ୍ପର୍ଶୀ ହୋଇଛି । ଆମେ ଉତ୍ତରର ହେଲେ ମଧ୍ୟ ଦାକ୍ଷିଣାତ୍ୟର ଗାଉଁଲି ଭାଷା ପ୍ରତି ମନ ଆକୃଷ୍ଟ ହୋଇଯାଉଛି । ଆପଣ ମଧ୍ୟ ସାହିତ୍ୟ ସେବାକୁ ଭଲ ପାଇଟି ରୂପେ ଗ୍ରହଣ କରିଛନ୍ତି । ଆପଣଙ୍କର ଲକ୍ଷ୍ୟ ମହାନ୍ ।

ତା'ପରେ ଆସିଲା ଫକୀରମୋହନଂକ ଜୀବନପଞ୍ଜିକା । ଆପଣ ତାଂକ ଜୀବନର ପ୍ରତ୍ୟେକଟି ସୋପାନର କର୍ମ ତାଲିକା ପ୍ରକାଶ କରିଛନ୍ତି । ଆପଣଙ୍କ ପୁସ୍ତକରୁ ଫକୀରମୋହନଂକ ଜୀବନ ଅତି ସରଳ ଓ ସହଜ ଉପାୟରେ ଅଧ୍ୟୟନ କରିହେଉଛି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଂକର ସାଧନା, କର୍ମ, ନିଷ୍ଠା, ଆତ୍ମ ବିଶ୍ୱାସ, ପ୍ରଜ୍ଞା ଓ ଈଶ୍ୱର ବିଶ୍ୱାସର ପ୍ରମାଣ ମିଳିଛି ।

ମୁଖବନ୍ଧରେ ଆପଣ ଫକୀରମୋହନଂକ ଜୀବନର ଉଦ୍ଦେଶ୍ୟ, ବିଶ୍ୱାସ, ଜାତିପ୍ରୀତି ଓ ଆଜୀବନ ଭାଷା ଓ ସାହିତ୍ୟ ସଂପର୍କୀୟ କର୍ମରେ ନିଜକୁ ନିୟୋଜନ ପ୍ରଭୃତି ବିଷୟରେ ଲେଖିଛନ୍ତି ।

ଫକୀରମୋହନଂକ ଲିଖିତ ବିଭିନ୍ନ ଗ୍ରନ୍ଥରୁ ବିଭିନ୍ନ ଦୁର୍ଲଭବାଣୀ, ମନ୍ତବ୍ୟ ସଂଗ୍ରହ କରିଛନ୍ତି । ତାକୁ ପଠନ କଲେ ଲାଗୁଛି ଜୀବନର ସତ୍ୟକୁ ପଠନ କଲାପରି । ଏଗୁଡ଼ିକ ଲାଗୁଛି ଜୀବନର ମହାନସତ୍ୟ, ଅତି ଅମୂଲ୍ୟ । ଏସବୁ ଜିନିଷ ହୃଦୟସ୍ପର୍ଶ କରିଛି । ଜୀବନର ଜ୍ଞାନ ବର୍ଦ୍ଧନ କରୁଛି । ବାସ୍ତବରେ ଆପଣଂକର ଏପ୍ରକାର ସଂଗ୍ରହ ଅତୁଳନୀୟ । ଫକୀରମୋହନଂକ ପରି ମହାନ୍‌ପୁରୁଷଂକ ମହାନବାଣୀ ଗୁଡ଼ିକ ଏପରି ଆମ ପାଖରେ ସିଧାସଳଖ ପହଞ୍ଚିପାରିଛି । ଅତି ଅଳ୍ପ ସମୟରେ ଏବଂ କ୍ଷୁଦ୍ର ପୁସ୍ତକରେ ତାଂକର ମହାନକୀର୍ତ୍ତି, କର୍ମ, ବଳିଦାନ ପୂର୍ଣ୍ଣ ଜୀବନ ବିଷୟରେ ଜାଣି ହେଉଛି, ସେଥିରୁ କେତେକ ବୁଝି ନହେଲେ ମଧ୍ୟ ସବୁପ୍ରାୟ ମନକୁ ଛୁଇଁଛି । ଏଗୁଡ଼ିକ ଗୀତାର ମହାନ ବାଣୀଠାରୁ କିଛି କମ୍ ନୁହେଁ । ଆପଣଂକର ଏପରି ମଣିମୁକ୍ତା ସଂଗ୍ରହ ନିଷ୍ଠା ଅବିସ୍ମରଣୀୟ ।

ପୁସ୍ତକର ଶେଷରେ ତଥା ଶେଷ ମଲାଟରେ ପାଇଲି ଆପଣଂକ କର୍ମାବଳୀ, ଦେଖି ଖୁସି ଲାଗିଲା । ପୂର୍ଣ୍ଣ ପ୍ରାଣରେ ସାହିତ୍ୟ ସେବାରେ ଆପଣ ମଗ୍ନଥିବାର ଅନୁଭବ

କଲି. ଆପଣଂକ ଜୀବନ ଆଗକୁ ସାଫଲ୍ୟ ମଣ୍ଡିତ ହେଉ, ଭଗବାନଂକ ପାଖରେ ଏତିକି ପ୍ରାର୍ଥନା ।

ବର୍ତ୍ତମାନ ମୋ ପାଖରେ ସମୟ କମ୍ । ତେଣୁ ବିଷଦ୍ ବ୍ୟାଖ୍ୟା କରିପାରିନି । ତେଣୁ କ୍ଷମା କରିବେ । କେବଳ ଆପଣଂକ ନିର୍ଦ୍ଦେଶ ଅନୁସାରେ ଏମାସ ଶେଷ ସୁଧା ପୁସ୍ତକ ବିଷୟରେ ସଂକ୍ଷିପ୍ତ ସୂଚନା ତଥା ଭାବାବେଗ ଚିଠି ମାଧମରେ ସଂଚାରିତ କଲି ।

ଇତି
ଆପଣଂକ ସ୍ନେହାଧୀନ ଝିଅ
ଶୁଭଲକ୍ଷ୍ମୀ

(ଚିଠିଟି ଭାବୀ ବଧୂ ଶୁଭଲକ୍ଷ୍ମୀର ୧୨।୧୨।୦୫ ରେ ହିଁ ପହଞ୍ଚିଥିଲା । ଦୁର୍ଭାଗ୍ୟକୁ ସେଦିନ ଚିଠି ବାଣ୍ଟ କେହି ନଥିଲେ । ସେ ଦେଖିଥିଲେ ଆନନ୍ଦରେ ଆତ୍ମହରା ହୋଇଥାନ୍ତେ ।)

## ଆନା ମୋତେ ଭଲ ପାଉଥିଲେ

ବାଳାଜୀ ପାତ୍ର

ଚାକିରୀ କରୁଥିଲେ । ଓ.ଆର.ଟିରେ ଅଡିଟର । ପାସ୍ ମିଳୁଥିଲା । ତେଣୁ ଆମେ ସମସ୍ତେ ଭାଇ ଭଉଣୀ ଓ ମା ଓଡ଼ଗାଁ ଠାରୁ ଆରମ୍ଭ କରି ଚିଲିକା, ପୁରୀ କୋଣାର୍କ ଭୁବନେଶ୍ୱର, ସାକ୍ଷୀଗୋପାଳ କଟକ, ଛତିଆ, ରାଉରକେଲା ଇତ୍ୟାଦି ବୁଲି ପାରୁଥିଲୁ ।

ଥରେ ମୁଁ ସ୍କୁଲରେ ପଢ଼ିବା ସମୟରେ, ମୋପାଇଁ ସେ ପେଣ୍ଟସାର୍ଟ ନୂଆ ଯୋତା ଆଣି ଦେଇଥିଲେ । ଖୁବ ଖୁସି ଲାଗିଲା । ବହୁଦିନ ପର୍ଯ୍ୟନ୍ତ ସିଲାଇ କରି ନ ଥିଲି କାରଣ ଶୀଘ୍ର ସିଲାଇ କରିଦେଲେ ଶୀଘ୍ର ଛୋଟ ହୋଇଯିବ । ମୁଁ ପିଲାବେଳେ ଲମ୍ବା ହେଉଥିଲି ତ । ଏବେବି ଆମମାନଙ୍କ ପାଇଁ ନୂଆ ବା ପୁରୁଣା ଡ୍ରେସ୍ ବା ଲୁଙ୍ଗି ଗାମୁଛା ଦେବେ ଏବଂ ସବୁବେଳେ ଆସିଲେ ଯାଚୁଥିବେ । ବଡ଼ ଟିଣ ବାକ୍ସଟି ଖୋଲି । ମୋର ଚାକିରୀ ୩୮ ବର୍ଷ ହେଲା ପରେ ବି ।

ଆମ ଘରୁ ଜଣେ ମିଲିଟାରି ଯାଉ ବୋଲି ଆନାଙ୍କର ବହୁତ ଇଚ୍ଛା ଥିଲା । ପଢ଼ାପଢ଼ିରେ ଭଲ ନ କରିବା ଯୋଗୁଁ ମୋତେ ମିଲିଟାରି ଯିବାପାଇଁ ବହୁତ ପ୍ରେରଣା ଦେଲେ । ଭାରତୀୟ ବାୟୁସେନାରେ ଯେତେବେଳେ select ହୋଇଗଲି, ସେ ବେଶି ଖୁସି ହେଲେ । ଟ୍ରେନ୍‌ରେ ଛାଡ଼ିବାକୁ ଆସିଥିଲେ । ବେଙ୍ଗଲୋର ଟ୍ରେନିଂ ସମୟରେ ଗୋଟାଏ HMT Pilot ଘଡ଼ି ଆନାଙ୍କ ପାଇଁ ପଠାଇଥିଲି । ପ୍ରାୟ ସମସ୍ତ ବନ୍ଧୁବାନ୍ଧବ, ସାଙ୍ଗ ସାଥୀଙ୍କୁ ସେ ଘଡ଼ିଟି ଦେଖାଉଥିଲେ ଏବଂ ସାଇତି ରଖିଥିଲେ, ଅଛି ବି ।

ବାପା ଚାଲିଯିବା ପରେ ଘରର ଅସୁବିଧା ସତ୍ତ୍ୱେ ବହୁତ ବର୍ଷ ପରିଶ୍ରମ କରି ନିଜ ଗୋଡ଼ରେ ଠିଆହେବାକୁ ଚେଷ୍ଟାକଲେ । Matricରୁ MA, M.Phil ପର୍ଯ୍ୟନ୍ତ ପହଞ୍ଚିଲେ ।

ଚାକିରୀ କରି ପାଠ ପଢ଼ିଥିଲେ । ଓଡ଼ିଆ ଭାଷା ଓ ସହିତ୍ୟ ପ୍ରତି ବିଶେଷ ଆଗ୍ରହ ଯୋଗୁଁ ଓ.ଆର.ଟିର Auditor ଚାକିରି ଛାଡ଼ି ଗୁଣୁପୁରର ନୂଆ କଲେଜରେ [illegible] ଜଏନ୍ କଲେ ।

ମୋତେ ଓ ପିଲାମାନଙ୍କୁ ସେ ବହୁତ ଭଲ ପାଉଥିଲେ । ସବୁ ବେଳେ ଚିଠି ଓ ଟେଲିଫୋନରେ ପିଲାମାନେ କିମିତି ଅଛନ୍ତି ବୋଲି ପଚାରୁଥିଲେ । ମୋ ସ୍ୱାସ୍ଥ୍ୟ ଓ ପିଲାମାନଙ୍କ ସ୍ୱାସ୍ଥ୍ୟ କିପରି ଭଲ ରହିବ ସେଥିପାଇଁ ସେ ପୁରୋହିତ ଓ ଜ୍ୟୋତିଷମାନଙ୍କୁ ମଧ୍ୟ ଭୁଲି ନଥିଲେ ପରାମର୍ଶ ପାଇଁ । ଗତ ୨୦୦୪ରେ ମୋର ବଡ଼ଧରଣର ପେଟ ଅପରେସନ୍ ହେଲା ପୁନାରେ । ବିଶେଷ ଚିନ୍ତିତ ଥିଲେ ଏବଂ ଅପରେସନ୍ ପରେ ଯେତେବେଳେ ମୁଁ ପୁନାରୁ ବେଙ୍ଗଲୋର ଫେରିଲି, ମୁଁ କେମିତି ସଂପୂର୍ଣ୍ଣ ଭଲ ହେବି ଏବଂ ଭଲ ରହିବି, ସେଥିପାଇଁ ସେ ଭୁବନେଶ୍ୱରରୁ ବେଙ୍ଗଲୋର ଆସି ମୋ ପାଖରେ ୧୫ଦିନ କାଳ ରହିଲେ ଏବଂ ପ୍ରତିଦିନ ସୁଖଦୁଃଖ ହେଉଥିଲେ । ତାଙ୍କର ସାନ ପୁଅ ବେଙ୍ଗଲୋରରେ ଥିଲେ ବି ସେ ମୋ ପାଖରେ ପୁରା ରହିଥିଲେ । ସେ ଚାଲି ଯିବା ସମୟରେ ମୁଁ ମଧ୍ୟ ତାଙ୍କ ପାଖରେ ଥିଲି । ଛୁଟିରେ ଆସିଥିଲି । ଏହା ଗୋଟେ ସଂଯୋଗ(ଯେହେତୁ ସେ ମୋତେ ଭଲ ପାଉଥିଲେ) ।

ସେ ଏହି ବର୍ଷ ପୁରା ଓଡ଼ିଶା ବୁଲି ତାଙ୍କର ସମସ୍ତ ଅନ୍ତରଙ୍ଗ ବନ୍ଧୁବାନ୍ଧବଙ୍କୁ ଭେଟି ଥିଲେ, ବୋଧହୁଏ ସେ ସବୁ ଜାଣିଥିଲେ ।

୧୩୬, କୋଳଥିଆ,ଆଇଗିଣିଆ
ଭୁବନେଶ୍ୱର-୧୯

## ସୂର୍ଯ୍ୟାସ୍ତରଧୂସର ଦିଗନ୍ତ ଓ ସ୍ମୃତିର ରେଖା ଚିତ୍ରରେ ସ୍ୱପ୍ନବିଭୋର ଶିବରାମ ପାତ୍ର

ଜଳଧର ସ୍ୱାଇଁ,

ସେଦିନ ଥିଲା ୨୦୦୫ ମସିହା ଫେବୃୟାରୀ ମାସ ୨୭ ତାରିଖ । ପାରଳାଖେମୁଣ୍ଡିର ସାହିତ୍ୟ ପତ୍ରିକା 'ସିଦ୍ଧାନ୍ତ'ର ଥାଏ ଚତୁର୍ଥ ବାର୍ଷିକ ଉତ୍ସବର ତିଥି । ପାରଳା ସହରରେ ପହଞ୍ଚି ଜାଣିବାକୁ ପାଇଲି ସେଦିନ ଉତ୍ସବର ମୁଖ୍ୟ ଆଲୋଚକ ଆସି ପହଞ୍ଚି ପାରିନାହାନ୍ତି । ମୋର ଏହି ଉତ୍ସବରେ ଯୋଗଦେବା ସହିତ ଅନ୍ୟତମ ଲକ୍ଷ୍ୟ ଥିଲା ସେଦିନର ସେହି ଉତ୍ସବକୁ ମୁଖ୍ୟ ଆଲୋଚକଭାବେ ନିମଂତ୍ରିତ ହୋଇ ଆସୁଥିବା ଅବସରପ୍ରାପ୍ତ ପ୍ରାଧ୍ୟାପକ ଶିବରାମ ପାତ୍ରଙ୍କୁ ଭେଟି ତାଙ୍କଠାରୁ ମୋର ପ୍ରକାଶିତ ପୁସ୍ତକଟି ସଂପର୍କରେ ମତାମତ ସଂଗ୍ରହ କରିବା ସହିତ ପରବର୍ତ୍ତୀ ପୁସ୍ତକଟିର ପ୍ରକାଶନ ନିମନ୍ତେ ବିଚାର ବିମର୍ଷ କରିବା । ନବରଂଗପୁର ଛାଡ଼ି ଭୁବନେଶ୍ୱର ଆସିବା ପରଠୁ ପତ୍ରାଳାପ ବ୍ୟତୀତ ଦେଖା ସାକ୍ଷାତ ହୋଇପାରିନଥିଲା ବୋଲି-୨୦୦୪ ମସିହା ବିଷୁବ ସଂକ୍ରାନ୍ତି ଅବସରରେ 'ସରା'ର ବିଷୁବ ମିଳନ ଉତ୍ସବ ଓ ମୋର 'ଇତିହାସର ପଟ୍ଟଭୂମିରେ କିମ୍ୱଦନ୍ତୀର କୋରାପୁଟ' ପୁସ୍ତକର ଦ୍ୱିତୀୟ ଭାଗଟିର ଉନ୍ମୋଚନ ଉତ୍ସବରେ ଯୋଗଦେବାପାଇଁ ଫୋନ

କରି ପଚାରିଥିଲି । ଥଟ୍ଟା କରି କହିଥିଲେ, ଏବେ ତ ପଢ଼େଇବା ପାଇଟିରୁ ଛୁଟି ମିଳିଲା । ଯିବିନାହିଁ କାହିଁକି ? ମୁଁ ନିଶ୍ଚିତ ଭାବେ ଯିବି । ବଡ଼ ପୁଅ ଏବେ କ'ଣ କରୁଛି? ତା' ଗଳ୍ପ 'ଅନୁପମ ଭାରତରୁ' ପଢ଼ି ଚିଠି ଦେଇଥିଲି । ଅନ୍ୟ କ'ଣ ସବୁ କାର୍ଯ୍ୟକ୍ରମର ଯୋଜନା ଅଛି । ଆଉ କିଏ କିଏ ଆସୁଛନ୍ତି ଇତ୍ୟାଦି ଅନେକ ପ୍ରଶ୍ନ । ନିମନ୍ତ୍ରଣ ରକ୍ଷା କରି ନିର୍ଦ୍ଧାରିତ ସମୟରେ ପହଂଚିଥିଲେ ।

୧୯୮୪ ମସିହାରୁ ୨୦୦୦ମସିହା ଯାଏ ସେ ଯେବେ ବି କୋରାପୁଟ ଆସିଛନ୍ତି, କାହାରି ନା କାହାରି ସାଥୀରେ ଯାଇ ଘରେ ପହଂଚି ମୋତେ ଖୋଜିଛନ୍ତି । କିଛି ନୂଆ ବହି ବା ପତ୍ର ପତ୍ରିକା ସଂଗ୍ରହ କରି ନେଇଛନ୍ତି । ପ୍ରତିଟି ବହିର ଉପଯୁକ୍ତ ମୂଲ୍ୟ ମଧ୍ୟ ଦେଇଛନ୍ତି । ବିନା ମୂଲ୍ୟରେ ସେ କେବେବି ମୋଠାରୁ ପତ୍ରିକାଟିଏ କି ବହିଟିଏ ନେଇଥିବା ମୁଁ ଲକ୍ଷ୍ୟ କରିନି ।

ସକାଳୁ ସକାଳୁ ଏ ସହରର ଅନ୍ୟତମ କବିବଂଧୁ ରାଜକିଶୋର ଦାସଙ୍କୁ ଫୋନ କରି ଯେଉଁ ସଂବାଦଟି ପାଇଲି ତାହା ମୋତେ ସ୍ତବ୍ଧ କରି ଦେଇଥିଲା । ଗୋଟିଏ ଦୁଃସଂବାଦ ପାଇଲାପରେ ମୋତେ ଆଦୌ ଭଲ ଲାଗୁନି । ଆପଣ ବୋଧେ ଜାଣିନଥିବେ ଯେ, ଆଜିର କାର୍ଯ୍ୟକ୍ରମକୁ ଆସିବାକୁ ଥିବା ପ୍ରାଧ୍ୟାପକ ଶିବରାମ ପାତ୍ର ଆଉ ଆସି ପାରିବେ ନାହିଁ । ତାଙ୍କ ଜ୍ୱାଇଁ ଫୋନ କରି ଜଣାଇଛନ୍ତି ଯେ ତାଙ୍କର କାଲି ସଂଧ୍ୟାରେ ହୃଦ୍‌ଘାତରେ ମୃତ୍ୟୁ ଘଟିଛି । ଏହା ମୋ ପାଇଁ ଥିଲା ଏକ ଦାରୁଣ ଦୁଃସଂବାଦ । ଆଖି ଆଗରେ ନାଚି ଯାଉଥିଲା ଏଇ କେଇଟା ମାସତଳେ ଶାବର ଶ୍ରୀକ୍ଷେତ୍ର ମଂଦିର ପ୍ରାଙ୍ଗଣରେ ଗାଳ୍ପିକ ଡଃ: ହୃଷିକେଶ ପଣ୍ଡା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡଃ ଭାଗବତ ଶୁକ୍ଳ, ଭୈରବ ମହାପାତ୍ର, ଗାଳ୍ପିକ ନାରାୟଣ ପଣ୍ଡା, କବି ଉମାକାନ୍ତ ଦାଶ, ଗବେଷକ ଡ: ରାଜେନ୍ଦ୍ର ପାଢ଼ୀ, ସମାଲୋଚକ ତଥା ସମାଜସେବୀ-ବିଜୟ ଉପାଧ୍ୟାୟ, ଡ: ବସନ୍ତ କିଶୋର ସାହୁ ତଥା ସମବେତ ଶତାଧିକ କବି କବୟିତ୍ରୀମାନଙ୍କ ସହିତ ତାଙ୍କର ସୌଜନ୍ୟ ପୂର୍ଣ୍ଣ ସାକ୍ଷାତ ତଥା ଆଳାପ ଆଲୋଚନାର ଦୃଶ୍ୟ । ମନେ ପଡ଼ିଯାଉଥିଲା ଆଲୋଚନା ପ୍ରସଙ୍ଗରେ କିପରି ସେ କହିଥିଲେ-"ଆମ ସାହିତ୍ୟ ସଂସ୍କୃତିରେ ଥିବା ବିଶ୍ୱ ଦୃଷ୍ଟି ଆମକୁ ମାନବବାଦି ଚେତନାରେ ଋଦ୍ଧିମନ୍ତ କରି ନୀତି ଓ ନୈତିକତା'ର ପଥରେ ପରିଚାଳିତ କରୁଛି" ଏବଂ ଏ ସଂପର୍କିତ ତାଙ୍କ ଦ୍ୱାରା ଉପସ୍ଥାପିତ ଆମ ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ଗୂଢ଼ ସଂପର୍କର ବିଶଦ ବ୍ୟାଖ୍ୟା ତଥା 'ଏ ସୃଷ୍ଟିର ଉଦାର ମଧୁର ଐଶ୍ୱର୍ଯ୍ୟମୟ ପ୍ରାଣ ସତ୍ତାକୁ ଛୁଇଁବା କ୍ଷେତ୍ରରେ ଆମ ଅକ୍ଷମତା' ଏବେବି କେମିତି ବାରି ହୋଇପଡୁଛି ଇତ୍ୟାଦିର ପ୍ରାଣସ୍ପର୍ଶି ବାର୍ତ୍ତା ।

ବାସ୍ତବରେ ମୋ ଜାଣିବାରେ ସେଥିଲେ ଜଣେ ଉଦାର ପ୍ରାଣ ସ୍ନେହଶୀଳ ସାହିତ୍ୟ ରସପିପାସୁ ବିରଳ ବ୍ୟକ୍ତିତ୍ୱ । ଅନ୍ୟର ସୃଷ୍ଟିପ୍ରତି ତାଙ୍କର ଶ୍ରଦ୍ଧାଶୀଳ ଭାବକୁ ଓ ପ୍ରେରଣା ପ୍ରଦ ଉତ୍ସାହକୁ ମୁଁ ଖୁବ୍ ନିକଟରୁ ପ୍ରତ୍ୟକ୍ଷ କରିଛି । ୧୯୯୦ରୁ ୧୯୯୫ ପର୍ଯ୍ୟନ୍ତ ଦୀର୍ଘ ୫ବର୍ଷ କାଳ ସେ ଆମ ସହିତ 'ଓଡ଼ିଆ ଲେଖକ ପାଠକ ସମ୍ମେଳନ'ର ଉପସଭାପତି ଭାବେ ରହି ସମ୍ମେଳନର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସହଯୋଗ' ଦେଇଛନ୍ତି । ପତ୍ରିକା ସଂପାଦନା କ୍ଷେତ୍ରରେ ହେଉ କି ସ୍ମରଣିକା ପ୍ରକାଶନ କ୍ଷେତ୍ରରେ ହେଉ

ତାଙ୍କ ପରାମର୍ଶ କାର୍ଯ୍ୟକାରୀ ହୋଇଛି । ଦୀର୍ଘ ତିନି ଦିନ ବ୍ୟାପି ସମ୍ମେଳନର କାର୍ଯ୍ୟକ୍ରମ ଭକ୍ତିମଣ୍ଡପ ସୁନାବେଡ଼ାଠାରେ ହେଉ କି, ସେମିଳିଗୁଡ଼ା ମହାବିଦ୍ୟାଳୟ ପରିସରରେ ହେଉ, ଯେଉଁଠି ଯେତେବେଳେ ଆମେ କାର୍ଯ୍ୟକ୍ରମ ଆରମ୍ଭ କରିଛୁ, ସେଠି ସେ ଉପସ୍ଥିତ ରହି ଆମର ଭୁଲ ବାଛିଛନ୍ତି ଓ ନୂଆ କାର୍ଯ୍ୟକ୍ରମଟିଏ ଆଣି ଯୋଡ଼ି ଦେଇଛନ୍ତି । କେତେବେଳେ କେଉଁଠି କେଉଁ ସ୍ୱର୍ଗତ ସାରସ୍ୱତ ସ୍ରଷ୍ଟାଙ୍କ ନାମରେ ତୋରଣଟିଏ କରାଯିବାର ଆବଶ୍ୟକତା ଦର୍ଶାଇଛନ୍ତି ତ, ଆଉ କେତେବେଳେ ପୁସ୍ତକ ଓ ପତ୍ରପତ୍ରିକା ପ୍ରଦର୍ଶନୀ ପାଇଁ ଓ କେତେବେଳେ ସମ୍ମେଳନ କାର୍ଯ୍ୟ ସହିତ ସାଂସ୍କୃତିକ କାର୍ଯ୍ୟକ୍ରମ ସବୁକୁ ଯୋଡ଼ିଦେବା ପାଇଁ ପ୍ରସ୍ତାବ ଦେଇଛନ୍ତି । ତାଙ୍କ ପ୍ରସ୍ତାବଗୁଡ଼ିକ ସବୁବେଳେ ସବୁଠି ଯୁକ୍ତିଯୁକ୍ତ ମନେ ହୋଇଥିବାରୁ, କେବେ ବି କେଉଁଟି କାଟ ଖାଇନି । ଏତଦ୍‌ବ୍ୟତୀତ ପ୍ରତିବର୍ଷ ଏଇ ତିନିଦିନିଆ ସମ୍ମେଳନ କାର୍ଯ୍ୟକ୍ରମରେ ଯେତେବେଳେ ଯେଉଁ ଅଧିବେଶନରେ ଆମେ କୌଣସି ଆଲୋଚକଙ୍କର ଅନୁପସ୍ଥିତି ଅନୁଭବ କରିଛୁ, ସେତେବେଳେ ସେଇଠି ଯୋଡ଼ିଦେଇଛୁ ଅଧ୍ୟାପକ ଶିବରାମ ପାତ୍ରଙ୍କ ନାମ । ବିନା ଆପତ୍ତିରେ ସେ ମଂଚକୁ ଯାଇଛନ୍ତି । ଯେଉଁଠି ଯେତେବେଳେ ଯେଉଁ ବକ୍ତବ୍ୟ ଉପସ୍ଥାପନ କରିଛନ୍ତି, ସବୁ ସୁଚିନ୍ତିତ ଅନୁଭୂତି ସଂପନ୍ନ ଓ ଉପଲବ୍ଧି ସିଦ୍ଧ-ମନେ ହୋଇଛି । ପ୍ରତିଟି ବକ୍ତବ୍ୟ ଅର୍ଥପୂର୍ଣ୍ଣ, ବିଚାରପୁଷ୍ଟ ବୋଲି ଶ୍ରୋତୃ ମହଲ ଅନୁଭବ କରିଛନ୍ତି । ସଂଯତଭାବେ ଭାଷାର ପ୍ରୟୋଗ ଓ ସାଧାରଣ ପ୍ରଚଳିତ ଆଂଚଳିକ ଶବ୍ଦର ବହୁଳ ବ୍ୟବହାର ସବୁବେଳେ ତାଙ୍କ ଭାଷଣକୁ ବେଶ୍ ପ୍ରାଣବନ୍ତ ଓ ରୁଚି ସଂପନ୍ନ କରିଛି । ୧୯୮୪ରୁ ୨୦୦୪ ଯାଏଁ ଦୀର୍ଘ କୋଡ଼ିଏ ବର୍ଷର ସଂପର୍କର ଏଇଠି ଇତି ହୋଇଗଲା ଭାବିଲା ବେଳକୁ ନିଜକୁ ଖୁବ୍ ଅବଶ ଲାଗୁଥିଲା ପ୍ରଥମ ସାକ୍ଷାତର କଥା । ମୁଁ ତାଙ୍କୁ ଚିହ୍ନିଲା ବେଳକୁ ସେ ମୋତେ ଚିହ୍ନି ସାରିଥିଲେ । ମୋର ଆକାଶ ବାଣୀ ଦ୍ୱାରା ପ୍ରଚାରିତ କବିତା ଗୁଡ଼ିକ କାଳେ ତାଙ୍କୁ ଖୁବ୍ ଭଲ ଲାଗିଥିଲା ବୋଲି ପତ୍ରରେ ଜଣାଇ ଦେଇଥିଲେ । ଅଧ୍ୟାପକ ରମେଶ ଦାଶଙ୍କ ଘରଆଡ଼େ ଯାଉ ଯାଉ ଦିନେ ପଶି ଆସିଥିଲେ ସଭା କାର୍ଯ୍ୟାଳୟ ଭିତରକୁ । ମୋତେ ପରିଚୟ ପଚାରି କୁଣ୍ଢେଇ ପକେଇ କହିଥିଲେ ମୁଁ ଶିବରାମ ପାତ୍ର । ଗୁଣପୁରରୁ ଆସିଛି ।

ସତ କହିବାକୁ ଗଲେ, ମୁଁ ତାଙ୍କୁ ଯେମିତି ଦେଖିଛି, ଯେମିତି ଜାଣିଛି ଓ ଚିହ୍ନିଛି, ସେମିତି ଲେଖିବା ପାଇଁ ହୁଏତ ମୋ ପାଖରେ ଶବ୍ଦ ନାହିଁ ।

ତାଙ୍କ ପବିତ୍ର ଆତ୍ମା ପାଇଁ ମୋର ଗଭୀର ଶ୍ରଦ୍ଧାଞ୍ଜଳି ।

ପୂଜାରୀପୁଟ ରୋଡ଼
କୋରାପୁଟ-୭୬୪୦୨୦

# ସ୍ମୃତିରେ

ପ୍ରୀତିଧାରା ସାମଲ

ମୁଁ ଭୁବନେଶ୍ୱର ପୁସ୍ତକମେଳାରେ ବୁଲୁଥାଏ ସୁଜୟ (ମୋ ସ୍ୱାମୀ)ଙ୍କ ସହ । ହଠାତ୍ ପଛରୁ କାହା ଡାକଶୁଣି ଫେରିଚାହିଁଲୁ । ଦେଖିଲୁ ଶିବରାମ ମଉସା ଦଉଡ଼ି ଦଉଡ଼ି ଆସୁଛନ୍ତି ଆମ ଆଡ଼କୁ । ମୁଁ ବି ଖୁସି ହେଇଗଲି ଓ ସୁଜୟଙ୍କୁ କହିଲି ମଉସାଙ୍କ ସଂପର୍କରେ । ଆମ ନିକଟରେ ପହଞ୍ଚିଲାବେଳକୁ ତାଙ୍କ ଆଖିରେ ଆନନ୍ଦ ଚିକ୍‌ମିକ୍ କରୁଥିଲା । ଆମେ ଦୁହେଁ ପ୍ରଣାମ କଲୁ । ସେ ଆମକୁ ଆଶୀର୍ବାଦ କରି ଟିକିଏ ଅଭିମାନଭରା ସ୍ୱରରେ କହିଲେ 'ତମେମାନେ ଏଇଠିକି ଆସି ଫେରିଯାଉଚ, ଅଥଚ ଆମ ଘରଆଡ଼େ ଟିକିଏ ଆସୁନା' ତାଙ୍କ କଥାରେ ଏତେ ଆତ୍ମୀୟ ଆନନ୍ଦ, ଯେ କୌଣସି ମଣିଷକୁ ଭାବବିହ୍ୱଳ କରିଦେଇପାରେ । ମୁଁ ତାଙ୍କୁ ଜଣେଇଲି ମୋର କବିତାସଂକଳନ ପ୍ରକାଶିତ ହେଇଛି । ସିଏ ଖୁସୀ ହେଲେ । ମତେ ସେ ଟାଣି ଟାଣି ନେଲେ ଗୋଟିଏ ବହି ଦୋକାନ ନିକଟକୁ । କହିଲେ 'ଆ, ମୁଁ ତତେ କେତୋଟି ଭଲ ବହି ଦେଖେଇବି । ତୋ ପାଇଁ ଉପାଦେୟ ହେବ ।' ମୁଁ ସେଇଠୁ କିଣିଲି 'ଆମ ସମୟର ସୃଜନୀ' ।

ଶିବରାମ ମଉସା ମୋ ବାପାଙ୍କର ଜଣେ ପୁରାତନ ଘନିଷ୍ଠ ବନ୍ଧୁ । ସେ ସାହିତ୍ୟ ସଭାମାନଙ୍କରେ ଉପସ୍ଥିତ ରହି ଆରମ୍ଭରୁ ଶେଷପର୍ଯ୍ୟନ୍ତ ପ୍ରତ୍ୟେକ କବିତା ଓ ଗଳ୍ପକୁ ଅତ୍ୟନ୍ତ ଧୈର୍ଯ୍ୟର ସହ ଶୁଣନ୍ତି ଓ ଭଲ ସୃଷ୍ଟିର ପ୍ରଶଂସା କରନ୍ତି ଏବଂ ଦୋଷତ୍ରୁଟି ଥିଲେ ତର୍ଜମା କରନ୍ତି । ସୁଚିନ୍ତିତ ଓ ଯଥାଯଥ ମତାମତ ଦେଇ ଆସରକୁ ଆହୁରି ଜମେଇ ଦିଅନ୍ତି । ମୋର କଞ୍ଚାହାତର କବିତାର ଅପରିପକ୍ୱତା ଅନେକ ସମୟରେ ସେ ସୂଚେଇ ଦେଇ ମତେ ସଚେତନ କରିଛନ୍ତି । କେବଳ ଅବିଭକ୍ତ କୋରାପୁଟ ଜିଲ୍ଲାରେ ନୁହେଁ ସମଗ୍ର ଓଡ଼ିଶାରେ ଯେ କେହି ତାଙ୍କ ସାହିତ୍ୟ ପ୍ରୀତି ଓ ଦାନକୁ ଶ୍ରଦ୍ଧା ଓ ସମ୍ମାନର ସହ ମନେ ପକେଇପାରେ ।

ତାଙ୍କ ମନରେ କୋରାପୁଟ ଓ କୋରାପୁଟର ସଂସ୍କୃତି ପ୍ରତି ଶ୍ରଦ୍ଧା ଅକ୍ଷୁଣ୍ଣ ଥିଲା । ଏଣୁ ସେ ମଝିରେ ମଝିରେ କୋରାପୁଟ ଆସୁଥିଲେ । ଆମେ ବି ଅନେକ ସମୟରେ ଆଲୋଚନା ମାଧ୍ୟମରେ ତାଙ୍କୁ ମନେପକଉଥିଲୁ । ସେଦିନ ନାରାୟଣ ପାଟଣାରେ 'ଶିବରାମପାତ୍ର'ଙ୍କ ସଂପର୍କରେ ନିଜ ବକ୍ତବ୍ୟରେ କହୁଥିଲେ ଶ୍ରୀ ନାରାୟଣ ପଣ୍ଡା ଓ ଅନ୍ୟମାନେ । ଠିକ୍ ସେହି ସମୟରେ ଆମେ ସମସ୍ତେ ଅନୁଭବ କରୁଥିଲୁ ସେ ଆମ ପାଖରେ ଠିଆହେଇ ହସୁଚନ୍ତି । ଚିରପରିଚିତ ଦାଢ଼ି ଭିତରୁ ହସ ଓ କାନ୍ଧରେ ବ୍ୟାଗ୍ । ସେତେବେଳେ ଆମେ କେହି ବି ଜାଣିନଥିଲୁ ଯେ ସେଇ କେତେ ଘଣ୍ଟା ପୂର୍ବରୁ ସେ ପାର୍ଥିବ ଶରୀର ତ୍ୟାଗ କରିଛନ୍ତି । କିନ୍ତୁ ଅତି ଆଶ୍ଚର୍ଯ୍ୟଜନକ ଭାବରେ ସେ ସେଇଠି ଉପସ୍ଥିତ ଥିଲେ ବୋଧହୁଏ ଆମ ସହ ଶେଷଦେଖା କରିବାକୁ ଆସିଥିଲେ । ତା'ପରଦିନ ଆମେ ତାଙ୍କ 'ଦେହାନ୍ତ'ର ଖବର ଶୁଣି ମର୍ମାହତ ହେଇପଡ଼ିଥିଲୁ । ଖବରକାଗଜରୁ ଏ ଖବର ପଢ଼ି ସମସ୍ତେ ସ୍ତବ୍ଧ ଓ ଚକିତ ହୋଇପଡ଼ିଲୁ । ନିଜ ଭିତରେ ତାଙ୍କୁ ଖୋଜିବା ବ୍ୟତୀତ କେହି କାହାକୁ କିଛି କହି ପାରୁ ନଥିଲୁ ।

'ଦେବାଶ୍ରିତ'
ପୂଜାରୀପୁଟରୋଡ଼,କୋରାପୁଟ,ଓଡ଼ିଶା

# ରେଳ ଉପରୁ ଶିବଦର୍ଶନ

ପ୍ରଦୀପ କୁମାର ରଥ

୨୦୦୫ ମସିହା ଫେବୃୟାରୀ ମାସର ମଧ୍ୟ ଭାଗରେ ମୋ ଛାତ୍ରୀଠାରୁ ଫକୀରମୋହନ ସେନାପତିଙ୍କର ଗୋଟିଏ ଦୁର୍ଲ୍ଲଭ ଦାଢ଼ିଯୁକ୍ତ ଯୋଗୀ ବେଶର ଛବିଟିଏ ପାଇଲି । ଅଜା କଲେଜକୁ ଆସିଥିଲେ ଆପଣଙ୍କୁ ଦେଖା କରିବାକୁ, ଆପଣଙ୍କୁ ନ ପାଇ ଏଇ ଛବିଟି ଆପଣଙ୍କୁ ଦେଇଦେବା ପାଇଁ କହି ସେ ଚାଲିଗଲେ ବୋଲି ଛାତ୍ରୀ ଜଣକ କହିଲା । ପାଞ୍ଚ ଦିନ ପରେ ସେ ପୁଣି ଆସି କାନ୍ଦି କାନ୍ଦି କହିଲା- 'ଅଜା ଚାଲିଗଲେ' । ଅଜାଣତରେ କିଛି କ୍ଷଣ ପାଇଁ ମୁଁ ଚାଲିଯିବା ଅନୁଭୂତ ହେଲା । କଲେଜରେ ରହି ନପାରି ଘରକୁ ଫେରିଯିବା ନିଷ୍ପତ୍ତି ନେଇ ମୁନିଗୁଡ଼ା ରେଳ ଷ୍ଟେସନରୁ ରାୟଗଡ଼ା ଯାଉଥିବା ଗାଡ଼ିରେ ବସିଲି । ରେଳଯାତ୍ରା ରାୟଗଡ଼ା ଅଭିମୁଖେ ଆଗକୁ ଆଗକୁ ଆରମ୍ଭ ହୁଏ, ଆଉ ମୋ ମନର ଯାତ୍ରା ୧୯୭୦ ଦଶନ୍ଧିର ପ୍ରଥମାର୍ଦ୍ଧର ଗୁଣପୁର ମହାବିଦ୍ୟାଳୟର ସେଇ 'ଶିପା' ଓଡ଼ିଆ ସାର୍‌ଙ୍କ ସ୍ମରଣରେ ପଛକୁ ପଛକୁ ଚାଲେ ।

'ଶିପା' ଥିଲା ଶିବରାମ ପାତ୍ରଙ୍କ ସଂକ୍ଷିପ୍ତ ଓଡ଼ିଆ ଦସ୍ତଖତ । ସେ ଗୁଣପୁର ମହାବିଦ୍ୟାଳୟରେ ଓଡ଼ିଆ ବିଭାଗର ମୁଖ୍ୟ ଥାନ୍ତି । ବଡ଼ ଭାଇଙ୍କ ସାହିତ୍ୟ ଲେଖାଲେଖିରେ ରୁଚିଥିବାରୁ, ସାର୍ ବେବେବେଳେ ଘରକୁ ଆସନ୍ତି । ବାପାଙ୍କ ସହ ଦେଖାହୁଏ, ମାଆଙ୍କ ସହ ବି ବାର୍ତ୍ତାଳାପ ହୁଏ । ଧୀରେ ଧୀରେ ସଂପର୍କ ବୃଦ୍ଧିପାଏ ।

ସାର୍‌ଙ୍କ ଅସାଧାରଣ ସାହିତ୍ୟ ପ୍ରୀତି ପାଇଁ ମୁଷ୍ଟିମେୟ ବ୍ୟକ୍ତି ପଛରୁ ଉପହାସ କରନ୍ତି । ସେମାନଙ୍କ ପ୍ରତି ତାଙ୍କର ଦ୍ୱେଷ ନଥାଏ । ବରଂ ସେ ଉଦାସୀନ ଚିତ୍ତରେ ଏକାକୀ ଲକ୍ଷ ସ୍ଥଳୀ ଆଡ଼କୁ ଚାଲିଥାନ୍ତି । ଗୁଣପୁର ଉପଖଣ୍ଡରୁ ଅସଂଖ୍ୟ ନୂଆ ଲେଖକ, କବି, ପ୍ରାବନ୍ଧିକ, ଗାଳ୍ପିକ, ନାଟ୍ୟକାର ଆଦି ସୃଷ୍ଟି ହୁଅନ୍ତି । ଓଡ଼ିଆ ସାହିତ୍ୟର କିଛି ଛପା କାମ ମଧ୍ୟ ଗୁଣପୁରରୁ ଆରମ୍ଭ ହୁଏ । ଅଳ୍ପ ସଂଖ୍ୟକ ସହଯୋଗୀଙ୍କ ସହାୟତାରେ ସାର୍ ସାହିତ୍ୟ କ୍ଷେତ୍ରରେ ସମଗ୍ର ଗୁଣପୁର ଉପଖଣ୍ଡରେ ଏକ ନବଜାଗରଣ ସୃଷ୍ଟି କରିବାରେ ସମର୍ଥ ହୁଅନ୍ତି ।

ମୁନିଗୁଡ଼ା ମହାବିଦ୍ୟାଳୟରେ ମୁଁ ଇତିହାସ ଅଧ୍ୟାପକ ଭାବେ ଯୋଗ ଦେଇଥାଏ । ରଥଯାତ୍ରା ଦିନ ଗୁଣପୁରରେ ସାର୍‌ଙ୍କ ସହ ମୋର ଭେଟ ହୁଏ । ଉକ୍ତ କଥାବାର୍ତ୍ତା ଯେ ମୋର ଭାବୀ ଜୀବନସାଥୀ ସହ ଜୀବନଯାତ୍ରାର ଅୟମାରମ୍ଭ ବୋଲି ମୁଁ ଜାଣି ନଥାଏ । ପ୍ରସ୍ତାବିତ କନ୍ୟାଟି ଗୁଣପୁରର ବାଳିକା ବିଦ୍ୟାଳୟରେ କ୍ରୀଡ଼ା ଶିକ୍ଷୟତ୍ରୀ । ସାର୍ ଓ ଦିଦିଙ୍କ ଘରେ ମୋର 'କନ୍ୟାଦେଖା' ସଂପନ୍ନ ହୁଏ । ୧୯୮୯ ମସିହା ଫେବୃୟାରୀ ୧୫ ତାରିଖ ଦିନ ମୋର ଜୀବନ ନାୟିକା ସହିତ ଆମ ମହା ସଂସାରର ପ୍ରଥମ ଭାଗ ଆରମ୍ଭ ହୁଏ । ସାର୍, ବିଷ୍ଣୁପ୍ରିୟା ସହିତ ମୋର ବିବାହ ସଂପନ୍ନ କରାନ୍ତି । ଆମ ପରିବାରକୁ ବିଷ୍ଣୁ ଭକ୍ତି

ବୋହୂଟିଏ ଦେଇ ତଥା ଗୁଣପୁର ଅଂଚଳକୁ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ଦେଖାଇ, ସାର୍‌ ଅନ୍ୟତ୍ର ବଦଳି ହୋଇ ଗୁଣପୁର ଛାଡ଼ନ୍ତି । ସେ ବିଷ୍ଣୁର ବୋହୂ ଭୂମିକା ଆଶାନୁରୂପ ଭାବେ ସଂପାଦନ କରିବା ଖବର ରଖନ୍ତି । ଯେତେବେଳେ ସାର୍‌ ଖୋଦ୍‌ ଶାଶୁଶ୍ୱଶୁରଙ୍କ ମୁଖମଣ୍ଡଳରୁ ତାଙ୍କର ବୋହୂର ପ୍ରଶଂସା ଶୁଣନ୍ତି, ସେ ସାହିତ୍ୟରେ ନୋବେଲ୍‌ ପୁରସ୍କାର ବିଜେତାଙ୍କ ଠାରୁ ମଧ ଅଧିକ ଆନନ୍ଦିତ ଦେଖାଯାଆନ୍ତି । ଯେବେ ବି ସାର୍‌ଙ୍କ ଆବିର୍ଭାବ ନିଜ ପୁରୁଣା ସ୍ଥାନ ଗୁଣପୁରରେ ହୁଏ, ହାତରେ ଥାଏ କିଛି ନୂଆ ଓଡ଼ିଆ ବହି ଏବଂ କିଛି ତାଜା ସାହିତ୍ୟ ଖବର । ସାଙ୍ଗସାଥିଙ୍କ ଘର ଘର ବୁଲି ସାର୍‌ ବାଣ୍ଟନ୍ତି ଓଡ଼ିଆ ବହି । ମୋତେ ବି ଦିଅନ୍ତି । ସାର୍‌ଙ୍କ ବାରମ୍ବାର ତାଗିଦ୍‌ ସତ୍ତ୍ୱେ, ଇତିହାସ ଅଧ୍ୟାପକ ଭାବେ 'ବଂଶଧାରାନଦୀ ତୀର ସ୍ଥିତ ସ୍ଥାପତ୍ୟ ଓ ମନ୍ଦିର କଳା' ବିଷୟରେ ଗବେଷଣାତ୍ମକ କାର୍ଯ୍ୟଟିକୁ କରିପାରିନଥିବାରୁ ଗାଳି ବି ଦିଅନ୍ତି । ସାର୍‌ କହନ୍ତି, ଆବଶ୍ୟକ ହେଲେ, ତୁମ ନିଜ ଅଂଚଳର ଅନେକ ଅବହେଳିତ ଗବେଷଣାଯୋଗ୍ୟ ବାକିଥିବା କାମସବୁ ଧରିବାକୁ, ପ୍ରିନ୍‌ସିପାଲ୍‌ କାମ ଛାଡ଼ । ତାଙ୍କର ଆକାଂକ୍ଷା ପୂରଣ ହୋଇପାରିନି । ଅବଶୋଷ ରହିଗଲା ।

ସାର୍‌ଙ୍କ ନାତୁଣି ତଥା ମୋ ଛାତ୍ରୀ ଠାରୁ ପ୍ରାପ୍ତ ସାର୍‌ଙ୍କ ଅନ୍ତିମ ଉପହାରଟିରେ ଛାଡ଼ିଥିବା ସଂକେତଟିକୁ ପର୍ଯ୍ୟାଲୋଚନା କରୁ କରୁ ରାୟଗଡ଼ା ଷ୍ଟେସନ୍‌ ଆସିଲେ । ଏବଂ ମୋର ରେଳଯାତ୍ରା ଶେଷ ହେଲା । କିନ୍ତୁ 'ଶିବଦର୍ଶନ' ସରିନି, ସରିପାରିବନି । ସେ ତ ଚିରନ୍ତନ ସତ୍ୟର ପ୍ରତିରୂପ ମାତ୍ର । ଏଥିରେ ଲୀନ ହେବା ପୂର୍ବରୁ କିଏ ବିରକ୍ତ ହୋଇପାରେ ? ବ୍ରହ୍ମଲୀନର ପ୍ରତୀକ୍ଷାରେ ଆମ ଜୀବନଦର୍ଶନ ବଂଚି ରହୁ, ଠିକ୍‌ ସାର୍‌ଙ୍କ ଭଳି ।

ମୁନିଗୁଡ଼ା ମହାବିଦ୍ୟାଳୟ, ମୁନିଗୁଡ଼ା

## ଶ୍ରଦ୍ଧା ସୁମନ

ଉମାକାନ୍ତ ଦାଶ

ଶାବର ଶ୍ରୀକ୍ଷେତ୍ରରେ 'ସଭା' ଆନୁକୂଲ୍ୟରେ ଆୟୋଜିତ ସାହିତ୍ୟ ସଂଧ୍ୟାରେ ଶିବରାମବାବୁଙ୍କ ସହ ଶେଷ ସାକ୍ଷାତ ହୋଇଥିଲା । ଅବସର ନେଲାପରେ ଶିବରାମବାବୁ ଅଧିକ ସଂଯତ ଜଣା ପଡୁଥିଲେ ।

ପ୍ରତିଟି କଥା ତାଙ୍କର ଓଜନିଆ । ନିଷପଟ ହୃଦୟ ହେତୁ ସବୁବେଳେ ନିର୍ଭୀକ । ବେଳେବେଳେ ଦୁଃସାହସୀ ଜଣା ପଡୁଥାନ୍ତି ଶିବରାମବାବୁ । ଯୁଆଡ଼େ ଯାଆନ୍ତି ଅନୁଷ୍ଠାନଟିଏ ଠିଆ କରନ୍ତି । ସେ ତ ସ୍ୱୟଂ ଏକ ଅନୁଷ୍ଠାନ । ତାଙ୍କୁ ଘେରି ଅନୁଷ୍ଠାନ ହୋଇଯାଏ ଆପେ ଆପେ । ସାଂଗଠନିକ ଶକ୍ତି ତାଙ୍କର ଅସୀମ । ସେ ଯେମିତି କାଉଁରୀ ଜାଣିଥାନ୍ତି । ଲୋକ ଏକାଠି ହୋଇ ପଡ଼ନ୍ତି ଆପେ ଆପେ । ନହେବା କଥାକୁ କରି ଥୋଇଦେବାର ଅଦମ୍ୟ ପ୍ରେରଣା ଯେମିତି ତାଙ୍କ ପାଇଁ ଝରି ପଡୁଥାଏ ଉପରୁ ।

ସୃଜନଶୀଳତା ପାଖରେ ସହଜରେ ନଇଁ ପଡ଼ନ୍ତି । ଅନେକ ସ୍ରଷ୍ଟାଙ୍କୁ ସେ ନିର୍ମାଣ କରିଛନ୍ତି, ପ୍ରେରଣା ଦେଇଛନ୍ତି । ସୃଷ୍ଟି ଦେଖିଲେ ସ୍ତୁତି ଅଜାଡ଼ି ଦିଅନ୍ତି । ପେଶାରେ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକ ହେଲେହେଁ ସେ ଅନେକଙ୍କ ମଧ୍ୟରେ ବାରି ହୋଇପଡ଼ନ୍ତି ।

ତାଙ୍କର ଅଧ୍ୟୟନଶୀଳତା ହେତୁ କ୍ଷୁଦ୍ର ହେଉକି ବିଶାଳ, ସୃଷ୍ଟି ମାତ୍ରକେ ନମସ୍ୟ ତାଙ୍କ ଦୃଷ୍ଟିରେ । ମୌଳିକତାରେ ତାଙ୍କର ମନଲାଖି ରହିଯାଏ । ଅନେକ ମନନଶୀଳ ପ୍ରବନ୍ଧର ସ୍ରଷ୍ଟା ଶିବରାମବାବୁ ।

ସିଏ ଗୁଣପୁରଠାରେ ଅଧ୍ୟାପକ ଥିଲାବେଳେ କେବେ ପ୍ରଥମେ ତାଙ୍କ ପରିଚୟ ହୋଇଥିଲା । ଅଳ୍ପ କଥାବାର୍ତ୍ତାରେ ପୁରୁଣା ବନ୍ଧୁ ପରି ଜଣାଗଲେ ଶିବରାମବାବୁ । ମତେ କହିଥିଲେ, ''ଆପଣ ଆଉ ମୁଁ ସେଇ ଏକା, ହେଲେ ମୁଁ 'ରାମ' ଟାକୁ ସାଙ୍ଗରେ ନେଇଛି । ବେଳେବେଳେ ଟିକିଏ ତୀର ଚଳେଇବାକୁ ମନ ହୁଏ କିନା ।'' ଅନେକଥର ତା ପରେ ସାକ୍ଷାତ, ଆଳାପ ଆଲୋଚନାର ଅବକାଶ ମିଳିଛି । ଟିକିଏ ତାଙ୍କ ସହ କଥାହେଲେ, ତର୍କବିତର୍କ କଲେ ଆନନ୍ଦ ମିଳେ । 'ଶାବର ଶ୍ରୀକ୍ଷେତ୍ର ସମାଚାର' ଉପରେ ମନ୍ତବ୍ୟ ଦେଇ କାର୍ଡ଼ଟିଏ ଲେଖିଥିଲେ । ବ୍ୟକ୍ତିଗତ ଭାବେ ମୁଁ ଉତ୍ସାହିତ ହୋଇଥିଲି । ସଙ୍ଗେ ସଙ୍ଗେ ଟେଲିଫୋନ କରି ତାଙ୍କୁ କୃତଜ୍ଞତା ଜଣାଇଥିଲି । ସେ କହିଥିଲେ, 'ମୋ ମନ୍ତବ୍ୟ କଟୁ ଥିଲା ଯେ ।' ମୁଁ କହିଲି ''କଟୁ' ମଧ୍ୟ ଏକ ରସ ହେତୁ ଆସ୍ୱାଦଯୋଗ୍ୟ ।'' ବନ୍ଧୁ ବଡ଼ ହସଟାଏ ହସିଥିଲେ ।

ସାରା ଜୀବନ ସଂଗ୍ରାମଶୀଳ ବ୍ୟକ୍ତିତ୍ୱଟିଏ, ଅଧ୍ୟବସାୟର ମୂର୍ତ୍ତିମନ୍ତ ପ୍ରତୀକଟିଏ । କ୍ଳାନ୍ତିହୀନ ଜୀବନ ଜୀଇଁବାର କଳାରେ ପ୍ରବୀଣ ପୁରୁଷଟିଏ । ନିରୋଗ ଅବସ୍ଥାରେ ହଠାତ୍ ଚାଲିଗଲେ । ଶେଜରେ ପଡ଼ି ନାହାନ୍ତି, ଡାକ୍ତରଙ୍କ ଦ୍ୱାରସ୍ଥ ହୋଇ ନାହାନ୍ତି । ତରତର ହେବା ତାଙ୍କର ଚିର ଅଭ୍ୟାସ । ସେଇ ଅଭ୍ୟାସ ଗଲାବେଳକୁ ବି । କର୍ମରତ ଅବସ୍ଥାରେ ସେ ବିଦାୟ ନେଲେ । ଲକେଇ ଯାଉଛି ଆଖି । ବାରମ୍ବାର ଶ୍ରଦ୍ଧା ସୁମନ ତାଙ୍କରି ପବିତ୍ର ସ୍ମୃତିରେ ନିବେଦନ କରୁଛି ।

କୋରାପୁଟ

## ଶିବରାମ ପାତ୍ର ଥିଲେ ବୋଲି !

ମୁନା ତ୍ରିପାଠୀ

କିଛିଦିନ ତଳର କଥା, ନବରଙ୍ଗପୁର ଜିଲ୍ଲାର ଜଣେ ପ୍ରସିଦ୍ଧ ଆଦିବାସୀ ନାଟଗୁରୁଙ୍କ ଦେହାନ୍ତ ହୋଇଗଲା । ସଦର ନବରଙ୍ଗପୁରଠାରୁ ୧୨ କିଲୋମିଟର ଦୂର ଏକ ନିପଟ ମଫସଲ ଗାଁରେ, ନାଟଗୁରୁଙ୍କ ଜନ୍ମ । ସେ ଦୀର୍ଘ ୪୦ବର୍ଷ ଧରି ମୁକ୍ତ ଆକାଶ ତଳେ ରକମ, ରକମ ଆଦିବାସୀ ଲୋକନୃତ୍ୟକୁ ଜନମାନସରେ ଏପରି ପ୍ରତିଫଳନ କରିଥିଲେ ଯେ, ପ୍ରତିବର୍ଷ ହେଉଥିବା ନବରଙ୍ଗପୁର ଲୋକ ମହୋତ୍ସବରେ ତାଙ୍କୁ 'ମଣ୍ଡେଇ ଶ୍ରୀ' ନବରଙ୍ଗପୁର ଜିଲ୍ଲାପାଳ ପ୍ରଦାନ କରିଥିଲେ । କୋରାପୁଟ ଉତ୍ସବ 'ପରବ'ରେ ମଧ୍ୟ ସେ ସମ୍ମାନିତ । ହଠାତ୍ ରାସ୍ତା ଦୁର୍ଘଟଣାରେ ୨୦୦୫ ଡିସେମ୍ବରରେ ଗୁରୁଙ୍କ ନିଧନ ହୋଇଗଲା । ଏହି ନାଟଗୁରୁଙ୍କ ସହ ଆମ ସଂପର୍କ ଅତିପୁରୁଣା । ସେଦିନ ରାତ୍ର ୮ଟାରେ ମୁଁ ଶବକୁ ଧରି ମାଲିଗୁଡ଼ା ଯାଇଥିଲି ।

ତା'ପରଦିନ ଜିଲ୍ଲା ସଂସ୍କୃତି ଭବନରେ ସାହିତ୍ୟିକ, ସାମ୍ବାଦିକ, ନାଟ୍ୟକାର, କବି ଓ ସମାଲୋଚକମାନଙ୍କୁ ନେଇ ଏକ ସ୍ମୃତିସଭା ହେଲା । ସେଠାରେ ସେ ପାଇଥିବା ସମ୍ମାନ ଉପରେ ଆଲୋଚନା ହେଲା । ପ୍ରାୟ ବରିଷ୍ଠ ସାମ୍ବାଦିକ ଓ ଜଣେ/ଦୁଇଜଣ ପ୍ରଫେସର ଉଠି କହିଲେ,

-ଆରେ, ଏ କୋରାପୁଟିଆ ନାଟଗୁରୁ ୧୦୦୦ ନାଟକର ନିର୍ଦ୍ଦେଶନା ଦେଇଛନ୍ତି ସତ । ହେଲେ ସମାଜ କ'ଣ ଏହାଙ୍କୁ ଚିହ୍ନିଥାନ୍ତା । ଯଦି, ଶିବରାମ ପାତ୍ର ନଥାନ୍ତେ ।

-ଯୁବକପିଲାମାନେ ବୁଝିପାରିଲେ ନାହିଁ । ଆଜି କାଲିକା ଟୋକା ସାହିତ୍ୟିକ । କୁହାକୁହି ହେଲେ -ସତରେ, କ'ଣ ଶିବରାମ ପାତ୍ର ଥିଲେ ବୋଲି ?

ସଭା ସରିଲା, ତାଙ୍କ ଦଶାହ ଦିନ ଜିଲ୍ଲାପାଳଙ୍କୁ ନେଇ ତାଙ୍କ ଗ୍ରାମରେ ଏକ ସାହିତ୍ୟ ଆସର ହେଲା । ମୁଁ ତାଙ୍କ ପରିବାରକୁ ସମସ୍ତ ମାନପତ୍ର ଆଣି ମଣ୍ଡପରେ ରଖିବାପାଇଁ ନିର୍ଦ୍ଦେଶ ଦେଲି । ସମସ୍ତ ଫଳକ ଓ ମାନପତ୍ର ଆସିଲା । ସେ ଭିତରେ ଥିଲା ଏକ ଦୁର୍ଲ୍ଲଭ ଫଳକ ।

-ଆମେ ନବରଙ୍ଗପୁର ଜିଲ୍ଲାର କୌଣସି ବୁଦ୍ଧିଜୀବି ତାଙ୍କୁ ଏ ସ୍ମୃତିଫଳକ ମିଳିଥିବା କଥା ଜାଣିନୁ, ସାଧାରଣ ନାଗରିକଙ୍କ କଥା ଛାଡ଼ । ଯେଉଁମାନପତ୍ର ଏହି ନାଟ୍ୟକାରଙ୍କୁ ମିଳିବା ପାଇଁ ଶିବରାମ ପାତ୍ର କଷ୍ଟ ସ୍ୱୀକାର କରି ରାଜଧାନୀ ଯାଇ ଦୃଢ଼ ଦାବୀ କରିଥିଲେ । ତାଙ୍କ ଇଚ୍ଛାରେ ଜଣେ ଏ ମାଟିର ପୁଅ ଯେ ଏତେ ସମ୍ମାନ ପାଇଥିଲା ଆମେ ଜାଣିନୁ-

''ନବରଙ୍ଗପୁର ସବଡ଼ିଭିଜନ, କୋରାପୁଟ ଜିଲ୍ଲାର ପ୍ରସିଦ୍ଧ ଆଦିବାସୀ ଲୋକନୃତ୍ୟର ସ୍ରଷ୍ଟା ନାଟଗୁରୁ ଶ୍ରୀ ଚୈତନ୍ୟ ବିଷୋୟୀଙ୍କୁ ଓଡ଼ିଆ ସାହିତ୍ୟ ଏକାଡ଼େମୀ ପୁରସ୍କାର ।''

ଫଳକ ଦେଖି ସେଠାରେ ସେହି ଚର୍ଚ୍ଚା-ଆରେ ଶିବରାମ ପାତ୍ରେ ଥିଲେ ବୋଲି !

X X X X

ଶିବରାମ ପାତ୍ର, ଆମ ନବରଙ୍ଗପୁରର ପୁରୁଣା ମାଷ୍ଟ୍ର । ଏ ମଣିଷକୁ ଲୋକେ କହନ୍ତି ଗୋପବନ୍ଧୁ ସାର୍ । ଆମ କୋରାପୁଟ ଜିଲ୍ଲା ପଟେ ସାଧାରଣତଃ ସାର୍‌ଙ୍କୁ ମାଷ୍ଟ୍ର ଡାକନ୍ତି । ସମ୍ବୋଧନରେ-ଆଜ୍ଞା ।

ସେ ଥିଲେ ଆଦିବାସୀ ଓ ଗରୀବ ପ୍ରେମୀ । ଅବିଭକ୍ତ କୋରାପୁଟ ଜିଲ୍ଲାର ଇତିହାସକୁ ସିଏ ଜାଣିବାପାଇଁ ଗଭୀର ଚେଷ୍ଟା କରିଥିଲେ । ଆଜିକୁ ପ୍ରାୟ ୨୦-୨୫ ବର୍ଷ ତଳେ କୋରାପୁଟ ଜିଲ୍ଲାକୁ ଓଡ଼ିଶାର କଳାପାଣି (ଆଣ୍ଡାମାନ) କୁହାଯାଉଥିଲା, ଏଠାକୁ ସରକାରୀ କର୍ମଚାରୀ ବଦଳି ହୋଇଗଲେ ତାଙ୍କୁ ପନିସମେଣ୍ଟ ଟ୍ରାନସପର କୁହାଯାଉଥିଲା ।

କୋରାପୁଟିଆ ମାଟି ବହୁପୁରୁଣା, ଘଞ୍ଚଜଙ୍ଗଲ ଦିନ ୨ଟାରେ ମଧ୍ୟ ଝିଙ୍କାରିର ଶବ୍ଦ, ଆଫ୍ରିକା ଜଙ୍ଗଲର ଶବ୍ଦ ପରି ଶୁଣାଯାଏ । ଏ ଜିଲ୍ଲାର ମାଲ୍ୟବନ୍ତ ଶିଖରରେ ଆଜିବି ରାମଙ୍କର ପାଦୁକା ରହିଛି । ତମ୍ବା ବର୍ଣ୍ଣର ଲଙ୍ଗଳା ଜନଜାତିର ବଣ୍ଡାମଣିଷ ରକହାଣି ଓ ସୀତାପାଦକୁଣ୍ଡ ପୁରାଣ ସହ ସାମଞ୍ଜସ୍ୟ ଥିଲା ପରି ବୋଧ ହେଉଛି । ମହାକବି କାଳିଦାସଙ୍କ 'ମେଘଦୂତ' କାବ୍ୟର ଆମ୍ରକୂଟ ଅଞ୍ଚଳର ବର୍ଣ୍ଣନା, ନନ୍ଦପୁରର ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ ଓ ଉଗ୍ର ଗଣେଶଙ୍କ ଛବି ଇତିହାସର ପୃଷ୍ଠାକୁ ଜୀବିତ କରୁଛି । ୧୯୪୨ ଭାରତଛାଡ଼ ଆନ୍ଦୋଳନରରେ ପାପଡ଼ାହାଣ୍ଡି ଓ ମାତିଲିର ଗୁଳିକାଣ୍ଡ, ଶହୀଦ ଲକ୍ଷ୍ମଣନାୟକର ଫାଶୀ ଏବେ ମଧ୍ୟ ଏ ଜନଜାତିର ଲୋକଙ୍କ ମଥାକୁ ଉପରକୁ ଉଠାଉଛି ।

କନ୍ଧ, କୋହ୍ଲ, ସାନ୍ତାଳ, ପରଜା, ଉତରା, ଭୂମିୟା ଜନଜାତିର ସରଳମଣିଷର କାହାଣୀ, ଆଦିବାସୀ ଧାଙ୍ଗଡ଼ି (ଝିଅ) ପିନ୍ଧିଥିବା ପାଦର ପଇଁରି ଶବ୍ଦ, ସରଳତାର ଲାସ୍ୟଛବି ଫୁଟାଉଛି । ମାଟିହାଣ୍ଡିର ରନ୍ଧାଭାତ, କୁଲି (ଦୈନିକକାମ) କରିଆସିଥିବା ଧାଙ୍ଗଡ଼ା ପାଇଁ ଯେତେବେଳେ ସେ ପରଶି ଦେଉଛି ଆତ୍ମୀୟତା ଫୁଟିଉଠୁଛି ।

ଏସବୁ ବର୍ଣ୍ଣନା ଥିଲା ଶିବରାମ ସାରଙ୍କର । ଲେଖାରେ ତାଙ୍କର କୋରାପୁଟ ଜିଲ୍ଲାର ଜୀବନ ଫୁଟିଉଠୁଥିଲା, ସେ ସମୟରେ ବହୁଳଭାବେ ଏସବୁ ବର୍ଣ୍ଣନା ସେ କରୁଥିଲେ ।

X X X X

ସେ, ମୋର ଶିକ୍ଷକ । ମୁଁ ତାଙ୍କ ବୋଲ ମାନୁନଥିବା ଛାତ୍ରରୁ ଜଣେ । ମୁଁ ଛାତ୍ର ଥିବା ସମୟରେ ଲେଖାଲେଖି କରୁଥିଲି । ସଦାବେଳେ ସେ'ରାସ୍ତାରେ ଦେଖିଲେ, ମୋର କବିତାର ରସ କଥା କହନ୍ତି । ସେ ମୋର ଭାଷଣ ଶୁଣିବାକୁ ଭାରି ଭଲପା'ନ୍ତି । ଦିନକର କଥା - ମୁଁ ଏକାଦଶ ଲୋକସଭା ନିର୍ବାଚନର ଏକ ସଭାରେ ଭାଷଣ ଦେଉଥାଏ ।

ମୋର ବୟସ ସେତେବେଳେ ୨୧ବର୍ଷ । ତଥାପି ଜିଲ୍ଲା କଂଗ୍ରେସର ପଦବୀପାଇ ସାରିଥାଏ । ସଂଗଠନ ଯୋଗୁଁ ମୁଁ, ପ୍ରାୟ ଭାଷଣ ଆଦିବାସୀ ଭାଷାରେ ଦିଏ । ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ପୁରୁଣା ବିଧାୟକଙ୍କ ପରିବାରରୁ ଆସିଥିବା ଯୋଗୁଁ ରାଜନୀତି ମଞ୍ଚର ଭାଷଣ ଶିଖିସାରିଥାଏ ।

ଭାଷଣ ଚାଲିଥାଏ । ହଠାତ୍ ମୋର ଆଖିପଡ଼ିଲା ଶିବରାମ ସାର୍‌ଙ୍କ ଆଡ଼େ । ସେ ମୋ ଭାଷଣ ଶୁଣୁଥାନ୍ତି । ମୋର ଗୁରୁ ସେ କଲେଜ ଜୀବନରେ । ଏଣୁ ପାଟି ଟିକେ ମୋର ଖନେଇ ହେଲା । ଓଠ ଅଳ୍ପ ଥରିଲା ।

ସଭା ସରିଲା, ଆଜ୍ଞା ଡାକିଲେ 'ଆରେ-ଏପଟେ ଆ' ମଞ୍ଚରୁ ଆସି ଆଜ୍ଞାଙ୍କର ପାଦ ଛୁଇଁଲି । ଆଜ୍ଞା ତାଙ୍କ ସ୍ୱଭାବ ସୁଲଭ ଢ଼ଙ୍ଗରେ କହିଲେ-''କିସ କହିଲ ହୋ ? ତୁ'ମ ସରକାର କ'ଣ ଏହାର ବ୍ୟତିକ୍ରମ ଥିଲା ।''

-ହସିଲି-ଆରେ ସାର୍ ଇଆଡ଼େ କୁଆଡ଼େ ।

-ଆରେ ବୁଝୁନ ଆଜି ହାଟପରା, ମାଟି କୁଣ୍ଢେଇ ନେବାକୁ ଆସିଛି ।

ପାଠକେ ବୁଝିଲେ ନା' ନାହିଁ ।

ଓଡ଼ିଶାର କେଉଁ ବ୍ୟକ୍ତି ଅଛି କହିଲ ? ନିଜ ଦରମାରୁ ହାଟକୁ ଯାଇ ଆଦିବାସୀଙ୍କ ମାଟିକୁଣ୍ଢେଇ କିଣି, ତାକୁ ଘରେ ଆଣି କାଗଜ ପେନ ଧରି ତା'ଉପରେ ସଂସ୍କୃତି ଓ ସଭ୍ୟତାର ଗବେଷଣା କରିବ । ତା'କୁ ଲୋକଲୋଚନକୁ ଆଣିବ ।

-ତେଣୁ ତ'ସେମାନେ ଯୁଗପୁରୁଷ !

-ଆଜି ସେ ଲେଖା ଓ ମମତା ଆଦିବାସୀ ସଂସ୍କୃତିପାଇଁ ଲୁପ୍ତ ଆଉ ସେତେବେଳେ ସେସବୁ ଥିଲା ଶିବରାମ ପାତ୍ର ଥିଲେ ବୋଲି !

ଶଙ୍ଖାରୀ ସାହି, ନବରଙ୍ଗପୁର

## ସ୍ମୃତି ସେ ନୁହଇ କେବେ....

ପ୍ରଶାନ୍ତ ମହାନ୍ତି

କେଉଁଠି ବି ଦେଖାହେଲେ କୋଳେଇ ନେଇ ଏକାଥରକେ ଅଡାଡ଼ି ଦିଅଂତି । ଅନେକ ପ୍ରଶ୍ନ- ''କି କି କବିତା ଲେଖିଛ ? ପରବର୍ତ୍ତୀ ବହି କଣ ? ନିଜେ ଛାପିବନା, କିଏ ନେବ ? ଆଉ କଣ ବହିଟ୍ର ପ୍ରକାଶ ହେବନି ? ନିଶାକର (ପାଢ଼ୀ)ବାବୁଙ୍କ ଖବର କଣ ? ବହିଟ୍ର ପାଇଁ ଯଦି ବ୍ୟକ୍ତିଗତ ଭାବେ କିଛି ପାରିବି ବୋଲି ଅନୁଭବ କରୁଛ କହିବ ।'' ସହଜରେ ଭୁଲି ହେଉନି ସେଇ ସ୍ନେହ ମଣିଷର ଶ୍ରଦ୍ଧାଶୀଳ ଉଚ୍ଚାରଣ ।

ଅଧ୍ୟାପକ ଶିବରାମ ପାତ୍ରଙ୍କୁ ମୁଁ ଜାଣେନା କିନ୍ତୁ ସଂଗଠକ ଆଉ ସଂଗ୍ରାହକ ଶିବରାମ ପାତ୍ରଙ୍କୁ ମୁଁ ଜାଣେ, ସାହିତ୍ୟକୁ ନେଇ ସେ କେମିତି ବଂଚୁଥିଲେ ତାକୁବି ମୁଁ ଜାଣେ । ମୂଲ୍ୟବିହୀନ ଜୀବନ ଅପେକ୍ଷା ମୂଲ୍ୟବୋଧ ଉପରେ ବିଶ୍ୱାସ ରଖିଥିବା ମଣିଷ ଶିବରାମ ଭାଇନା ।

ଥରେ ଅଧ୍ୟାପିକା ଭଉଣୀ କ୍ଷଣପ୍ରଭାକୁ ଦେଖାକରିବାଲାଗି ନବରଙ୍ଗପୁର କଲେଜକୁ ଯାଇଥିଲି । କଲେଜରୁ ଫେରିବା ବାଟରେ ଦେଖାହେଲେ ଶିବରାମ ଭାଇନା, ଆତ୍ମୀୟତାର ସହ ଦୁଇଚାରିପଦ କଥା ହେବା ପରେ କହିଲେ ''ପ୍ରଶାନ୍ତ ଆଜି ସଂଧ୍ୟାରେ ସାହିତ୍ୟ ସଭା କବିତା ପାଠୋତ୍ସବ ରହିଯା ଭାଇ'' । ମୁଁ ରହିଗଲି ।

ହଠାତ୍ ଦିନେ ଭୁବନେଶ୍ୱର ପୁସ୍ତକ ମେଳାରେ ଭାଇନାଙ୍କ ସହ ଦେଖା ହେଲା । ପାଖରେ ଗଦାଏ ବହି । ବହୁତ କ୍ଳାଂତ । ଜରଜର ଲାଗୁଥାଏ । ରାତି ୧୦ରେ ଭଂଜନଗରକୁ ଶେଷ ଗାଡ଼ି । ସମୟ ଗଡୁଥାଏ । ଆମର କଥା ବଢୁଥାଏ । ସମୟ ଜାଣିବା ପରେ ବ୍ୟସ୍ତ ହୋଇପଡ଼ିଲେ । ମୋର ମାନସିକତାକୁ ଲକ୍ଷ୍ୟକରି ବ୍ୟସ୍ତତାର କାରଣ ବୁଝିଲେ । ଟିକେଟ୍ କରି ନଥିବା ଜାଣି ମତେ ଜୋର କରି ତାଙ୍କ ଭୁବନେଶ୍ୱର ବାସଭବନରେ ରାତିଟିଏ ରହିବାକୁ ବାଧ୍ୟ କଲେ । ପାହାନ୍ତାରେ ନିଦଭାଂଗିଲା ବେଳକୁ ଦେଖିଲି ପୀଡ଼ା ଉପଶମ ଲାଗି ମୋର ସମଗ୍ର ଦେହରେ ଭାଇଙ୍କର ହାତ ବୁଲିଯାଉଛି । ବିଶ୍ୱାସ କରିପାରିଲିନି । ଲଜ୍ଜିତ ହେଲି : ''ଭାଇ କଣ କରୁଛ ?''-ଜଣେ ଭାଇର ଭାଇପ୍ରତି କର୍ତ୍ତବ୍ୟ । ଶୋଇପାରିଲିନି । କାଉ କା କଲା । କାଂଥ ଘଂଟାରେ ୫ଟା ବାଜିଲା ।

ନିତ୍ୟ କର୍ମ ନସୁରଣୁ ଚା । ତା'ପରେ ୨ଟି ବେସିନ୍‌ରେ ଗରମପାଣି ଆସିଲା । ନିଜେ ବେସିନ୍ ଭିତରେ ଗୋଡ଼ରଖି : ଅନ୍ୟ ବେସିନ୍‌ଟିରେ ମତେ ଗୋଡ଼ ବୁଡ଼େଇ ରଖିବାକୁ କହିଥିଲେ । ମୁଁ କିଛି ବୁଝିପାରୁନଥାଏ । ବୋକାଂକ ଭଳି କେବଳ ଚାହିଁଥାଏ ।- ପ୍ରଶାନ୍ତ ଭାଇ ଦେଖିବ ୧୫ମିନିଟ୍ ପରେ ସୁସ୍ଥ ଅନୁଭବ କରିବ ।

ସତରେ ସେ ସ୍ନେହଶୀଳ ହାତର ସ୍ପର୍ଶ ଏବେବି ମୋ ଭିତରେ ଅନେକ ଭାବ ଆବେଗ ସୃଷ୍ଟି କରୁଛି ।

ଦିଗଂତ ମାର୍ଗ
ଭଂଜନଗର

## ସ୍ୱର୍ଗତ ଶିବରାମ ସ୍ମୃତିରେ...

ବିଜୟ କୁମାର ଚୌଧୁରୀ

୧୯୯୧ ମସିହାର କଥା । ମୁଁ ଅଭିଧାନ ଖୋଲି ବସିଥାଏ । କେତେକ ଓଡ଼ିଆ ଶବ୍ଦର ବ୍ୟାଖ୍ୟା କରିବାକୁ । ହସିହସି ସ୍ୱାଗତ କଲି । ପରିଚୟ ପଚାରିବା ପୂର୍ବରୁ କହି ଉଠିଲେ, ଆପଣ ବିଜୟ ସାର ? ମୁଁ ପାଟିଟିକୁ ଆଁ କରି ଚାହିଁ ରହିଲି । ପଚାରିଲି ମୋତେ ଆପଣ ଜାଣିଲେ କିପରି ? ଆରେ ଭାଇ ଆଜି କିଛି ପାଇଟିନାହିଁ, ଭାବିଲି ଆପଣଙ୍କୁ ଦେଖାକରିବାକୁ । ମୋର ଦୁଇଟି ପୁଅ ଆପଣଙ୍କର ଶିଷ୍ୟ, ଆପଣଙ୍କ କଥା ପ୍ରାୟ ପ୍ରତିଦିନ ଆମ ଘରେ ପଡ଼େ । ଆପଣଙ୍କର ପ୍ରଶଂସା କରନ୍ତି । ଆପଣଙ୍କର ସାହିତ୍ୟ, ଇଂରାଜୀପଢ଼ା ବିଷୟରେ । ମୁଁ ଶିବରାମ ପାତ୍ର । ବିଶ୍ୱାମିତ୍ର ଓ ବିଶ୍ୱକ୍‌ସେନର ପିତା । ମୋ ପାଟିରୁ ବାହାରି ପଡ଼ିଲା ଓ ତାହେଲେ ଆପଣ ନବରଂଗପୁରର ଗୋପବନ୍ଧୁ ।

ଝୁଲାମୁଣିରୁ ସେ ବାହାର କଲେ ଏକ ଓଡ଼ିଆ-ଇଂରାଜୀ ଅଭିଧାନ । ଅଭିଧାନରେ ଲେଖାହୋଇଛି ସ୍ନେହର ସହ ଶିବରାମ ପାତ୍ର । ତାପରେ ଦୁଇଟି ଚାରା, ଗୋଟିଏ ଚନ୍ଦନ ଏବଂ ଅନ୍ୟଟି କଦମ୍ବ । କହିଲେ ଲଗାନ୍ତୁ ଆପଣଙ୍କ ବାଡ଼ିରେ । ଟିକିଏ ଯତ୍ନ କଲେ ବଞ୍ଚିଉଠିବ । ମୁଁ ଭଡ଼ାଘରେ ରହୁଥାଏ । ସେହି ଚାରାଗୁଡ଼ିକ ଏବେ ଦ୍ରୁମରେ ପରିଣତ ହେଲାଣି । ଭଡ଼ାଘର ଛାଡ଼ିଦେଇଛି କିନ୍ତୁ ସେଗୁଡ଼ିକୁ ଯେବେ ଦେଖେ ଶିବରାମ ସାର ମନେପଡ଼ନ୍ତି ।

ଦିନେ ସୁବିଧା ସୁଯୋଗ ଦେଖି ପହଞ୍ଚିଲି ତାଙ୍କ ଘରକୁ । ଉଦ୍ଦେଶ୍ୟ କୁଞ୍ଜବିହାରୀ ଦାସଙ୍କ ବିଷୟରେ କିଛି ଜାଣିବା ପାଇଁ । ଦେଖିବାମାତ୍ରେ ଦଉଡ଼ି ଆସିଲେ । ସାଦରେ ଗୋଟିଏ ଚୌକିରେ ନେଇ ବସାଇଲେ । ଗୋଟିଏ ଗୋଲାପଜାମୁ, ଦୁଇଟିନାଡ଼ି ଗୋଟିଏ ପ୍ଲେଟ୍‌ରେ ଆଣି ଥୋଇଲେ । ସେତକ ଉଦରସ୍ଥ କଲି । ଇଂରାଜୀ ବ୍ୟାକରଣ ପଢ଼ିବାକୁ ତାଙ୍କ ବଡ଼ଝିଅ ପ୍ରିୟମ୍ବଦା ଜିଦ୍ କଲା । ମୁଁ ହଁ ଭରିଲି । ସେ ସେତେବେଳେ କଲେଜ୍‌ରେ ଶେଷ ଶ୍ରେଣୀରେ ବୋଧହୁଏ ପଢୁଥାଏ । ପ୍ରତି ରବିବାର କେତେକ ଛାତ୍ରୀଙ୍କୁ ଧରି ଆମ ଘରକୁ ଆସେ । ବ୍ୟାକରଣ ପଢ଼ା ହୁଏ ।

ବିଶ୍ୱାମିତ୍ର ଓ ବିଶ୍ୱକ୍‌ସେନ ଉଭୟେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ପିଲେ ମେଧାବୀ । ପ୍ରଶ୍ନ ପଚାରି ପଚାରି ମୋତେ ଜଣେ ଉତ୍ତମ ଶିକ୍ଷକରେ ପରିଣତ କଲେ ।

ଆଉଥରେ ଦେଖାହୁଏ ବିଦ୍ୟାଳୟରେ । ସାଥୀରେ ମନମୋହନ ଚୌଧୁରୀ । ଉଦ୍ଦେଶ୍ୟ ପିଲାଙ୍କୁ କିଛି ଶିକ୍ଷାଦେବା । ଆମ୍ଭଗଛ ଛାଇରେ ମନମୋହନଙ୍କ ଭାଷଣ ସେଦିନ ମୋ ହୃଦୟକୁ ସ୍ପର୍ଶ କରିଥିଲା । ଏହା କେବଳ ସମ୍ଭବ ହେଲା ଶିବରାମ ପାତ୍ରଙ୍କ ଯୋଗୁଁ । ତାଙ୍କ ସ୍ତ୍ରୀ ଶିବଲକ୍ଷ୍ମୀ । ଲକ୍ଷ୍ମୀ ତ ଲକ୍ଷ୍ମୀ ଏ କିନ୍ତୁ ଶିବଲକ୍ଷ୍ମୀ, ଭଗବାନ ତାଙ୍କୁ ଧୈର୍ଯ୍ୟ ଦିଅନ୍ତୁ ।

ରାଧାକୃଷ୍ଣ କଲୋନୀ
ନବରଂଗପୁର

# ଶିବରାମ ପାତ୍ର ଏକ ବଳିଷ୍ଠ ବ୍ୟକ୍ତିତ୍ୱ

ଶ୍ରୀ ବୀରେନ୍ଦ୍ର କୁମାର ସୁବୁଦ୍ଧି

ଶିବରାମ ପାତ୍ର ଅର୍ଥ ବହି । ବହି ପାଠ ଛାଡ଼ିଦେଲେ ତାଙ୍କ ଜୀବନରେ ଆଉ କିଛି ନାହିଁ । ସେ ବହି ଭିତରେ ଏତେ ମାତ୍ରାରେ ମଜି ଯାଇଥିଲେ ଯେ ଶତ୍ରୁ ମିତ୍ରର କିଛି ବାଛ ବିଚାର ବି ତାଙ୍କର ରହୁନଥିଲା । ପାଠକୁ ଜୀବନର ମୂଳ ଲକ୍ଷ୍ୟ ଭାବରେ ବାଛି ଅନେକ କିଛି ତ୍ୟାଗ କରିଛନ୍ତି, ବହୁ କଷ୍ଟ ଝଡ଼ ଝଞ୍ଜା ଦେଇ ସେ ଜୀବନର ଶିଖରରେ ପହଞ୍ଚିଲେ ମଧ । ଆଗକୁ ମାଡ଼ି ଚାଲିଯିବାରେ ଧନସମ୍ପତ୍ତି ତାଙ୍କ ପାଇଁ କେବେବି ପ୍ରତିବନ୍ଧକ ହେଇନି ଏବଂ ମଢିବି କିଛି ହେଇଛି ସେ ସବୁକାଟ ପାଇଁ ତୁଚ୍ଛ କାରଣ ସେ ସମ୍ପତ୍ତି ପାଇଁ ହିଁ ତାଙ୍କୁ ଏବଂ ତାଙ୍କର ମା ଭାଇ ସମସ୍ତଙ୍କୁ ଘର, ଧନ ସମ୍ପତ୍ତି ସବୁ କିଛି ଛାଡ଼ିବାକୁ ପଡ଼ିଥିଲା ସେ ସବୁକୁ ହସିହସି ଖୁସିର ତ୍ୟାଗ କରି ଚାଲି ଆସିଥିଲେ । ସେ ତାଙ୍କର ଭାଇ ଭଉଣୀମାନଙ୍କର ସମସ୍ତ କଥା ମଧ ବୁଝୁଥିଲେ, ଏଥିରେ ତାଙ୍କ ସହଧର୍ମିଣୀ ବହୁତ ବହୁତ ସାହାଯ୍ୟ କରିଛନ୍ତି ।

ପୁସ୍ତକମେଳା ଆରମ୍ଭ ହେଲାମାନେ ଶିବରାମ ପାତ୍ର ନିଶ୍ଚିତ ସେଠି ହାଜର ନଚେତ୍ ବହିବାଲାମାନେ ଖୋଜିବେ ଏବଂ କହିବେ ପାତ୍ରବାବୁ (ଶିକ୍ଷକ) ନଥିଲେ ମେଳା ଜମୁନି । ବର୍ତ୍ତମାନ ତାଙ୍କ ଘର ଏମିତି ଯେ ସେ ଏକ ପୁସ୍ତକ ମେଳା ଶିବରାମ ପାତ୍ରଙ୍କୁ ପୁସ୍ତକର ଫେରିବାଲା ବୋଲି ଲୋକେ କହିବା ଆରମ୍ଭ କରିଦେଇଥିଲେ । ବହି ହିଁ ତାଙ୍କ ଜୀବନ । ସେ ଯେ କୌଣସି ଉତ୍ସବକୁ ଯିବେ ବହି ହିଁ ଉପହାର ସ୍ୱରୂପ ଦେବେ । ତାଙ୍କର କହିବା କଥା ରୁଚୁ ନରୁଚୁ ଖାଅ ପିତା-ବୁଝୁ ନ ବୁଝୁ ପଢ଼ ଗୀତ । ସେହିମାନେ ବହି ପଢ଼ିବା ଅଭ୍ୟାସ ମଣିଷକୁ ଜୀବନର ମାନେ ଶିଖାଏ । ମଣିଷର ସାଥି ବହି ହେବ ଦରକାର ।

ଶିବରାମ ପାତ୍ରଙ୍କର ଆଉ ଏକ ଗୁଣ ହେଲା ସେ ବଡ଼ ମେଳାପି । ସେ ଭୁବନେଶ୍ୱର ଆସି ବହୁ ପ୍ରତିଭାବାନ ବ୍ୟକ୍ତିଙ୍କ ସହିତ ମିଶି ପାରିଥିଲେ ଏମିତି ବି ସେ ସମସ୍ତଙ୍କ ସହିତ ମିଶନ୍ତି । ତାଙ୍କ ସହିତ କିଏ କେଉଁ ପ୍ରକାର ବ୍ୟବହାର କଲା ସେ ଦେଖନ୍ତିନି । ସବୁଠୁ ବଡ଼ କଥା ତାଙ୍କ ମନକୁ ଯାହା ଭଲ ଲାଗିଲା ସେ କଥା ସେ ସ୍ପଷ୍ଟ ଭାବେ ଅନ୍ୟକୁ କହିଦିଅନ୍ତି । ଅତିଥି ଭାବରେ ଯଦି କିଏ ଘରକୁ ଆସନ୍ତି ଯାହା ଘରେ ଥାଏ ସେ ଦିଅନ୍ତି ଠିକ୍ ସେମିତି ଯାହା ଘରକୁ ଯାଆନ୍ତି ଯାହା ଥିଲା ଏମିତିକି ପଖାଳ ଭାତ, ଶାଗ ଭଜା ବେଶ ଖୁସିରେ ଖାଇଦିଅନ୍ତି । ତାଙ୍କ ଜୀବନରେ ଏତେ ଘଟଣା ଅଛି ଯେ ତାଙ୍କ ସେ ଆଉ ସରିବନି ।

ଫୁଲବାଣୀ

# ଅସରନ୍ତି ସ୍ମୃତି ଗୋଟେ ଖିଅ କଥା

ଦେବପ୍ରିୟ ପ୍ରିୟଦର୍ଶୀ ଚକ୍ର

ବାବୁ ଏବେ କେଉଁ ପାଇଟି କରୁଛ ! ଆଉ ସବୁ ଭଲତ ? ଏ ସମ୍ଭାଷଣ ଏ ଜିଜ୍ଞାସା ଜଣଙ୍କ ମୁଖରୁ ଶୁଣିବାକୁ ମିଳେ ସ୍ୱାଭାବିକ ଢଙ୍ଗରେ । ନିରୁତା ଭଲପାଇବା ନଥିଲେ ଆନ୍ତରିକତା ନଥିଲେ ଏକଥା ଆସିବ ବା କାହୁଁ ।

ତାଙ୍କ ସହ ହଜିଲାଦିନର ସ୍ମୃତିକୁ ସାଉଣ୍ଟିଲା ବେଳେ କାହାକୁ ସାଇତିବି ଆଉ କାହାକୁ ଫିଙ୍ଗିବି ସେ ନେଇ ମନରେ ଦ୍ୱନ୍ଦ୍ୱ ସୃଷ୍ଟି ହୁଏ । କାରଣ ସବୁ ସ୍ମୃତି ଅପାସୋର । ଭୁବନେଶ୍ୱର ପୁସ୍ତକମେଳା ଆସିଲେ ସେ ଭାରି ଚଳଚଞ୍ଚଳ ହେଇଯାଉଥିଲେ ସତେଯେମିତି ତାଙ୍କ ଗାଁରେ କିଛି ମାଙ୍ଗଳିକ କାର୍ଯ୍ୟ ହେଉଛି !

ରମାକାନ୍ତ ଭାଇଙ୍କର ପୁଅ ଗୁଗୁଲୁ ଜନ୍ମ ହେବା ପରେ ସେ ସବୁଠୁ ବେଶୀ ଆନନ୍ଦିତ ହୋଇଥିଲେ । ତାଙ୍କ ଝିଅ ଶୋଭନା(ଭାଉଜ)ଙ୍କୁ ସେ ସବୁଠୁ ବେଶୀ ସ୍ନେହ କରୁଥିଲେ ନାତିର ଜନ୍ମ ପରେ ସବୁତକ ସ୍ନେହ ଅଜାଡ଼ି ଦେଇଥିଲେ ନାତି ଗୁଗୁଲୁକୁ ।

ସେ ସାଇକେଲ୍ ଚଢ଼ିବାକୁ ଭଲ ପାଉଥିଲେ । ବେଳ ଅବେଳରେ ବିଭିନ୍ନ କାର୍ଯ୍ୟରେ ବହୁ ଦୂର ସାଇକେଲ୍ ଛୁଟାଇ ବାହାରି ଯାଉଥିଲେ ।

ତାଙ୍କ ପାଖରେ ଥିଲା ବହୁ ନିଆରାପଣ, ନୂଆ କାର୍ଯ୍ୟକରିବାକୁ ପ୍ରତିବଦ୍ଧତା, ତାରୁଣ୍ୟର ଉଦ୍ଦାମ । ଆଉ ସାହିତ୍ୟ ପାଇଁ ସମର୍ପଣ ମନୋଭାବ ।

ବରଗଡ଼

# ଆମ ଶିବରାମ

ଶ୍ରୀମତୀ ସରୋଜ ପାତ୍ର
(ମାଇଁ ଶାଶୁ)

ଆମ ଶିବରାମ ଠାରୁ ମୋ ଜୀବନର ମୂଲ୍ୟକୁ ମୁଁ ପାଇପାରିଛି । କାରଣ ସେ ହିଁ ଜ୍ଞାନ ଆହରଣ ପାଇଁ ଉତ୍ସାହ ଯୋଗାଇଥିଲେ । ସେ ସମସ୍ତଙ୍କ ପରି ମନୁଷ୍ୟଟିଏ ହୋଇଥିଲେ ସିନା, ତାଙ୍କ ଭିତରେ ଅନେକ ମୂଲ୍ୟବାନ ସଂପଦ ଲୁଚି ରହିଥିଲା । ଯିଏ ସେ ସଂପଦକୁ ଟିକିଏ ମାତ୍ର ପାଇଛି, ସେ ତା' ଅନ୍ଧକାର ରାସ୍ତାରୁ କିପରି ମୁକ୍ତି ମିଳିବ ଜାଣିପାରିଛି ।

ତାଙ୍କ ଠାରୁ ମତେ ଏହି ଜ୍ଞାନ ମିଳି ପାରିଥିବାରୁ ମୁଁ କିଏ କ'ଣ ଏବଂ କାହିଁକି ମନୁଷ୍ୟ ଜୀବନକୁ ପାଇଛି ଜାଣିପାରିଲି । ଏବଂ ମତେ କିପରି ବଞ୍ଚିବାକୁ ହବ ଜାଣି ପାରିଥିବାରୁ ଏପରି ମହାନ ମନୁଷ୍ୟକୁ ଭୁଲି ପାରୁନାହିଁ ।

ମୋ ଭାବ, ଇଚ୍ଛା, ବୁଦ୍ଧିକୁ ଚିହ୍ନି ପାରିଥିବାରୁ, ମତେ ଶ୍ରୀରାମକୃଷ୍ଣ ପରମହଂସଙ୍କ ମସ୍ତବଡ଼ ବହି ଦୁଇଟି ପଢ଼ିବାକୁ କିଣି ଆଣିଦେଲେ । ସେ କିପରି ଜାଣିଲେ, ମତେ କଣ ଦରକାର, ଐତିହାସିକ, ନା ଉପନ୍ୟାସ, ନା ମଜା ଗପ, ନା ଡିଟେକ୍ଟିଭ୍, ନା ଆଧ୍ୟାତ୍ମିକ ? ବା ଆଧ୍ୟାତ୍ମିକ ମହତ୍ତ୍ୱ ପାଇଁ କେଉଁ ପ୍ରଣାଳୀଟି ଦରକାର । ଆମ ଶିବରାମ ବଡ଼ ଗପୁଡ଼ା ଏବଂ ଭରପୁର ସ୍ନେହୀ, ସେ ଯାହାକୁ ଭଲ ପାଇଯାନ୍ତି ତା ପାଇଁ ସେ ପାଖରେ ଥିଲା ପରି, ଦେଖା ସାକ୍ଷାତ କରୁଥାନ୍ତି । ତାଙ୍କ ସଙ୍ଗେ ଯିଏ ମିଶିଛି, ତାଙ୍କଠାରୁ ଯିଏ କିଛି ଜ୍ଞାନ ପାଇଛି ତାର ଅନ୍ତର ଭିତରେ ତାଙ୍କ ସ୍ଥାନଟି ଚିର ସୁରକ୍ଷିତ ହୋଇ ରହିବ ।

ଶିବରାମ ଏତେ ଶୀଘ୍ର ଆମ ସମସ୍ତଙ୍କ ମମତା ବଂଧନରୁ ଦୂରେଇ ଚାଲିଯିବେ, ବିଶ୍ୱାସ କରିପାରୁନାହିଁ । ସେ କେତେ ଶୁଦ୍ଧ ଏବଂ କେତେ ଭଲ ଲୋକ, ତାଙ୍କ ମୃତ୍ୟୁରୁ ଜଣା ପଡୁଛି । ଭଲ ଲୋକଙ୍କର ଏପରି ମରଣ ହୁଏ । ଏପରି ମରଣକୁ ଦୁର୍ଲ୍ଲଭ କୁହାଯାଏ । ଏପରି ମଣିଷକୁ ଭୁଲିବାର ନୁହେଁ ।

ତାଙ୍କୁ ମୋର ଏତିକି ଜଣାଣ, ସେ ଯେଉଁଠି ଥାଆନ୍ତୁ, ଭଲ ଜୀବନଟିଏ ପାଆନ୍ତୁ । ତାଙ୍କୁ ଭୁଲି ପାରୁନାହିଁ, କାରଣ ମୋର ଅଧ୍ୟୟନ ନିଷ୍ଠାକୁ ସେ ଠିକ୍ ବୁଝିପାରିଥିବାରୁ ୧୦ବର୍ଷ ପୂର୍ବେ ଶ୍ରୀମାଙ୍କ ମାତୃ ରଚନାବଳୀ ପ୍ରଥମଖଣ୍ଡଟିକୁ ମତେ ସେ ଖୁସିରେ ଦେଇଥିଲେ ଉପହାରସ୍ୱରୂପ । ସେହିଦିନ ଠାରୁ ମୋ ମା'ଙ୍କ ଚରଣରେ ମତେ ଆଶ୍ରୟ ମିଳିଛି ।

ଭୁବନେଶ୍ୱର

## ସ୍ମୃତିରୁ ସୂତା ଖିଏ

ଶ୍ରୀମତୀ ବିନୋଦିନୀ ସାହୁ

ଶିବରାମ ସାର୍ କେଦାରନାଥ ଗବେଷଣା ପ୍ରତିଷ୍ଠାନର ଆଜୀବନ ସଦସ୍ୟ ଥିଲେ ।ସାର୍‌ଙ୍କ ଘର ପ୍ରତିଷ୍ଠାନର ଅଳ୍ପ ଦୂରରେ । ଅନେକ ସମୟରେ ହାଟରେ ଓ କେବେ କେମିତି କେଦାରନାଥର ସାହିତ୍ୟ ସଭାମାନଙ୍କରେ ସାର୍‌ଙ୍କ ସହ ଦେଖା ହୁଏ ।

'ସାର ନୀଳକଣ୍ଠ ସ୍ମୃତି ସମିତି'ର ସଦସ୍ୟ ଥାଆନ୍ତି, ସ୍ମୃତି ସମିତିର କାର୍ଯ୍ୟାଳୟ କେଦାରନାଥ ଗବେଷଣା ଓ ପ୍ରତିଷ୍ଠାନରେ ଚାଲେ ଓ ତାହାର ଅନେକଗୁଡ଼ିଏ ପ୍ରକାଶନ ଅଦ୍ୟାବଧି ଏଠାରେ ଗଚ୍ଛିତ ଅଛି । ସେଗୁଡ଼ିକୁ ଲୋକଲୋଚନକୁ ଆଣିବାରେ ଅନେକ ପ୍ରୟାସ କରିଛନ୍ତି ସାର୍ । ସାର୍ ସେଗୁଡ଼ିକୁ ନେଇଯାନ୍ତି ସୁଦୂର କୋରାପୁଟ ଓ ନବରଙ୍ଗପୁର ବାଲେଶ୍ୱର, ରାଉରକେଲା ଇତ୍ୟାଦି ସ୍ଥାନମାନଙ୍କୁ ।

କବିରାଜ ଗୋପୀନାଥ ସେନାପତିଙ୍କ ପତ୍ନୀ ବିୟୋଗରେ ସାର୍ ଆସିଥାନ୍ତି ତାଙ୍କ ଦଶାହ କର୍ମ ପାଇଁ ବିନ୍ଦୁସାଗର (ଉତ୍ତରେଶ୍ୱର ଘାଟକୁ) । ପାଠାଗାରକୁ ଆସି କହିଲେ କ'ଣ ଖଣ୍ଡେ ଦିଅ ପଢ଼ିବି ଭାରି ବୋର୍ ଲାଗୁଛି । ସଙ୍ଗେ ସଙ୍ଗେ ବାହାର କରି ଦେଲି ସ୍ମରଣିକା 'ଉତ୍କଳୀୟ ସଂସ୍କୃତି'ରୁ ଖଣ୍ଡେ । ଆଦରର ସହ ପଢ଼ିବସିଲେ । କେଦାରନାଥ ମହାପାତ୍ରଙ୍କର ଫଟୋଟିଏ ନେବାପାଇଁ ଅନେକଥର ଆସିଛନ୍ତି ଗବେଷଣା ପ୍ରତିଷ୍ଠାନକୁ ।

ଏକାମ୍ର ମହାବିଦ୍ୟାଳୟରେ ମଧ୍ୟ ବିଭିନ୍ନ ସମୟରେ କେଦାରନାଥଙ୍କ ପାଇଁ ସଭାସମିତିର ଆୟୋଜନ କରିଛନ୍ତି ।

ଅନେକ ଥର ସାର୍ ଡାକିଛନ୍ତି କେବେ ଆମ ଘରଆଡ଼େ ଆସ ଝିଅକୁ ନେଇ । ହେଲେ ସେ ସୁଯୋଗ ଆସିନି ।

୨୦୦୨ ମସିହାର ଘଟଣା । ସାର୍ ପାଠାଗାରକୁ ଆସିଥାନ୍ତି । ଡଃ ଭଗବାନ ପଣ୍ଡା ଅନୁଷ୍ଠାନର ସଂପାଦକ । ତାଙ୍କୁ ଖୋଜିଲେ । ସାର୍‌ଙ୍କ ଅସୁସ୍ଥତା ବିଷୟ ଜଣାଇଲି । ସଙ୍ଗେ ସଙ୍ଗେ ଧାଇଁଗଲେ ସାର୍‌ଙ୍କୁ ଦେଖା କରିବାପାଇଁ ।

ତାଙ୍କର ଆତ୍ମା ଚିରଶାନ୍ତି ଲାଭ କରୁ । ଆମ ପାଇଁ ଝରିପଡୁ ତାଙ୍କ ହୃଦୟରୁ ଆଶୀର୍ବାଦର କେଇ ବୁନ୍ଦା ମାତ୍ର ।

କେଦାରନାଥ ଗବେଷଣା ପ୍ରତିଷ୍ଠାନ
ଭୁବନେଶ୍ୱର-୨

## ହଇଏ ଯା'କୁ ଦିଅ ଆଉ ଟିକେ

ରବି ପୋଲାଇ

ବ୍ରହ୍ମପୁର ଗଂଜାମ କଳା ପରିଷଦରେ ଉତ୍କଳ ସମ୍ମିଳନୀର ଦି' ଦିନିଆ ଅଧିବେଶନ ଚାଲିଥାଏ । ସାରା ଓଡ଼ିଶାରୁ ପ୍ରତିନିଧିମାନେ ଆସିଥାଆନ୍ତି । ଖୁବ୍ ଭଲ ଲାଗୁଥାଏ । ପୁରା ଦି' ଦିନର ରହଣି । କେହି ବି ହାଲିଆ ହେବାର ଜଣାପଡୁନଥାନ୍ତି । ସମସ୍ତଙ୍କର ଅଧିବେଶନରେ ଯୋଗଦେବାର ନିଶା ଥାଏ ।

ପ୍ରଥମ ଦିନର ଅଧିବେଶନ, ସଭା ସବୁ ସରିଥାଏ । ତା' ବାସି ଦିନ ଦ୍ୱିତୀୟ ଦିନର ଅଧିବେଶନ, ସଭା ହେବାକୁ ବାକିଥାଏ । ସକାଳବେଳା ଚା' ଜଳଖିଆ ଖାଇବା ପାଇଁ ସମସ୍ତ ସଭ୍ୟ ଅପେକ୍ଷା କରିଥାନ୍ତି । ଏମିତି ସକାଳ ଚା' ଜଳଖିଆ ଖାଇବାବେଳକୁ ଯାହା ଘଟିଥିଲା, ତାହା ଏଯାଏଁ ମୋର ମନେଅଛି । ଜଳଖିଆ ତିଆରି ହୋଇ ଟେବୁଲ୍‌ରେ ରଖାଯିବା ପରେ ଆମେ ବାଢ଼ିବା ଆରମ୍ଭ କରି ଦେଇଥିଲୁ । ସମସ୍ତେ ଯିଏ ଯାହାର ପ୍ଲେଟ୍ ଧରି ଧାଡ଼ିବାନ୍ଧି ଆସନ୍ତି ଜଳଖିଆ ନେବାପାଇଁ । ଆମେ ଚାରି ପାଞ୍ଚଜଣ ଯୁବକ ବାଢ଼ିବାପାଇଁ ଠିଆ ହୋଇଥାଉ । ପ୍ରାୟ ଘଣ୍ଟାଟେ ବାଢ଼ିଲାପରେ ଆମର ବି ଇଚ୍ଛା ହେଉଥାଏ ଜଳଖିଆ ଚା' ଖାଇବାପାଇଁ । ସେପଟେ ସଭ୍ୟମାନେ ମଝିରେ ମଝିରେ ଗୋଟେ ଗୋଟେ ଆସୁଥାନ୍ତି । ବିରକ୍ତି ଲାଗୁଥାଏ । ଚା' ଜଳଖିଆ ସମସ୍ତେ ଖାଇଲାପରେ ସଭା ହେବ । ସମସ୍ତେ ଏହା ଜାଣିଥାନ୍ତି ତଥାପି ଗୋଟେ ଗୋଟେ ହେଇ ଆସନ୍ତି । ହେଲେ ଏପଟେ ଆମକୁ ଭୋକ ଲାଗୁଥାଏ । ତଥାପି କେହି ବି ବାଢ଼ିବା ପାଇଁ ଆସୁ ନଥାନ୍ତି । ଆମ ଭିତରୁ ଜଣେ କହିଲେ, 'ଜଣେ ଜଣେ ହେଇ ଖାଇବା' ନହେଲେ ଏମିତି ଠିଆ ହେଇଥିବା । ମୁଁ କିଛି କହୁ ନଥାଏ । ମୁଁ କେବଳ ଦୂରକୁ ଅନଉଥାଏ । କେତେବେଳେ ଏପଟ ତ କେତେବେଳେ ସେପଟ । ଉଦ୍ଦେଶ୍ୟ ଥିଲା ଟିକେ ସମୟ ମିଳିଯିବ ତ ଏଠୁ ସିଧା ପଳେଇବି ସଭାର ପଛପାଖକୁ । ସେଠି ଜଳଖିଆ ତିଆରି ହେଉଥାଏ । ଚା' ହାଣ୍ଡି ଥାଏ । ସେଠି ଯାଇ ଚା' ଖାଇବି,

ଜଳଖିଆ ଖାଇବି । ତା'ପରେ ଯୋଉ କଥା ହେବ । ହେଲେ କାହାକୁ କିଛି ନକହି ଏମିତି କଲେ ହିଁ ଭଲହେବ ବୋଲି ଭାବିଥାଏ । ତେଣୁ ଏଥର ସିଧା ଚାଲିଲି ସଭାର ପଛପାଖକୁ । ରଙ୍ଗମଞ୍ଚ ଉପରେ ଗୋଟିଏ ବିରାଟ ସିନ୍ ଟଣା ଯାଇଥାଏ । ସେଇ ସିନ୍ ପଛପାଖକୁ । ଭାବିଲି ମୋତେ କିଏ ଦେଖିବନି କି ଜାଣିବନି । ହେଲେ ମୋତେ ବୁଝିବା ଲୋକ ବି ଏଇଠି ଥିଲେ ମୁଁ ଜାଣିନଥିଲି । ଏହା ଭାବିଲେ ଏବେ ଖୁସି ଲାଗୁଚି । ମୁଁ ଯେମିତି ସିନ୍ ପଛପାଖକୁ ଚାଲିଯାଇଛି ଠିକ୍ ସେତିକି ସମୟରେ ମୋ ପାଖରେ ଶିବରାମ ସାର୍ ହାଜର ହେଲେଣି । ମୁଁ ଜାଣି ନଥାଏ । ମୁଁ ନମସ୍କାର ଜଣେଇ କେବଳ ଠିଆ ହେବାର ଦେଖି ସେ ହସୁଥିଲେ । ମୋତେ କହିଲେ 'ବାବୁ.. ଭଲ ଯାହା କରୁଛୁ ମୋତେ ଭଲ ଲାଗୁଚି.. ତୋ'ପରି କିଛି ପିଲାମାନେ ଏଠି ଅଛନ୍ତି... ତମମାନେ ଏ ସମୟରେ କିଛି କରିବନିତ ଶିଖିବ କେମିତି.. ଯୁବକ ସମୟରେ ଏସବୁ କରିବା କଥା.. ହଁ.. ତୁ ବୋଧେ ଖାଇନୁ ନା.. ଜଳଖିଆ ଟିକେ ଚା' ଟିକେ ଖାଇଦେ, ତା'ପରେ ଯାଇ ଦେଖିବା । ମୋତେ ହସ ଲାଗୁଥାଏ । ଏପଟେ ଭୋକ । ତଥାପି କିଛି କହୁ ନଥାଏ । ମୋ ହାତ ଧରି ସେ ନେଇଗଲେ । କିଛି ନକହି ପ୍ଲେଟ୍‌ଟେ ବଢ଼େଇଦେଲେ । କେବଳ ହସୁଥାନ୍ତି ଯେମିତି ମୋତେ ଅନେକ ସମୟରୁ ଦେଖିଛନ୍ତି । ମଝିରେ ମଝିରେ କହୁଥାନ୍ତି.. ଆମର ଆଜିର ଜଳଖିଆ ଭଲ ହେଇଚି.. ନେ... ଆଉ ଟିକେ ଖାଆ.. ଯୁବକ ସମୟରେ ନ ଖାଇଲେ.. ଆଉ ଆମ ପରି ବୁଢ଼ା ହେଲା ବେଳକୁ ଖାଇବୁ.. ଯାକୁ ଦିଅ ଆଉ ଟିକେ.. । ତା'ପରେ ମୋତେ ମଝିରେ ମଝିରେ ଅନଉଥାନ୍ତି ଏବଂ ହସୁଥାନ୍ତି । ଏ ଭିତରେ ବସନ୍ତବାବୁ ଆସି ବଢ଼ାବଢ଼ିରେ ସାହାଯ୍ୟ କରୁଥାନ୍ତି । ଶିବରାମ ସାର୍ ବି ତରକାରୀ ରସ ପାଖରେ ଠିଆ ହୋଇ ସହଯୋଗ କରୁଥାନ୍ତି । କହୁଥାନ୍ତି.... ଭଲ ଭାବେ ଖାଅ, ତା'ପରେ ସଭା ତ ହେବ ।

ମୁଁ ଆଉ ଲାଜରେ ଅନଉ ନଥାଏ ଶିବରାମ ସାର୍‌ଙ୍କ ମୁହଁକୁ । ମୋ ଜଳଖିଆ ସରିଲା ବେଳକୁ ସେ ପୁଣି ମୋ ପାଖାପାଖି ଠିଆ ହେଇ କହୁଥାନ୍ତି ଯା.. ଚା' ନେଇ ଆ.. ଚା'ପିଇ.. ସମସ୍ତେ ପ୍ରାୟ ଜଳଖିଆ ଖାଇ ସାରିଲେଣି.. ଚା' ଖାଇଦେ.. ସଭାକୁ ଯିବା... ।

ବ୍ରହ୍ମପୁର

## ବନ୍ଧୁତା

ଶରତ ସୁବୁଦ୍ଧି

ଅଳ୍ପଦିନ ତଳର କଥା । ଅଫିସରେ ବସିଥିଲି । ଫୋନ୍ ଆସିଲା । ମୁଁ ଗୌରୀନଗରରୁ ଶିବରାମ ପାତ୍ର କହୁଛି । ଆମେ ଯିବୁ ଆପଣଙ୍କ ଝିଅ ଦେଖିବାପାଇଁ । ଆମ ଘରକୁ ସେ ଆସିଲେ । ଆରମ୍ଭ ହେଲା ଆମ୍ଭମାନଙ୍କ ସହିତ ସୁମଧୁର ଆଳାପ । ସତେ ଯେପରି ପୁରାତନ ବନ୍ଧୁ । ସେ ମୁହୂର୍ତ୍ତକ ମଧ୍ୟରେ ସମସ୍ତଙ୍କ ହୃଦୟ କିଣିନେଲେ । ପ୍ରଥମ ସାକ୍ଷାତରେ ମୋ ଝିଅକୁ ବୋହୂ କରିବାର ସିଦ୍ଧାନ୍ତ ନେଲେ । ମୁଁ ତାଙ୍କର ପ୍ରଶସ୍ତ ହୃଦୟ ଓ ମନ ଅନୁଭବ କଲି ।

ଘରୁ ବିଦାୟ ନେଲାବେଳେ କେତେଖଣ୍ଡ ବହି ଝିଅକୁ ପଢ଼ିବାକୁ ଦେଇଥିଲେ । କିଛି ଦନିପରେ ପୁଅକୁ ଧରି ଦ୍ୱିତୀୟ ଥର ଆସିଲେ । ବହି ପଢ଼ିଛିକି ନାହିଁ, କେଉଁ ବହିଟି

ବେଶି ଭଲ ଲାଗିଲା ଝିଅକୁ ପଚାରିଲେ । ଆଉ କେତୋଟି ବହି ପୁନର୍ବାର ଦେଲେ । ପୁସ୍ତକପ୍ରତି ତାଙ୍କର ଆଗ୍ରହ ତୁଳନାର ବାହାରେ । ଏଥରକ ଦେଖାରେ ସେ ଆହୁରି ନିଜର ହୋଇଯାଇଥିଲେ । ନିଜ ଘରର ଲୋକ ପରି ସେ ଆମଠାରୁ ଅନ୍ନ ଭୋଗ ମାଗି ଖାଇଥିଲେ । ସେଭଳି ଲୋକଙ୍କ ସାଙ୍ଗରେ ବନ୍ଧୁ ବାନ୍ଧିବାପାଇଁ ମୁଁ ନିଷ୍ପତ୍ତି ନେଲି । କିଛିଦିନ ପରେ ମୁଁ ମୋର ଭାଇ ବନ୍ଧୁଙ୍କ ସହ ତାଙ୍କ ଗୃହକୁ ଗଲି । ବାହାଘର ସଂବନ୍ଧ ନେଇ କଥାବାର୍ତ୍ତା ହେଲା । ମୋର ଜଣେ ବନ୍ଧୁ ଯୌତୁକ କଥା ଉଠାଇଲେ । ହଠାତ୍ ସେ ନିଜ ସ୍ଥାନରୁ ଉଠି ଚାଲିଗଲେ । କେତେ ନିର୍ଲୋଭ ମଣିଷଟିଏ । ଉପଯୁକ୍ତ ବନ୍ଧୁଟିଏ ପାଇଛି ବୋଲି ଭାବି ମନେ ମନେ ବହୁତ ଖୁସି ହୋଇଥିଲି । ସେ ଥିଲେ ପ୍ରକୃତରେ ଜଣେ ପୂର୍ଣ୍ଣାଙ୍ଗ ମଣିଷ ।

ବର୍ତ୍ତମାନ ଝିଅର ବାହାଘର ହେବାକୁ ଯାଉଛି । ଭାବୁଛି ଖଣ୍ଡିଏ ଚିଠି ଦ୍ୱାରା ଝିଅର ବାହାଘର ଦେଖିବା ପାଇଁ ତାଙ୍କୁ ମର୍ତ୍ତ୍ୟଲୋକକୁ ନିମନ୍ତ୍ରଣ କରିବି । କିନ୍ତୁ ଚିଠି ମିଳିବ କି ନାହିଁ ସନ୍ଦେହ । ସେ କିନ୍ତୁ ସ୍ୱର୍ଗରେ ତାଙ୍କ ପୁଅ ବୋହୂକୁ ନିଶ୍ଚିତ ଆଶୀର୍ବାଦ କରୁଥିବେ ।

ସେ ଛାଡ଼ିଯାଇଛନ୍ତି ବହୁ ଅଭୁଲାସ୍ମୃତି । ଅନୁଭବ କରୁଛି କେବଳ ନିର୍ଜନତା ଏବଂ ନିରବତା ହୃଦୟର ଗଭୀରତମ ପ୍ରଦେଶରେ ।

## ପ୍ରେରଣାର ଉତ୍ସ

ତ୍ରିପତି ମିଶ୍ର

କିଛି ମାସ ତଳେ ଶିଳ୍ପୀ ବିପିନ ବିହାରୀ ସାହୁଙ୍କ ଶ୍ରାଦ୍ଧ ଉତ୍ସବରେ ମୋର ଶିବରାମ ଭାଇନାଙ୍କ ସହ ସାକ୍ଷାତ ହୋଇଥିଲା । ସେ ପ୍ରାୟ ୧୫ ବର୍ଷ ପରେ ମୋତେ ଭେଟିଥିଲେ । ମୋର ଚେହେରାକୁ ଦେଖି କହିଥିଲେ-ଏତେ ମୋଟା ହୋଇଯାଇଛ ? ଚାଳିଶ ବର୍ଷ ଅତିକ୍ରାନ୍ତ ହୋଇସାରିଲାପରେ ସ୍ୱାସ୍ଥ୍ୟ ପ୍ରତି ଧ୍ୟାନ ଦେବା ଆବଶ୍ୟକ । ମର୍ଣ୍ଣିଂଓ୍ୱାକ କର, ପତଳା ଦୁଅ ଇତ୍ୟାଦି ।

ଶିବରାମ ଭାଇନାଙ୍କ ବୟସ ଷାଠିଏ ଅତିକ୍ରାନ୍ତ ହୋଇଯାଇଥିଲେ ସୁଦ୍ଧା ସେ ସୁସ୍ଥ ଓ ସବଳ ଦେଖାଯାଉଥିଲେ । ଶିବରାମ ଭାଇନା ଯେ ହଠାତ୍ ହୃଦରୋଗରେ ଆକ୍ରାନ୍ତ ହୋଇ ଜଲଦି ଚାଲିଯିବେ କଳ୍ପନା କରିହୁଏନା ।

ତାଙ୍କରି ଉଦ୍ୟମ ଓ ପ୍ରଚେଷ୍ଟାରେ ଉତ୍କଳ ଆଶ୍ରମ ପରିସରରେ 'କଳିଙ୍ଗ ସାହିତ୍ୟ ସମାଜ' ଗଢ଼ି ଉଠିଥିଲା । ଏହି ଅନୁଷ୍ଠାନର ସେ ପ୍ରଥମ ସାଧାରଣ ସଂପାଦକ । ମୋର ସାହିତ୍ୟ କ୍ଷେତ୍ରରେ ପ୍ରବେଶ ପରବର୍ତ୍ତୀ କାଳରେ 'କଳିଙ୍ଗ ସାହିତ୍ୟ ସମାଜ'ର ସଂଗଠନ ସଂପାଦକ ଓ ସାଧାରଣ ସଂପାଦକ ଦାୟିତ୍ୱ ତୁଲାଇବାରେ ଶିବରାମ ଭାଇନାଙ୍କ ପ୍ରେରଣା ଓ ଉତ୍ସାହ ରହିଥିଲା । ମୋର ମନେ ଅଛି ମୁଁ ଯେତେବେଳେ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର କାର୍ଯ୍ୟକ୍ରମ ନିର୍ବାହୀ ଭାବରେ ନିଯୁକ୍ତି ପାଇଲି ସେ ବହୁତ ଆନନ୍ଦିତ ହୋଇଥିଲେ ଏବଂ ସୁଦୂର ଗୁଣପୁରରୁ ଭୁବନେଶ୍ୱରକୁ ଆସି ମୋତେ ବଧାଇ ଜଣାଇଥିଲେ ।

'କଳିଙ୍ଗ ସାହିତ୍ୟ ସମାଜ' ଓ ଶିବରାମ ଭାଇନାଙ୍କ ପ୍ରମୁଖ ଲକ୍ଷ୍ୟ ଥିଲା ସାହିତ୍ୟ କ୍ଷେତ୍ରରେ ଯୁବକ ତଥା ନୂତନ ପ୍ରତିଭାକୁ ଉତ୍ସାହିତ କରିବା । ଅଶୀଦଶକରେ ଶିବରାମ ଭାଇନା, ଗୋପାଳ ରଥ ପ୍ରଭୃତିଙ୍କ ଉତ୍ସାହ ଓ ପ୍ରେରଣା ଯୋଗୁଁ ଆମେ ଛାତ୍ର ଥିଲାବେଳେ

ହିଁ 'କଳିଙ୍ଗ ସାହିତ୍ୟ ସମାଜ'ର ବିଭିନ୍ନ କାର୍ଯ୍ୟକ୍ରମରେ ସାମିଲ ହୋଇଯାଇଥିଲୁ । ନିଜର ବ୍ୟକ୍ତିଗତ କାରଣରୁ ସାହିତ୍ୟଠାରୁ ଦୂରେଇ ଯାଇଥିଲେ ମଧ୍ୟ ମୁଁ ଦୃଢ଼ତାର ସହ କହିପାରିବି ଯେ, ଛାତ୍ର ଥିବା ସମୟରେ ସ୍ୱେଚ୍ଛାକୃତ ଭାବରେ ସାହିତ୍ୟ, ସେବା କାର୍ଯ୍ୟକ୍ରମ ପରିଚାଳନା ତଥା ସାଂଗଠନିକ ଦାୟିତ୍ୱ ତୁଲାଇବା ଏବଂ ପରବର୍ତ୍ତୀ କାଳରେ ଏହାକୁ ପେଶା ଭାବରେ ଜୀବିକା ନିର୍ବାହ କରିବା ପଛରେ ଯେଉଁ କେତେ ଜଣଙ୍କର ଉତ୍ସାହ ଓ ପ୍ରେରଣା ରହିଥିଲା ସେମାନଙ୍କ ମଧ୍ୟରେ ଶିବରାମ ଭାଇନା ସବୁବେଳେ ମୋର ନମସ୍ୟ ହୋଇରହିବେ । ମୁଁ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି ।

ବ୍ରହ୍ମପୁର

## ଶିବରାମ୍ ସାର୍

ବିଭୁ ପ୍ରସାଦ ପଟ୍ଟନାୟକ

ଶିବରାମ ସାର୍‌ଙ୍କ ଅଲଗାହେଇ ବାରି ପଡ଼ିବା ପରି ବ୍ୟକ୍ତିତ୍ୱ କୌଣସି ଏକ କଳାତ୍ମକ ଚଳଚ୍ଚିତ୍ରର ଚରିତ୍ର ପରି ଲାଗେ । ଓଡ଼ିଶାର ଭାସ୍କର ଶିଳ୍ପୀ ଶ୍ରୀ ଶୋଭନ କୁମାରଙ୍କ ମୁହଁରୁ ଅନେକ ଥର ଶୁଣିଛି ''ଭାସ୍କର୍ଯ୍ୟ କଳାରେ ଫୁଟାଇପାରିବା ପରି ଛଟା ଶିବରାମ ସାର୍‌ଙ୍କ ଚେହେରାରେ ଭରି ରହିଥିଲା ।'' ଶ୍ରୀ ଶରତ କୁମାର ମହାନ୍ତିଙ୍କ ''ସକ୍ରେଟିସ୍ ଓ ପ୍ଲେଟୋ'' ପୁସ୍ତକର ପ୍ରଚ୍ଛଦରେ ମୁଦ୍ରିତ ସକ୍ରେଟିସ୍‌ଙ୍କ ମାର୍ବଲ୍ ମୂର୍ତ୍ତିଟି ଅନେକ ସମୟରେ ଶିବରାମ ସାର୍‌ଙ୍କ ମୂର୍ତ୍ତି ପ୍ରତିମ ଚେହେରା କଥା ସ୍ମରଣ କରାଇଦିଏ ।

ହାଇଦ୍ରାବାଦ ଓ ଅହମଦାବାଦରେ ରହି ଦୀର୍ଘ ଚାରିବର୍ଷ ପରେ ପୁଣି ଭୁବନେଶ୍ୱର ଫେରି ବାସିନ୍ଦା ହେବାର ଚେଷ୍ଟା ଓ ସଂଘର୍ଷ ସମୟରେ ଶିବରାମ ସାର୍‌ଙ୍କ ନିକଟ ସଂସ୍ପର୍ଶରେ ଆସିଥିଲି । ଦିନନାଥ ପାଠୀ ଓ ତାଙ୍କ ପରି କିଛି ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କ ସଂପର୍କ ମୋତେ ଦମ୍ଭଧରି ଜୀବନ ପଥରେ ଆଗେଇ ଯିବାର ଯଥେଷ୍ଟ ପ୍ରେରଣା ଯୋଗାଇ ଦେଇଥିଲା । ଅଧ୍ୟାପକ ଶିବରାମ ପାତ୍ର ସେମାନଙ୍କ ଭିତରୁ ଜଣେ । ଯିଏ ମୋ ପ୍ରଥମ ଗଳ୍ପକୁ ପଢ଼ି ସମାଲୋଚନା ଛଳରେ ଭୁଲ୍ କୁ ଭୁଲ୍, ଠିକ୍ କୁ ଠିକ୍ କହିଥିଲେ । ମୋ ଲେଖା ଯେ ପ୍ରକାଶ ଯୋଗ୍ୟ ତାହା ଚେତାଇ ଦେଇଥିଲେ । ତାଙ୍କରି ପ୍ରେରଣାରେ ସେ ଦିନ ଉଦୁଉଦିଆ ଖରାବେଳଟାରେ ଗୌରୀ ନଗରରୁ ଶେୟାର୍ ଅଟୋରେ ''ସମ୍ବାଦ'' ଅଫିସ୍ ଯାଇ ଶ୍ରୀ ଗୌରହରି ଦାସଙ୍କୁ ସାକ୍ଷାତ କରି ମୋ ଲେଖାଟି ଦେଇ ଆସିଥିଲି । ଯଥା ସମୟରେ ଲେଖାଟି ''କଥା''ରେ ପ୍ରକାଶ ପାଇଥିଲା ଓ ପୃଥିବୀର ଅଧିକାଂଶ ଲେଖକଙ୍କ ପରି ମୁଁ ମଧ୍ୟ ମୋ ପ୍ରଥମ ଗଳ୍ପକୁ ପ୍ରକାଶିତ ଅବସ୍ଥାରେ ପାଇ ଖୁସି ହେଇଥିଲି । ଶିବରାମ ସାର୍‌ଙ୍କୁ ସହୃଦୟ ଧନ୍ୟବାଦ ଜଣାଇଥିଲି ।

ତାଙ୍କ ସହ ଯେତେବେଳେ ବି ଦେଖା ହୁଏ ସେ ମୋ ଜେଜେବାପା ସ୍ୱର୍ଗତ ଶ୍ରୀ ମହେନ୍ଦ୍ର ପଟ୍ଟନାୟକଙ୍କ ଉଚ୍ଚ ପ୍ରଶଂସା କରନ୍ତି ଏବଂ ତାଙ୍କ ସାହିତ୍ୟ ଯେ ଦୁର୍ଲ୍ଲଭ ସେ କଥା ବାରମ୍ବାର ଚେତାଇ ଦିଅନ୍ତି । ସତକଥା କହିବାକୁ ଗଲେ ଅଳ୍ପ କିଛି ବହିକୁ ଛାଡ଼ିଦେଲେ ଜେଜେବାପାଙ୍କ ଅନ୍ୟସବୁ ବହି ଏବେ ଆମ ଘରେ ମଧ୍ୟ ମିଳୁନାହିଁ । ଶିବରାମ ସାର୍ ସବୁଥର ମୋତେ ନିର୍ଦ୍ଦେଶ ଦିଅନ୍ତି ଯେ ଜେଜେବାପାଙ୍କ ବହି ସଂଗ୍ରହ କରି ଗୋଟେ

ଗ୍ରନ୍ଥାବଳୀ ପ୍ରକାଶନ କରିବା ପାଇଁ ସହଯୋଗ କରିବାକୁ ସେ ପ୍ରସ୍ତୁତ । ଅବଶୋଷର ବିଷୟ ଯେ ତାଙ୍କ ଥିବା ଅବସ୍ଥାରେ ଏ ଦିଗରେ ମୁଁ ଇଞ୍ଚେ ମଧ୍ୟ ଆଗେଇ ପାରିଲିନି, ତାଙ୍କ ଇଚ୍ଛା ଓ ପ୍ରଚେଷ୍ଟା ଆଗତ ଭବିଷ୍ୟତରେ ତାଙ୍କରି ଆଶୀର୍ବାଦରେ ହିଁ ପୂରଣ ହେଇପାରିବ ବୋଲି ଆଶା ରଖୁଛି ।

ସେଦିନ ଶିବରାମ୍ ସାର୍‌ଙ୍କ ବଡ଼ ବ୍ବାଇଁ ଓ ମୋ ବଂଧୁ ରମାକାନ୍ତଙ୍କ ଜନ୍ମଦିନ ନିରାଡ଼ମ୍ବର ଓ ସାତ୍ତ୍ୱିକ ପରିବେଶ ଭିତରେ ମନେଇଥିଲେ । ଏଇ ଅବସରରେ ମୁଁ ନିମନ୍ତ୍ରିତ ହେଇ ଯାଇଥାଏ । ଶିବରାମ ସାର୍‌ଙ୍କ ଝିଅ-ଶୋଭନା ଶ୍ରୀମାଙ୍କ ପାଠଚକ୍ରର ଆୟୋଜନ କରିଥାନ୍ତି । ଶିବରାମ ସାର୍ ସୁଖାଦ୍ୟର ବନ୍ଦୋବସ୍ତ କରିଥିଲେ । ଖିଆ ସରିଲାବେଳକୁ ରାତି ଅନେକ ହେଇସାରିଥିଲା । ମୁଁ ଶିବରାମ ସାର୍‌ଙ୍କୁ ନମସ୍କାର ଜଣାଇ ଘରକୁ ଫେରିଥିଲି । ସେଦିନ ଥିଲା ତାଙ୍କ ସହ ମୋର ଅନ୍ତିମ ସାକ୍ଷାତ ।

ମଥୁରା

## ଶିବରାମ ସାରେ ଓ ମୁଁ ଏବଂ ଆମ ଭିତରର ସଂପର୍କ

ଭିକାରୀ ଧଳ

ସୁସାହିତ୍ୟିକ, ସଂଗଠକ ତଥା ସଫଳ ସାହିତ୍ୟିକ ବ୍ୟକ୍ତିତ୍ୱ ସ୍ୱର୍ଗତ ଅଧ୍ୟାପକ ଶିବରାମ ପାତ୍ରଂକ ସହିତ ମୋର ଶେଷ ଦେଖା ହୋଇଥିଲା କବି ଚିନ୍ତାମଣି ବେହେରାଙ୍କ ପୁଅ ସୁବ୍ରତଂକ ବିବାହ ଭୋଜିରେ, ପାଛନିବାସରେ । ମୁଁ ସେଠାରେ ସପରିବାର ଥିଲି । ଅଧ୍ୟାପକ ଶ୍ରୀଯୁକ୍ତ ପାତ୍ର ଆମ ନିକଟକୁ ଆସି ମୋ ସାନ ଝିଅଟିକୁ ଗଭୀର ଆଶୀର୍ବାଦ ପ୍ରଦାନ ସହ ଆମ ଉଭୟଂକର ଦୀର୍ଘ ପଚିଶି ବର୍ଷର ପରିଚୟର କଥା କହିଥିଲେ । କେବେ ତାଂକ ଗୌରୀନଗରସ୍ଥିତ ବାସ ଭବନକୁ ସପରିବାର ଯିବାକୁ ମଧ୍ୟ ପ୍ରସ୍ତାବ ଦେଇଥିଲେ ।

ଅନେକ ଅବିସ୍ମରଣୀୟ ଘଟଣା ଭିତରେ ତାଂକର ମୁରବୀପଣର କେତୋଟି କଥା ମନେପଡ଼େ, ''ତୁମେ କେବେ କବିଥିଲ, ଏବେ ତ ଗୋଟେ ଗଧର କାମ କରୁଚ, ମାନେ ପତ୍ରିକା ସଂପାଦନ ବୋଝକୁ ବୋହୁଥିବା ମଣିଷଟି ଗଧ ନୁହେଁ ତ ଥାଉ କଣ ? ମୁଁ ବି ବି.ଏ. ପଢୁଥିଲାବେଳୁ ସେଇ ଗଧ କାମ ଏ ଯାଏଁ କରୁଛି, ତୁମେ ବି କରୁଚ'' । ତଥାପି ମୋ ସଂପାଦିତ କବିତା ପତ୍ରିକା କାବ୍ୟଲୋକକୁ ସେ ସଂଗ୍ରହ କରି ସାଇତି ଥିଲେ- ଆରଂଭ ସଂଖ୍ୟାରୁ । ଠିକ୍ ତାଂକ ଆଖି ଆଗରେ ସର୍ବଦା ପଡ଼ିବା ପରି ଖାଇବା ଟେବୁଲ୍ ଉପର ତାଚା ଉପରେ ।

ହଠାତ୍ ଥରେ ଗାଁଠୁ ଅଳ୍ପ ଦୂରରେ ରାସ୍ତା କଡ଼ରେ ଶିବରାମ ସାରଂକୁ ଠିଆ ହୋଇଥିବାର ଦେଖିଲି । ମୋ ଗାଁ ପାଖରେ ଆପଣ କାହିଁକି ପ୍ରଶ୍ନର ଉତ୍ତରରେ ସେ କହିଲେ 'ଘରେ ବସିଥିଲି ମନ ହେଲା' । ତୁମେ ଗାଁରେ କେମିତି ରହୁଛ, ସାହିତ୍ୟ କରୁଛ, ପତ୍ରିକା କାଢୁଛ, କବିତା ଲେଖୁଚ ପୁଣି ଏତେଦୂରରୁ ଭୁବନେଶ୍ୱରକୁ ଦୌଡୁଚ, ରାତି ଅଧାକୁ ଫେରୁଚ-ସେଇଆ ଦେଖିବାକୁ ଆସିଚି । ଉଭୟେ ଫେରିଥିଲୁ । ସେ ଆଉଦିନେ ମୋ ଗାଁ ନିଜିଗଡ଼, କୁରୁଖୀ ଯିବାର ଦିନ ଆସିନାହିଁ...

# ବଡ଼ ଭିଣୋଇ

ଶ୍ରୀ ରୁଦ୍ର ପ୍ରସନ୍ନ ପାତ୍ର

ମୋ ବଡ଼ ଭିଣୋଇ ହିସାବରେ ତାଙ୍କ ସଂସ୍ପର୍ଶରେ ମୁଁ ବହୁତ ଆସିଛି ଅନେକ ବିଷୟରେ ତାଙ୍କ ସହ ଆଲୋଚନା ମଧ୍ୟ ହୋଇଛି କେବଳ ସାହିତ୍ୟ ଛଡ଼ା, କାରଣ ତାଙ୍କ ସାହିତ୍ୟ ଜ୍ଞାନ ନିକଟରେ ମୁଁ ପୂରାପୂରି ଅଜ୍ଞ କହିଲେ ଚଳେ । ଅନେକ ଘଟଣା ତ ମନେ ନାହିଁ, କିନ୍ତୁ ମନେ ଥିବା ଘଟଣାମାନଙ୍କ ମଧ୍ୟରୁ ଗୋଟିଏ ୨୫.୨.୨୦୦୫ ଅର୍ଥାତ୍ ସେ ସ୍ୱର୍ଗାରୋହଣ କରିବା ଦିନକ ପୂର୍ବର । ୨୫ ତାରିଖ ମୋ ଦୋକାନ ବନ୍ଦ ରୁହେ ଏଣୁ ମୋତେ ଘରକୁ ଡକାଇ ଥିଲେ ତାଙ୍କ ପୁଅ ବିଶ୍ୱକସେନର ନିର୍ବନ୍ଧ ବିଷୟରେ କଥାବାର୍ତ୍ତା ହେବା ପାଇଁ । ମୁଁ ସସ୍ତ୍ରୀକ ଯାଇ ସଂଧ୍ୟାରେ ତାଙ୍କ ଘରେ ପହଁଚିଲି । ନିର୍ବନ୍ଧକୁ କାହାକୁ ଡକାଯିବ, କେଉଁ ଗାଡ଼ି ବ୍ୟବସ୍ଥା କରାଯିବ ଇତ୍ୟାଦି । କଥାବାର୍ତ୍ତା ମଧ୍ୟରେ ମୋତେ କହିଲେ ଭାଇ ଦିନକ ପରେ ମୁଁ ପାରଳାଖେମୁଣ୍ଡି ଯାଉଛି ଗୋଟିଏ ସାହିତ୍ୟ ସମ୍ମିଳନୀରେ ଯୋଗଦେବାପାଇଁ । ମୁଁ ଜାଣିଥିଲି ନିକଟରେ ସେ ଫୁଲବାଣି, ବାଲିଗୁଡ଼ା ଏହିପରି ଦୂର ଯାତ୍ରା କରି ଯାତ୍ରା ମଧ୍ୟରେ ବେମାରରେ ପଡ଼ିଯାଇଥିଲେ । ଏଣୁ ମୁଁ ବିରକ୍ତ ହେବାଭଳି କହିଲି ତୁମେ ତ ସାହିତ୍ୟ ସାହିତ୍ୟ ହୋଇ ଦିନଯାକ ବୁଲୁଛ, ଚାକିରୀରୁ ଅବସର ନେବା ପରେ ମଧ୍ୟ ବିଶ୍ରାମ ନେଉନାହଁ । ବସ ଯାତ୍ରା ଦ୍ୱାରା ଅଣ୍ଟା ବିନ୍ଧା ବାହାରୁଚି ଏଣୁ ଏସବୁ ଛାଡ଼ ଓ ବର୍ତ୍ତମାନ କିଛି ବିଶ୍ରାମ ନିଅ । ହଠାତ୍ ସେ ଉଦାସ ହୋଇ ଗଲେ ଓ କହିଲେ ସେ ତ ମୋ ଜୀବନ ତାକୁ ଯଦି ଛାଡ଼ି ଦେବି ତେବେ ମୋ ବଞ୍ଚିବାର ମୂଲ୍ୟ ବା କଣ ? ତା ବିନା ବଞ୍ଚିପାରିବି ନାହିଁ । ମୁଁ ସଙ୍ଗେ ସଙ୍ଗେ ମୋ ଭୁଲ ବୁଝି ପାରି ଦୁଃଖିତ ହେଲି । ମୁଁ ଜାଣିଛି ଓଡ଼ିଆଭାଷାକୁ ଓଡ଼ିଆ ସାହିତ୍ୟକୁ ସେ କିଭଳି ଭାବେ ଭଲପାଆନ୍ତି ନିଜ ଜୀବନଠାରୁ ମଧ୍ୟ ତାଙ୍କ ପାଇଁ ତାହା ମୂଲ୍ୟବାନ । ଆଉ କେବେ ଜୀବନରେ ଏଭଳି କହିବିନାହିଁ ବୋଲି ମନେ ମନେ ଠିକ୍ କରି ପ୍ରସଙ୍ଗ ପଦାଳାଇ ଦେଲି । ଠିକ୍ ତା ପରଦିନ ୨୬/୨ରେ ସେହି ସାହିତ୍ୟ ସମ୍ମିଳନୀରେ ଯୋଗଦେବା ଅବସ୍ଥାରେ ଅସୁସ୍ଥତା ଅନୁଭବ କରି ଅଧାରୁ ଘରକୁ ଫେରିଆସିଥିଲେ ଓ ତାର କିଛି ସମୟ ପରେ ହୃଦ୍‌ଘାତରେ ତାଙ୍କର ପ୍ରିୟ ସାହିତ୍ୟ ଓ ଆମ ସମସ୍ତଙ୍କୁ ଛାଡ଼ି ସବୁଦିନ ପାଇଁ ଆରପାରିକୁ ଚାଲିଗଲେ । ତାଙ୍କର ମହାନ ଆତ୍ମା ଭଗବାନଙ୍କ ଠାରେ ଲୀନ ହୋଇଯାଉ ଏହାହିଁ ତାଙ୍କର ମୃତ୍ୟୁ ବାର୍ଷିକୀରେ ମୋର ପ୍ରାର୍ଥନା ।

## ଶିବରାମ୍ ସାର୍

ରଜନୀ ରଣସିଂ

ସେଦିନ ବାବା କହିଲେ ଶିବରାମ୍ ସାରଙ୍କ ପରଲୋକ ହୋଇଗଲା । ଏକଥା ଶୁଣିବା ପରେ ମଧ ମୁଁ ଆଦୌ ବିଶ୍ୱାସ କରିପାରିଲି ନାହିଁ ।

ନମସ୍କାରଟିଏ କରିବା ମାତ୍ରେ ଭରପୁର ଆଶୀର୍ବାଦ ଅଜାଡ଼ି ଦେଉଥିଲେ । କହୁଥିଲେ ଏ ସମୟରେ ଖୁବ୍ ଭଲ ଆଲୋଚନା ଲେଖୁଚ, ଲେଖ ଲେଖ... ମାଡ଼ିଚାଲ ଆଗକୁ ଆଗକୁ । ସବୁଠୁ ବେଶି ଆଶ୍ଚର୍ଯ୍ୟ ଲାଗେ ତାଙ୍କର ପଠନପିପାସୁ ହୃଦୟ ଓ ମନେ ରଖିବାର ଅଦ୍‌ଭୁତ ଶକ୍ତି । ବିଶେଷତଃ ଉପର ଠାଉରିଆ ଭାବରେ କୌଣସି କଥା କହନ୍ତି ନାହିଁ । ଯାହା ପଢ଼ି ଠିକ୍ ଭାବରେ ମନେରଖି କୁହନ୍ତି । ତୁମର କାବ୍ୟଲୋକର ପୂଜା ସଂଖ୍ୟାରେ ନାୟିକା ପରିଚୟ ଆଟିକିଲଟି ଖୁବ୍ ଚମତ୍କାର ହୋଇଥିଲା, ଇତ୍ୟାଦି ଇତ୍ୟାଦି ।

ସେ କେବଳ ପ୍ରଶଂସା କରନ୍ତି ତା ନୁହେଁ । ଖୁବ୍ ଗୋଟେ ଅନ୍ତରଙ୍ଗ ନିବିଡ଼ ପଣରେ ବାନ୍ଧି ହୋଇଯାନ୍ତି ହୃଦୟରେ । ନା ତାଙ୍କର ଥାଏ ଅଧାପକୀୟ ଅହଂକାର ନା ସ୍ରଷ୍ଟାପଣର ଅଭିମାନ । ସ୍ନେହ, ପ୍ରେମ ଭଲପାଇବା ଓ ମଣିଷପଣର ସେ ଥିଲେ ଭିନ୍ନ ଉଚାରଣ । ଆଜି ବି ବିଶ୍ୱାସ କରି ହେଉନି ତାଙ୍କର ଅବର୍ତ୍ତମାନତାକୁ ଏବଂ ଅନୁଭବ ମଧ କରି ହେଉନି ।

କାବ୍ୟଲୋକ, ଭୁବନେଶ୍ୱର

## ଯାହା ମୋର ସାରା ଜୀବନ ମନେ ରହିବ

ପି. ସୂର୍ଯ୍ୟନାରାୟଣ ପାତ୍ର

ମୁଁ ଯୁକ୍ତ ଦୁଇ ଶ୍ରେଣୀ କେଉଁଠି ପଢ଼ିବି ବଡ଼ ଚିନ୍ତାର ବିଷୟ ଥିଲା, ସେତେବେଳେ ଖରାଛୁଟି ହେଇଥାଏ ମାମୁଁ ଆମ ଗାଁକୁ ଆସିଥାନ୍ତି । ଗୋଟେ ପଟେ ମାମୁଁଙ୍କୁ ଭୟ ଅନ୍ୟପଟେ ମାମୁଁଙ୍କ ପରିବେଶ, ମାମୁଁଙ୍କ ଆଦର୍ଶ, ମାମୁଁଙ୍କ ଗ୍ରନ୍ଥାଳୟ, ମୋତେ ତାଙ୍କରି ନିକଟତର ହେବାକୁ ଟାଣୁଥାଏ । ଯୋଗକୁ ମାମୁଁ ମୋତେ ତାଙ୍କରି ପାଖରେ ରହି ପଢ଼ିବାକୁ ନିମନ୍ତ୍ରଣ କଲେ । ମୁଁ ତାଙ୍କରି ପାଖରେ ରହିବା ପରେ ମୋ ଜୀବନର ଏକ ଭିନ୍ନ ଗତି ଆରମ୍ଭ ହେଲା ।

ଥରେ ଗୋଟିଏ ଗ୍ଲାସ୍‌ର ସାଇଜ୍ ଫ୍ରେମ୍‌ଠୁ ବଡ଼ ହୋଇଥିଲା । ସେଇ ଗ୍ଲାସଟିକୁ କଟେଇବା ପାଇଁ ମୋତେ ପଠାଇଥିଲେ । କିନ୍ତୁ ସେ ଯେଉଁ ପଟୁ କଟେଇବାପାଇଁ କହିଥିଲେ ମୁଁ ତାର ଓଲଟା ପଟୁ କଟେଇ ଆଣିଥିଲି । ହଠାତ୍ ଏହା ଦେଖି ମୋ ପିଠିରେ ଗୋଟିଏ ଚାପୁଡ଼ା ବାଜିଥିଲା ମାମୁଁଙ୍କଠାରୁ ଏବଂ ମୁଁ କାନ୍ଦିଥିଲି । ମୁଁ କାନ୍ଦିଥିଲି ସତ ହେଲେ ତାଙ୍କ ମାଡ଼ ମୋତେ କାଟିଥିଲା ସେଇଥିପାଇଁ ନୁହେଁ । ଏଇଥିପାଇଁ ଯେ ମୋତେ ମାରିଥିଲେ

ବୋଲି । କିନ୍ତୁ ତା' ପରମୁହୂର୍ତ୍ତରେ ସେ ମୋତେ ବହୁତ ବୁଝାଇଥିଲେ । ସେଇ ମାଡ଼ ପାଇଁ ଚିତ୍ରା ଓଦିନେ (ମାମୁଁଙ୍କ ଝିଅ) ମଧ୍ୟ ବହୁତ ବୁଝାଇଥିଲେ । ସେହି ଦିନଠାରୁ ସେ ମୋତେ ଆଉ କେବେ ବି ମାଡ଼ ଦେଇନାହାନ୍ତି । ସବୁବେଳେ ଉଦାହରଣ ଦେଇ ଓ ଗାଳିଦେଇ ବୁଝାଇବାପାଇଁ ଚେଷ୍ଟା କରିଛନ୍ତି । ମୁଁ ତାଙ୍କରି ଭଣଜା ସତ କିନ୍ତୁ ସବୁବେଳେ ସେ ମୋତେ ପୁଅରୂପେ ପରିଚିତ କରାନ୍ତି ।

ନବରଙ୍ଗପୁରରେ ରହିବାର କିଛିଦିନପରେ ସେ ମୋତେ ଆର୍.ଏସ୍.ଏସ୍.ର ଜଣେ ସ୍ୱୟଂସେବକ ହେବାକୁ ପ୍ରେରଣା ଦେଇଥିଲେ । ସକାଳୁ ଉଠି ଯିବାକୁ ପଡ଼େ କିନ୍ତୁ ମୋର ନିଦ ଭାଙ୍ଗେନି । ତେଣୁ ଭୋର୍ ପାଞ୍ଚଟାରେ ଉଠାଇ ମୋତେ ଚା' କରିକି ଦେବାପାଇଁ କହନ୍ତି । ମୁଁ ଚା' କପ୍‌ଟିଏ ବଦଳରେ ଦେଢ଼ କପ୍ କରିଦିଏ । ଗୋଟେ କପ୍ ତାଙ୍କ ପାଇଁ ଅଧକପ୍ ମୋ ପାଇଁ । ସକାଳୁ ଚା' ପିଇ ଏକ୍‌ସର୍‌ସାଇଜ୍ କଲେ ପେଟ ଖରାପ ହବ ବୋଲି ପାଟି କରନ୍ତି । କାଳେ ସିଏ ପାଟି କରିବେ ସେଇ ଭୟରେ ସେ ଅଧାକପ୍ ଚା' ମୁଁ ରୋଷେଇ ଘରେ ହିଁ ପିଇଦେଇଥାଏ । ତାଙ୍କରି ପ୍ରେରଣାରେ ମୁଁ ଦୁଇଟା ଆର୍.ଏସ୍.ଏସ୍. କ୍ୟାମ୍ପରେ ଯୋଗଦେଇଛି । ଥରେ ଆର୍.ଏସ୍.ଏସ୍.ର ନଗର ପରିକ୍ରମାରେ ମୁଁ ଲିଡ଼ର୍ ହୋଇଥାଏ । ନଗର ପରିକ୍ରମା ପରେ ଆମ ସ୍କୁଲ୍ ପଡ଼ିଆରେ ଏକ କାର୍ଯ୍ୟକ୍ରମର ଆୟୋଜନ ହୋଇଥାଏ । ଆମର ଦଣ୍ଡଚାଳନା ଏବଂ ସମର ଅଭ୍ୟାସ ଥାଏ । ମାମୁଁ ମଧ୍ୟ ସେଠି ଉପସ୍ଥିତ ଥା'ନ୍ତି । ଆମର ସଂଘ ପରିଚାଳକ ଶ୍ରୀ ସୁଭାଷ ଭାଇ କହିଲେ ଦେଖନ୍ତୁ ଆପଣଙ୍କ ଭଣଜା କେମିତି ଦଣ୍ଡ ବୁଲାଉଛି । ମାମୁଁ ସେଠି ହସି ହସି ଅଧାଓଡ଼ିଆ ମିଶା ହିନ୍ଦୀରେ କହିଥିଲେ, 'ଆଖିର୍ ବେଟା କାହାର'.... ।

ନବରଙ୍ଗପୁରରୁ ମୁଁ ବିଦାୟ ନେବାର କିଛିଦିନ ପୂର୍ବରୁ ମୋର ଯୁକ୍ତ ଦୁଇ ପରୀକ୍ଷାଫଳ ବାହାରିଥାଏ । ପରୀକ୍ଷାଫଳ ଆଣିବାପାଇଁ ମୁଁ ସକାଳ ଦଶଟାରେ କଲେଜ ଯାଉଥାଏ । ହଠାତ୍ ଅଧା ରାସ୍ତାରେ ମାମୁଁ ମୋତେ ଦେଖା ହେଲେ । କହିଲେ, 'ମୁଁ ତୋର ମାର୍କସିଟ୍ ଆଣିଛି, ତୁ ନବରଙ୍ଗପୁର କଲେଜରେ ପ୍ରଥମ ହେଇଛୁ କିନ୍ତୁ ଫାଷ୍ଟକ୍ଲାସ୍ ହେଇନି । ମୋ ମନ ଖୁସି ଏଇଥିପାଇଁ ଯେ କଲେଜରେ ତୁ ମୋ ନାଁ ରଖିଲୁ, ଏଥିପାଇଁ ଦୁଃଖ ଯେ କେବଳ ସାତ ମାର୍କ ପାଇଁ ଫାଷ୍ଟକ୍ଲାସ୍ ପାଇଲୁ ନାହିଁ ।'

ସେ ଦୁଇବର୍ଷ ଭିତରେ ସେ ମୋତେ ମୋର ଚାଲିବା ପିନ୍ଧିବା କଥା କହିବା, ହସିବା, କାନ୍ଦିବା, ବଞ୍ଚିବା ସବୁକିଛିର ଶୈଳୀ ଉଦାହରଣ ଦେଇ ବୁଝାଇଦେଇଥିଲେ । ଯେଉଁଗୁଡ଼ାକ ମୋର ସାରା ଜୀବନ ମନେରହିବ ।

ମାମୁଁ ଚାଲିଯିବାର ଦୁଇଦିନ ପୂର୍ବର କଥା, ଦିନ ଗୋଟାଏ ବାଜିଥାଏ । ସେ କ'ଣ ଗୋଟିଏ ସମ୍ମିଳନୀରୁ ଫେରିଥାନ୍ତି । ଦୁହେଁ ମିଶି ଖାଇବାପରେ ସେ ଗୋଟିଏ ବହି ପଢୁଥାନ୍ତି, ମୁଁ ବି ପାଖରେ ପଢୁଥାଏ । ଅଣ୍ଟା ତାଙ୍କର ବିନ୍ଧୁଥାଏ, ମୋତେ ଦାବି ଦେବାକୁ କହିଲେ । ଅଣ୍ଟା ଦାବିବା ସମୟରେ କହିଲେ, 'ଜୀବନର ପ୍ରକୃତ ସମ୍ପର୍କ ହେଲା ଲୋକ ସମ୍ପର୍କ । ଲୋକଙ୍କ ସହ ଯେତେ ସମ୍ପର୍କ ବଢ଼ିବ ନିଜ ବ୍ୟକ୍ତିତ୍ୱ ସେତେ ସୁଦୃଢ଼ ହେବ ।' ତାପରେ କହିଲେ ନବରଙ୍ଗପୁରରେ ପାତ୍ର ସାର୍‌ଙ୍କ ପୁଅ ବୋଲି ନିଜ ପରିଚୟ ବଢ଼େଇଦେଲୁ, ସେଥିରେ ଆଜି ତୁ କହୁଛୁ ନବରଙ୍ଗପୁର ମୋର ଭିଟାମାଟି, ଆଉ ବର୍ଷରେ ଥରଟିଏ ଯେମିତି ହେଲେ ମୋତେ ନବରଙ୍ଗପୁର ଯିବାକୁ ପଡ଼ିବ । କିନ୍ତୁ ଭୁବନେଶ୍ୱରରେ ଯେହେତୁ

ତୁ ରହିବୁ ସେହେତୁ ଏଠିବି ନିଜେ ନିଜର ବ୍ୟକ୍ତିତ୍ୱ ଗଠନ କରି ସମସ୍ତଙ୍କ ସହ ସୁସମ୍ପର୍କ ବଢ଼ାଇବାକୁ ଚେଷ୍ଟା କରିବୁ ।

ଏ ସୃଷ୍ଟି ବଡ଼ ବିଚିତ୍ର ! ଏ ସ୍ରଷ୍ଟା ମଧ୍ୟ ନିଶ୍ଚିତ ଭାବେ ତା'ଠାରୁ ଅଧିକ ବିଚିତ୍ର ହୋଇଥିବେ । ଏହି ଦୁନିଆଠାରୁ ବୋଧହୁଏ ଆଉ ଏକ ଭିନ୍ନ ଦୁନିଆ ରହିଛି, ଯାହାକୁ ଆମେ କହିଥାଉ ଦେବଲୋକ । ଯେଉଁଠି କେବଳ ପରୀମାନେ ଓ ମର୍ଯ୍ୟାଦା ପୁରୁଷମାନେ ବାସକରନ୍ତି । ବିଧାତାଙ୍କର ବୋଧହୁଏ ଚିନ୍ତା ଥିଲା ଯେ, ମାମୁଁ ହୁଏତ ସୁଖରେ ବୁଡ଼ିଯାଇ ଆଉ ତାଙ୍କ ଦୁନିଆକୁ ଯିବାକୁ ମନାକରି ଦେବେ । ତେଣୁ ତାଙ୍କୁ ଶୀଘ୍ର ଏହି ଆନନ୍ଦମୟ ସଂସାରରୁ ମୁକ୍ତି ଦେବାକୁ ଚାହିଁଥିଲେ ।

ସେ ଆମ ସମସ୍ତଙ୍କ ଖୁସିରେ ନିଜେ ଖୁସି ହୁଅନ୍ତି । ଆଉ ଆମେ କେମିତି ତାଙ୍କୁ ଲୁହ ଝରାଇ ବିଦାୟ ଦେଇଥାନ୍ତୁ ଯେ ? ତାଙ୍କର ଏହି ଜୟ ଯାତ୍ରାରେ ମୁଁ କେବଳ ଶୁଭେଚ୍ଛା ହିଁ ଦେଇପାରିବି- ସେ ଯେଉଁଠି ଯେଉଁ ରୂପରେ ବି ଥାଆନ୍ତୁ ସବୁବେଳେ ନିଶ୍ଚିନ୍ତରେ ରୁହନ୍ତୁ ।

## ବନ୍ଧୁ ସ୍ମରଣେ - କିଛି ଅଭୁଲା ସ୍ମୃତି

ଡକ୍ଟର ଏନ୍. ବିଜୟ କୁମାର ଚୌଧୁରୀ

ସାର୍ ଟିକେ ରହିବେ- ଚିହ୍ନାସ୍ୱର ଓ ଡାକ କାନରେ ବାଜିବାରୁ ପଛକୁ ଚାହିଁଲି । ପୁରୁଣା ବନ୍ଧୁ ଆଗେଇ ଆସୁଛନ୍ତି କିଛି ସୁଖଦୁଃଖ କଥାଭାଷା ପାଇଁ । ଗାଡ଼ି ରଖିଲି । ପଚାରିଲେ ପିଲାମାନେ କିପରି ଅଛନ୍ତି ପଢ଼ାପଢ଼ି କେତେ ଦୂର ଗଲା ଇତ୍ୟାଦି । ପରେ ପରିବା ମୁଣିକୁ ଚାହିଁ ପଚାରିଲେ କ'ଣ ଭୋଜିଭାତ ଅଛିକି ବୋଝେ ପରିବା । ହସିଲି, କହିଲି ଆଜି କାଞ୍ଜି ହେବ ତେଣୁ ସବୁ ପରିବା ଯାଉଛି । ପଚାରିଲେ ଗୋଟା ରସୁଣ ପଡ଼ିବ କହିଲି ହଁ ୫ଟା ମଞ୍ଜି ବି ପଡ଼ି ଗୋଟିଏ ଜବରଦସ୍ତ ପାଗ ହେବ । ହସି ହସି କହିଲେ ଅଧିକା ପରିବା କାଟିବେ ମୁଁ ଆସି ପହଞ୍ଚିବି । ଏକାଠି ଖାଇବା । ବା କି ସ୍ନେହ, ଆନ୍ତରିକତା, ବନ୍ଧୁତ୍ୱ । ବହୁତ ଖୁସି ଲାଗିଲା । ଆଜିକାଲିର ଲୋକେ ଯେପରି ନିଜର ଷ୍ଟାଟସ୍ ପାଇଁ ସଚେତନ ହୋଇ ପାଟି ଥଙ୍ଗେଇ ଥଙ୍ଗେଇ କଥା ହୁଅନ୍ତି ତାହା ବନ୍ଧୁଙ୍କ ପାଖରେ ନଥିଲା । ଏପରି ସ୍ୱହୃଦୟତା ବ୍ୟକ୍ତିତ୍ୱ ବିରଳ ।

ସରକାରୀ ଚାକିରୀ ଆରମ୍ଭ ହେଲା ବେଳେ ମୋର ସାନକକାଙ୍କଠାରୁ ତାଙ୍କ ବିଷୟରେ ବହୁତ ଶୁଣିଥିଲି । କେବେ ଦେଖା ହୋଇନଥିଲା । ଜାଣିଥିଲି ଗୁଣପୁର କଲେଜରେ ଓଡ଼ିଆ ଅଧ୍ୟାପକ ଥିଲେ । ପାରଳାଖେମୁଣ୍ଡିରେ ଥିବା ସମୟରେ ମନରେ ବହୁତ ଥର ଭାବିଛି କିପରି ଦେଖା ହୁଅନ୍ତା କି ପରୀକ୍ଷା କାମରେ ଥରେ ଗୁଣପୁର ଯିବାକୁ ପଡ଼ିଲା । ପରୀକ୍ଷା ଶେଷ ଦିନ ବାହାରିଲି ବନ୍ଧୁଙ୍କ ସହିତ ଦେଖା କରିବା ପାଇଁ । ଦିନ ପ୍ରାୟ ଚାରିଟା ହେବ । ଖରାଦିନ । ରାସ୍ତା ପଚାରି ଏକୁଟିଆ ଯାଉଥିଲି । ଜଣେ ଭଦ୍ରବ୍ୟକ୍ତି ସାଇକେଲ୍‌ରେ ମୋ ଆଗକୁ ଚାଲିଗଲେ । ପଛରୁ ଡାକିଲି ଆଜ୍ଞା ଶୁଣିବେ କି ? ସାଇକେଲ୍‌ରୁ ଓହ୍ଲାଇ

ପଚାରିଲେ କ'ଣ ? କହିଲି ଆଜ୍ଞା ଅଧ୍ୟାପକ ଶିବରାମ ପାତ୍ରଙ୍କ ଘରଟି ଦେଖାଇ ଦେବେ କି ? ସେ ମୋତେ ସାଙ୍ଗରେ ଡାକିଲେ ଏବଂ ରାସ୍ତାରେ ମୋର ପୁରୁଣା ଜଣାଶୁଣା ବନ୍ଧୁପରି ସ୍ୱଭାବ ସୁଲଭ ଢଙ୍ଗରେ କଥାବାର୍ତ୍ତା କରିଚାଲିଲେ । ଘର ପାଖରେ ସାଇକେଲ୍ ରଖି କହିଲେ ଏହି ଆପଣଙ୍କ ବନ୍ଧୁଘର । ଏବଂ ଅବାଧରେ ସେଇ ଘରେ ପ୍ରବେଶ କରି ସ୍ତ୍ରୀଙ୍କୁ ଡାକିଲେ । କହିଲେ ଜଣେ ପୁରୁଣା ବନ୍ଧୁ ଆସିଛନ୍ତି । ଆସ, ମୁଁ ଆଶ୍ଚର୍ଯ୍ୟ ହୋଇଗଲି ଯେଉଁ ବ୍ୟକ୍ତିଙ୍କୁ ଘର ଚିହ୍ନାଇବା ପାଇଁ କହିଥିଲି ସେ ନିଜେ ଶିବରାମ ବାବୁ । ଦୁଇ ତିନି ଘଣ୍ଟା ଘରେ ରହିଲି କଥାଭାଷାରୁ ଜାଣିପାରିଲି ସେ କେତେ ନମନୀୟ, ବାଗ୍ମୀ, ନିଷ୍କପଟ ଓ ପ୍ରଗତିଶୀଳ । ଏ ଭିତରେ ବନ୍ଧୁ ପତ୍ନୀଙ୍କୁ କିଛି ଖାଇବାକୁ ଦେବାକୁ ବରାଦ କରିଥିଲେ । କିଛି ସମୟ ପରେ ଆସିଲା ମୋର ଅତି ପ୍ରିୟ ଜଳଖିଆ ଅରୁଆ ଚାଉଳର ସୁଜି ଉପମା । ଭୋକ ହେଉଥିଲା । ଖୁସିରେ ଖାଇ ଫେରିବାକୁ ବାହାରିଲି । ବହୁତ ବାଧ କଲେ ରାତିରେ ରହିବା ପାଇଁ । କିନ୍ତୁ ରହି ନପାରି ଫେରିଲି ।

ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଅଗାଧ ପ୍ରେମ ଓ ଆଗ୍ରହ । ଓଡ଼ିଶା ବିଜ୍ଞାନ ଏକାଡେମୀର ସଂପାଦକ ଥିବାବେଳେ ମୋର ବହୁତ ଥର ଦେଖା ହୋଇଛି ଏବଂ ଅଫିସ୍‌କୁ ମଧ୍ୟ ଆସନ୍ତି । ବିଜ୍ଞାନ ଦିଗନ୍ତ ପତ୍ରିକାର ଉନ୍ନତି ପାଇଁ ପରାମର୍ଶ ଦିଅନ୍ତି ଓ କାର୍ଯ୍ୟକ୍ରମକୁ ମଧ୍ୟ ପ୍ରଶଂସା କରନ୍ତି । ପ୍ରସାର ପାଇଁ ଉଦ୍ୟମ କରନ୍ତି ।

ହଠାତ୍ ବନ୍ଧୁଙ୍କର ଚାଲିଯିବାର ଖବର ଶୁଣି ଅତ୍ୟନ୍ତ ମର୍ମାହତ ହେଲି । ମନରେ ଅସହ୍ୟ ବେଦନା ଚାହୁଁ ଚାହୁଁ ବର୍ଷେ ବିତିଗଲା ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ଭଗବାନଙ୍କଠାରେ ପ୍ରାର୍ଥନା ।

ପୋଖରୀପୁଟ
ଭୁବନେଶ୍ୱର-୨୦

## ସ୍ମୃତି ସେ କେବେ ହେଁ ନୁହେଁ ଫିଙ୍ଗିବାର

ଡକ୍ଟର ନିଶାମଣି ସ୍ୱାଇଁ

ବିଭାଗୀୟ ମୁଖ୍ୟ ହିସାବରେ ନୁହେଁ, ଜଣେ ବଡ଼ଭାଇ ହିସାବରେ ମୋ ଉପରେ ହୁକୁମ୍ ଜାହିର କରୁଥିଲେ, ତାକୁ ଅନ୍ୟମାନେ ଶୁଣି ହସୁଥିଲେ । ମୁଁ ତାଙ୍କୁ ପ୍ରଥମ ଦିନରୁହିଁ 'ଭାଇ' ବୋଲି ଡାକୁଥିଲି । ଅନେକ ସମୟରେ କହୁଥିଲେ କିଛି ପାଇଟି ନକରି ଖାଲି ବସି ହସି ବେଳ କଟେଇଲେ କ'ଣ ହବହେ, କିଛି ଗୋଟାଏ କର, କେତେବେଳ ଚାଲିଯିବ ଜାଣିପାରିବନି । ଆଜି ସେ ଚାଲିଗଲାପରେ କହୁଥିବା କଥାଟି ମନେ ପଡ଼ିଯାଉଚି । ମୁହଁଟି ବାରମ୍ବାର ଦିଶିଯାଉଛି । କୌଣସି କଥାକୁ ବିନା ଯୁକ୍ତିରେ ଗ୍ରହଣ କରିବା ଲୋକ ସେ ନଥିଲେ । ସବୁ କଥାରେ ଯୁକ୍ତି, କଥା କଟାକଟି ତାପରେ ସମାଧାନର ସୂତ୍ର ବାହାରିବ ।

ପିଲାମାନଙ୍କ ଭିତରେ 'ଗୋପବନ୍ଧୁ ସାର୍' ହିସାବରେ ବେଶ୍ ପରିଚିତ । ଥରେ ଜଣେ ପିଲାକୁ ପଚାରିଲି, ଆରେ ଗୋପବନ୍ଧୁ ସାର୍ ବୋଲି ତାଙ୍କୁ କାହିଁକି କହୁଛ । ପିଲାଟି

କହିଲା, ଦେଖୁନାହାନ୍ତି, ସାର୍‌ଙ୍କ ମୁହଁର ଦାଢ଼ି, ହାତରେ ଗଛ ଆଉ ମୁହଁରୁ ସବୁବେଳେ ନୀତି ଆଦର୍ଶର କଥା । ସବୁ ସଭାରେ ସେ ଥିବେ ନିଶ୍ଚୟ, ଲୋକ ସଂପର୍କ ଏତେ ଅଧିକ ଯେ, ବହୁ ଜାଗାରେ ଲୋକେ ପଚାରନ୍ତି, କ'ଣ ପାତ୍ରବାବୁ ସେଠି ଅଛନ୍ତି ପରା । ଶିବରାମ ବାବୁ କେମିତି ଅଛନ୍ତି । ଆଶ୍ଚର୍ଯ୍ୟ ହୁଏ ମୁଁ, ଭାଇ ସାଇକେଲ୍ ଚଢ଼ି ଏତେ ଲୋକଙ୍କ ପାଖରେ ପହଞ୍ଚିଯାଇଛନ୍ତି । ଆଶ୍ଚର୍ଯ୍ୟ ହେଇଛି, କି ବିଚିତ୍ର ଲୋକ, ଛଳ, ଅଭିମାନ ଟିକିଏ ବି ନାହିଁ । କାହା ବିରୁଦ୍ଧରେ ସେମିତି ଅଭିଯୋଗ ବି ନାହିଁ । ସମସ୍ତଙ୍କୁ ଆପଣେଇନେବାର, ନିଜର କରିନେବାର ଆଗ୍ରହ । ବେଳେବେଳେ କିଛି ଅପ୍ରିୟ ସତ୍ୟ ପ୍ରକାଶ କରିଦେଇ କିଛି ଲୋକଙ୍କ ଅପ୍ରିୟ ହୋଇପଡ଼ନ୍ତି । ପଚାରିଲେ କହନ୍ତି, 'ମିଛଟା କହିଲି କି' ତେବେ ଲୋକେ ତାଙ୍କୁ ଯାହା ଭାବନ୍ତୁ ନା କାହିଁକି, ସେଥିପ୍ରତି ତାଙ୍କର ନିଘା ନଥାଏ ।

ଏକାମ୍ର କଲେଜରେ 'ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠା ହେବ । ସେ ମୁଖ୍ୟ ଉଦ୍ୟୋକ୍ତା । ବିଧି ମୁତାବକ ଓଡ଼ିଆ ସାହିତ୍ୟ ସମାଜ ଗଠନ କରାଗଲା । ମୁଁ ବିବରଣୀ ଲେଖିଲି, ସେ ସଂଶୋଧନ କଲେ । ଉଦ୍‌ଘାଟନ ଉତ୍ସବ ଲାଗି ଦିନ ସ୍ଥିର ସେ କଲେ । ମୁଖ୍ୟ ଅତିଥି ରମାକାନ୍ତ ରଥ, ମୁଖ୍ୟବକ୍ତା ଚିତ୍ରଶିଳ୍ପୀ ଡକ୍ଟର ଦିନନାଥ ପାଠୀ ମହୋଦୟ । ଶୁଭେଚ୍ଛା ବାର୍ତ୍ତା ପାଇବାପାଇଁ ମୋତେ ସାଙ୍ଗରେ ଧରି ପହଞ୍ଚିଲେ ଓଡ଼ିଶାର ଆଦିଗୁରୁ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ଘରେ । ପ୍ରଫେସର ନାଥଙ୍କୁ ପ୍ରଣାମ ଜଣାଇ ବସିପଡ଼ିଲୁ । 'ସାହିତ୍ୟ ସମାଜ' ବିଷୟରେ, ଏକାମ୍ର କଲେଜ ବିଷୟରେ କହି ଚାଲିଥାନ୍ତି । ସବୁ ସିଏ ଶୁଣୁଥାନ୍ତି, ହେଲେ ମଝିରେ ମଝିରେ ମୋ ବହି, ବାପା ମୋ ବହି ବୋଲି କହି ଉଠୁଥାନ୍ତି । ଶୁଭେଚ୍ଛା ପତ୍ର ମୁଁ ଲେଖିଲି, ସାର୍ ସେଥିରେ ଦସ୍ତଖତ କଲେ । ଉଠିଲାବେଳକୁ ଝୁଲା ବ୍ୟାଗ୍ ଭିତରୁ ଭାଇ ବହି ଖଣ୍ଡିକ ବାହାର କରି ଆଜ୍ଞା ନିଅନ୍ତୁ, ଆଣିଥିଲି କହି ବଢ଼ାଇଦେଲେ । ସାର୍ ସେ ବହିଟିକୁ ମୁଣ୍ଡରେ ମାରି ଆମକୁ ଆଶୀର୍ବାଦ କରି ଘର ଭିତରକୁ ମୁହାଁଇଲେ । ଦୁହେଁ ବାହାରକୁ ଆସିଲୁ । ବାଟରେ କପଟ ବିରକ୍ତି ପ୍ରକାଶ କରି କହିଲି, ଆଜ୍ଞା ଭାଇ ବହିଟିକୁ ତ ପ୍ରଥମରୁ ଦେଇ ଦେଇଥିଲେ ଯାଇଥାନ୍ତା, ମୋତେ କହିଲେ, ଏହେ, ତୁମେ କହୁଛ ପ୍ରଥମରୁ ଦେଇଥାନ୍ତି, ତେବେ ପ୍ରବୁଦ୍ଧ ଜ୍ଞାନବୃଦ୍ଧଙ୍କର ଏବଂ ବହିଲାଗି ବ୍ୟାକୁଳତାକୁ ଆମେ ଦେଖିଥାନ୍ତେ କିପରି ?

ଅବସର ଗ୍ରହଣ ଅଳ୍ପ ପୂର୍ବରୁ ମୋତେ ବାରମ୍ବାର କହୁଥିଲେ, ଆମର ତ ସମୟ ସରିଲା, ତୁମେ ଲେଖାଲେଖି ଯୋରଦାର କର । ମୁଁ ତାଙ୍କୁ ଲଘୁପରିହାସ କରି କହିଥିଲି, ତୁମ ସମୟ ଭାଇ ଆସିଲା, ବହୁତ ବେଳ ପାଇବ, ବହୁତ ଲେଖିବ । ହେଲେ ମୋ କଥା କେବଳ କଥାରେ ରହିଗଲା ।

ଏକାମ୍ର ମହାବିଦ୍ୟାଳୟ,ଭୁବନେଶ୍ୱର

# ଫୁଲବାଣୀରୁ

ହେ, ପୂଣ୍ୟଆତ୍ମା କେଉଁଠିକି ଗଲ
ଚାହୁଁ ଚାହୁଁ ଏକ ବରଷ ପୁରିଲା
ନୟନରୁ ଆମର ଲୁହ ନ ଶୁଖିଲା
କିମ୍ପାଇଁ ଆମକୁ ପର କରିଦେଲ ?

ହଜିଗଲା ସିନା ତମ ଶରୀର
ହଜିଯାଇନାହିଁ ତୁମ ସ୍ମୃତି ରାଜି
ଗୋଟି ଗୋଟି କରି ମନେପଡ଼େ ଆଜି
ଭୁଲିକି ପାରିବୁ ସେ କୀର୍ତ୍ତି ଅପାର ।।

ସ୍ନେହ ମମତାର ଡୋର ଲଗାଇ
ଶୁଖିଲା ମୁହଁକୁ ସହିପାରନା
କେତେ କାନ୍ଦିଲେ ତ ଆଉ ଆସୁନା
ଶୟନେ ସପନେ ତୁମ ଛବି ନାଚଇ ।।

ଗଢ଼ି ଦେଇଗଲ କେତେ ମଣିଷ
ଛାତ୍ର ବତ୍ସଳ, ଜଗତ ବତ୍ସଳ
ଅଥଳରେ ତୁମେ ଦେଉଥିଲ କୂଳ
ଚାଲିଗଲ ଛାଡ଼ି ଶେଷ ନିଃଶ୍ୱାସ ।।

ଉତ୍କଳ ମାତାର ଯୋଗ୍ୟ ସନ୍ତାନ
ଭାଇଭଉଣୀଏ ଝୁରି ହେଉଛୁ
ମନେହୁଏ ଅବା ପାଖରେ ଅଛୁ
କେ ହୋଇପାରିବ ତୁମରି ସମ ?

**ବଡ଼ ଭଉଣୀ :**

ମା ପରି ସମ୍ମାନ ଦିଏ ଓ ଭକ୍ତି କରେ । ମୋର ସ୍ୱାମୀଙ୍କ ଦେହାନ୍ତପରେ ମୁଁ ଭାଇମାନଙ୍କ ପାଖରେ ରହେ । ବହୁ ଦିନର ବହୁତ ଘଟଣା । କିନ୍ତୁ ସେ ତା'ର ଦେହାନ୍ତ ପୂର୍ବଦିନ କାଞ୍ଜି କରିବା ପାଇଁ କହିଥିଲା । ସେ ସୁସ୍ଥ ମଧ୍ୟ ଥିଲା । ତା'ର ପରଦିନ ମିଟିଙ୍ଗ ଥିଲା । ସେ ପାରଳାଖେମୁଣ୍ଡି ଯାଇଥାନ୍ତା । ସେ କାଞ୍ଜି ଖାଇବ କ'ଣ ଇହଧାମରୁ ଚାଲିଗଲା । ଏଇ କଥା ମୋର ମରଣ ପର୍ଯ୍ୟନ୍ତ ସ୍ମରଣ ରହିବ । ତା'ର ଆପା ଡାକ ମୋ କାନରେ ପ୍ରତିଧ୍ୱନିତ ହେଉଛି ।

ମଝିଆ ଭଉଣୀ :

ମୁଁ ତାର ମଝିଆ ଭଉଣୀ, ତା'ର ଦ୍ୱିତୀୟ ଝିଅକୁ ମୋର ଦ୍ୱିତୀୟ ପୁଅ ସହିତ ବାହା ଦେଇଥିଲା । ମୁଁ ଗହଳି ପରିବାରରେ ଥାଏ । ମୋର ଛଅଟି ସନ୍ତାନ । ଆମର

କୁମାର ପୂର୍ଣ୍ଣମୀରେ ନୂଆ ପୋଷାକ, ମାମୁଁ ଘର ଦିଅନ୍ତି । ମୋର ସମ୍ମାନ ବଢ଼ାଇବା ପାଇଁ ସେ ପିଲାମାନଙ୍କ ପୋଷାକ ପାଇଁ ଥାନଟିଏ କପଡ଼ା ଦେଇଦିଏ । ସେମାନେ ପୋଷାକ ତିଆରି କରି ପିନ୍ଧି ଖୁସି ହୁଅନ୍ତି ।

**ସାନ ଭଉଣୀ :**

ଆମେ ଦୁଇ ଭଉଣୀ ସାନ ଥିଲୁ । ବାପା ଆମର ସଂସାରରୁ ଚାଲିଯାଇଥିଲେ । ଆମର ସବୁଭାର ବହନ କରି ଶାଶୁଘର ପଠେଇଲା । ସେ ପରେ ବାହାହେଲା । ସେ ନିଜେ ବହୁତ ସଂଘର୍ଷ କରି ପାଠ ପଢ଼ିଥିଲା ଓ ସମସ୍ତଙ୍କ ଦାୟିତ୍ୱ ମଧ୍ୟ ବୁଝୁଥିଲା ।

ଭାଣିଜୀ ରେଣୁର କେଇ ପଦକଥା :

ମୋର ବାହାଘର ସ୍ଥିର ହୋଇସାରିଥିଲା । ତେଣୁ ମୋର ଶାଶୁଘର ପାଠପଢ଼ା ବନ୍ଦ କରିଦେଇଥିଲେ । ଘରେ ରହିଲେ ମୋର ମନଖରାପ ହେବ, ତେଣୁ ମୋ ମାମୁଁ ମାଇଁ ମୋତେ ଡାକିନେଇଥିଲେ । ସେସବୁ ଜାଗା ଦେଖାଇବା ଓ ଦେଖିବା ପାଇଁ ଭଲ ପାଆନ୍ତି । ମାମୁଁ କହନ୍ତି ଆମେ ବହିପଢ଼ି ଜ୍ଞାନ ଅର୍ଜନ କରିବୁ ଓ ଅନ୍ୟମାନଙ୍କୁ ବହି ପଢ଼ିବାକୁ ଉପଦେଶ ଦିଅନ୍ତି । ତାଙ୍କର କଥାର ମହତ୍ତ୍ୱ ବୁଝି ଯିଏ କାମରେ ଲଗାଇବ ସେ ନିଶ୍ଚେ ବଡ଼ ହେବ । ସେ ଖାଲିରେ ବସି ସମୟ ବରବାଦ କରିବାକୁ ଭଲ ପାଆନ୍ତିନାହିଁ । ବଗିଚା କାମଠାରୁ ଆରମ୍ଭ କରି ଘରବାହାରର ପ୍ରତ୍ୟେକ କାମ ସେ କରିବାକୁ ଭଲପାଆନ୍ତି । ମାମୁଁ ଯେତେବେଳେ ଖାଆନ୍ତି ଆମେ ମିଶି ଖାଇବାକୁ ବସୁ । ସେ ବହୁତ ସଘଂର୍ଷ କରି ଉଠିଛନ୍ତି । ମୋର ବାହାଘର ପରେ ମୋର ପତିଦେବ, ମୁଁ ଓ ମୋର ଦୁଇଟି ପୁଅ ମିଶି ଗୁଣୁପୁର ବୁଲିଯାଇଥିଲୁ । ସେଠାରେ ଆମକୁ ଗୁଣୁପୁର ସାରା ବୁଲେଇଥିଲେ । ମୋର ବାହାଘରପରେ ଆମ ପରିବାର ଓ ମାମୁଁଙ୍କ ପରିବାର ଓଡ଼ିଶା ଭିତରେ ବହୁତ ଯାଗା ବୁଲିଛୁ । ମାମୁଁଙ୍କ ସାଙ୍ଗରେ ବୁଲିବାକୁ ଭଲଲାଗେ କାରଣ ବୁଝାଇ କହନ୍ତି । ମୋର ପୁଅମାନଙ୍କୁ ମାମୁଁ ଭଲପାଆନ୍ତି, ଆଗ୍ରହ ଓ ସ୍ନେହ ଦିଅନ୍ତି । ମୁଁ ଗହଳି ପରିବାରରେ ରହୁଥିଲି । ସେ ପରିବାର ମଧ୍ୟରୁ ମୋ ପିଲାମାନେ ପାଠପଢ଼ିବା ଦେଖି ମାମୁଁ ଖୁସୀ ଥିଲେ । ମୁଁ ଘରଟିଏ କରି ଶାନ୍ତିରେ ରହିବା ପାଇଁ ମାମୁଁ ବହୁତ ଥର କହିଥିଲେ । କିନ୍ତୁ ମୋର ପରିସ୍ଥିତି ଯୋଗୁଁ କରିପାରିନଥିଲି । ମୋର ଘରକାମ ଚାଲିଥିଲା । ମାମୁଁ ଆସି ଦେଖିଥିଲେ ମୁଁ ଭାବୁଥିଲି ମୋର ଘର ହେଲେ ମାମୁଁ ଆସିରହିବେ ଓ ଖାଇବେ । କିନ୍ତୁ ମୋ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା ।

## ଅଜା

ପୁନମ୍ ବର୍ମା

ଆଜି ଅଜା ଆମମାନଙ୍କ ମଝିରେ ନାହାନ୍ତି, କିନ୍ତୁ ତାଙ୍କର ସ୍ମୃତି ଓ ତାଙ୍କ ସହିତ ରହିକି ଆମେ ଯାହା ସବୁ ଶିଖିଛୁ ତାହା ଜୀବନ ସାରା ଆମ ସହିତ ରହିବ ।

୬ବର୍ଷ ତଳେ ଅଜା ବୋଲଗଡ଼ରୁ ଭୁବନେଶ୍ୱରକୁ ପ୍ରଥମ ଥର ଆସିଥିଲେ, ଆମ ଘର ସାମନା ଘରେ ରହିଥିଲେ । ମୁଁ ଜାଣିଲି ଯେ ସିଏ ଯୋଉ ଘରେ ରହୁଛନ୍ତି ସେଇଟା ତାଙ୍କର ନିଜ ଘର । ମୋର ଭାରି ମନ ଦୁଃଖ ହେଲା । କାରଣ ତାଙ୍କ ଆସିବା

ପୂର୍ବରୁ ସେଇ ଘରେ ସାଙ୍ଗ ରହୁଥିଲା । ତାଙ୍କ ବାରିରେ ଗୋଟିଏ କୋଳି ଗଛ, ଗୋଟିଏ ଲଂକା ଆମ୍ବଗଛ ଓ ବହୁତଗୁଡ଼ିଏ ପିଜୁଳି ଗଛ ଥିଲା । ଆମେ ବିନା କାହାରି ଡରରେ ଏଇସବୁ ଜିନିଷ ଖାଉଥିଲୁ । ଅଜାଙ୍କ ଆସିବା ପରେ ମୋତେ ଲାଗିଲା ଯେ ଆଉ କିଛି ଖାଇବାକୁ ମିଳିବନି । ଅଜା ପାଟି କରିବେ । କିନ୍ତୁ ହେଲା ଏକଦମ ବିପରୀତ । ଦିନେ ଅଜା ବାରିରେ କୋଳି ପାଚିଥିଲା । ମୋତେ ଭାରି ଜୋରରେ ଖାଇବା ପାଇଁ ଇଚ୍ଛା ହେଲା । କିନ୍ତୁ କଣ କରିବି । ନିଜେ ମାଲିକ ରହୁଛନ୍ତି ସେଇଠି । ମୁଁ ଅଜା ବାରିକୁ ମୋର ବଲ ଫୋପାଡ଼ିଲି । ସେଇ ବାହାନାରେ ମୁଁ ଅଜା ବାରିରେ ପଶିଲି । ଠିକ୍ କୋଳି ଗୋଟେଇକି ବାହାରିବା ବେଳକୁ ପଛପଟୁ ଅଜା ଡାକି ପକେଇଲେ । ମୁଁ ଭାବିଲି ଆଜି ମଲି । ଏଇଠିଭି ଗାଳି ଖାଇବି ଆଉ ଘରେଭି ପାଟି କରିବେ । ଡର ସହିତ ମୁଁ ଅଜା ପାଖକୁ ଗଲି ଆଉ କହିଲି ଯେ ମୋର ବ୍ଲ ନେବାକୁ ଆସିଥିଲି । ଅଜା ମୋ ହାତରେ କୋଳି ଦେଖି କରି ହସିଲେ କାରଣ ଅଜା ସବୁ କଥା ବୁଝିଯାଇଥିଲେ । ଅଜା ଗାଳି ନ କରି ମୋତେ କହିଲେ ଯେ ଝିଅ ମୋ ପାଇଁକି ଗୋଟିଏ ଲୁଣ ପେକେଟ ଆଣିଦେ ମୁଁ ତୋ ପାଇଁ କୋଳି ଗୋଟେଇ କି ରଖିବି । ମୁଁ ଭାରି ଖୁସି ହେଲି ଆଉ ଭାବିଲି ଯେ ଇଏ ଗୋଟିଏ ଭଲ ଲୋକ ମୋତେ ଗାଳି ବଦଳରେ ଆହୁରି କୋଳି ଦେଉଛନ୍ତି ।

ସେଇ ଦିନ ମୁଁ ସବୁକଥା ଆମ ଘରେ କହିଲି । ସେଇ ଦିନୁ ଆମ ଘର ସହିତ ଅଜାର ସଂପର୍କ ହେଲା । ତାପରେ ମୁଁ ବିନା ଭୟରେ ଅଜା ସହିତ ମିଶିଲି । ଅଜାର ଗୋଟିଏ ଜିନିଷ ମୋତେ ଭାରି ଭଲ ଲାଗେ ସେଇଟା ହେଲା ଯେ ଅଜା ବଡ଼ ଲୋକଙ୍କ ସହିତ ବଡ଼ ପରି ଓ ଛୋଟ ପିଲା ସହିତ ଛୋଟ ପରି ମିଶନ୍ତି । ଅଜା ପୂରା ସାଙ୍ଗ ପରିକା କଥା ହୁଅନ୍ତି । ଆଜିକାଲି ବଡ଼ ଲୋକ ଛୋଟ ପିଲାଙ୍କ କଥାକୁ ଏତେ ମହତ୍ୱ ଦିଅନ୍ତି ନାହିଁ । କିନ୍ତୁ ଆମ ଅଜା ସଦାବେଳେ ବଡ଼ ଲୋକଙ୍କ ସହିତ ଛୋଟ ପିଲାଙ୍କ ଭି ମତ ପଚାରନ୍ତି ଆଉ ତାଙ୍କ ମତକୁ ଗୁରୁତ୍ୱ ଦିଅନ୍ତି । ତାପରେ କେତେ ଦିନ ପରେ ଅଜାଙ୍କର ଘର ତିଆରି ହେଲା ଆଉ ଆମେ ଆସିକି ଅଜାଙ୍କ ଘରେ ରହିଲୁ । ଅଜା ଯୁଆଡ଼େ ଯାଆନ୍ତି ମୋ ପାଇଁ ନିଶ୍ଚୟ କିଛି ଖାଇବା ପାଇଁ ଆଣିଥାନ୍ତି । ସେ ଗେଟ୍ ଖୋଲୁ ଖୋଲୁ ଡାକ ପକାନ୍ତି ପୁନମ ନେଲୁ ତୋ ପାଇଁ ଆଣିଚି । ଅଜା ସଦାବେଳେ ମୋ ସହିତ ଲାଗନ୍ତି କହନ୍ତି ଯେ ଚାଲେ ଧଉଳି ଯିବା ମୁଁ ତତେ ସାଇକେଲରେ ଆଗରେ ବସେଇକି ନେବି, ଆମେ ଗୀତ ଗାଇବା ଆଉ ନାଚିବା । ମୁଁ ବହୁତ ଚିଢ଼େ ଆଉ କହେ ମୁଁ ଯିବିନି । ଅଜା କହନ୍ତି କାଇଁ ଚିଡ଼ିଚୁ ମୋଠାରୁ ଭଲ ଟୋକା ତତେ କୋଉଠି ମିଳିବ । ଆଜି ଲାଗୁଚି ଯେ ଅଜା ସତ କହୁଥିଲେ ତାଙ୍କଠାରୁ ଭଲ ଟୋକା ସତରେ ମିଳିବେନି । ସିଏ ଗୋଟିଏ ବହୁତ ଭଲ ମଣିଷ ଥିଲେ ତାଙ୍କ ପରିକା ଲୋକ ଖୁବ କମ୍ ଅଛନ୍ତି ଏଇ ଦୁନିଆରେ । ଅଜା ଗଛ ପତ୍ର ବହୁତ ଲଗାଉଥିଲେ ସେଇଥି ପାଇଁ ସମସ୍ତେ ଭାବନ୍ତି ଯେ ସେ ସବୁଠାରୁ ଅଧିକ ଗଛ ପତ୍ରକୁ ଭଲ ପାଆନ୍ତି । କିନ୍ତୁ ସେ ସବୁଠାର ଅଧିକ ଆଇଂକୁ ଭଲ ପାଆନ୍ତି ।

ଯେତେବେଳେ ମୋର ଦଶମର ରେଜଲ୍ଟ ବାହାରି ଥିଲା ମୋର କମ ମାର୍କ ଯୋଗୁ ଭାରି ମନ ଦୁଃଖ ଥିଲା । ଅଜା ଘରକୁ ଫେରିକି ଆସୁ ଆସୁ ମୋତେ ବୁଝେଇଲେ ଯେ କେବେ ହେଲେ ନିଜକୁ କାହାଠାରୁ କମ ଭାବିବା କଥା ନୁହଁ କାରଣ ସବୁଲୋକ

ସମାନ ନଥାନ୍ତି କାହାର ପାଠ ଅଧିକ ଥାଏ । ମୁଁ କହୁଚି ସେ ତୋର ବହୁତ ବୁଦ୍ଧି ଅଛି । ଅଜାର ସେଇ କଥାଟା ମୋତେ ଭାରି ଭଲ ଲାଗିଲା । ଆଉ ମୁଁ ଜମା ମନଦୁଃଖ କଲିନାହିଁ । ସବୁଠାରୁ ମଜା ଆସେ ଯେତେବେଳେ ଆମେ ସମସ୍ତେ ବସି କି ଫିଲ୍ମ ଦେଖୁ ଆଉ ସେଇଥିରେ ହିରୋ ହିରୋଇନ ନାଚନ୍ତି ଆଉ ଗୀତ ବୋଲନ୍ତି ଅଜା କହନ୍ତି ଯେ ପୁନମ ତୋ କଲେଜରେ ଏମିତି କରନ୍ତି କିଇ, ଆମେ ଅଜା କଥାରେ ଖୁବ୍ ହସୁ । ଆମ ଅଜା ଭାରି ମଜା କରନ୍ତି । ବେଳେବେଳେ ଅଜା ରାଗି ଯାଆନ୍ତି କିନ୍ତୁ ସାଙ୍ଗେ ସାଙ୍ଗେ ଆସି ଗେଲାନ୍ତି । ସେ ସିନା ମୁହଁରେ କହି ଦିଅନ୍ତି ହେଲେ ତାଙ୍କ ମନରେ କିଛି ନଥାଏ । ତାଙ୍କ ସହିତ ମିଶିବା ପରେ ଜାଣି ହୁଏ ଯେ ସେ ଭାରି ଭଲଲୋକ । ସବୁଠାରୁ ବଡ଼ କଥା ଏଇଟା ଯେ ତାଙ୍କ ଘରେ ୬ବର୍ଷ ହେଲା ଆମେ ଭଡ଼ା ରହୁଚୁ କିନ୍ତୁ ଦିନକ ପାଇଁ କେବେ ଲାଗେନା ଯେ ଆମେ ତାଙ୍କ ଘରେ ଭଡ଼ା ରହିଚୁ । କେହି ଜାଣି ପାରନ୍ତି ନି ଯେ ଆମେ ତାଙ୍କ ଘରେ ଭଡ଼ା ରହୁଚୁ । ବହୁତ ଲୋକ ପଚାରନ୍ତି ଯେ ଏଇଠି ଗୋଟିଏ ପରିବାର ରହନ୍ତି ନା ଦୁଇଟା ସତରେ ଅଜା ଘରର ମୁରବି ପରିକା ଥିଲେ । ଅଜା ସଦାବେଳେ କୁହନ୍ତି ଯେ ଖାଇବା ଜିନିଷ କେବେ ହେଲେ ନଷ୍ଟ କରିବା କଥା ନୁହଁ । ଆମେ ସଦାବେଳେ କହୁ ଏଇ ପରିବା ଖାଇବୁନୁ ସେଇ ପରିବା ଖାଇବୁନୁ, ଅଜା ସଦାବେଳେ କହନ୍ତି ସବୁ କିଛି ଖାଇବା କଥା ସବୁ ଦିହ ପାଇଁ ଭାରି ଭଲ । ସତରେ ଅଜା ପାଖରେ ରହିବା ପରେ ଆମେ ବହୁତ ନୂଆ ନୂଆ ଖାଦ୍ୟ ଖାଇବା ଶିଖିଲୁ । ହାଟ ଦିନ ସେ ସକାଳୁ ମୋ ବାପାକୁ କହନ୍ତି ଯେ ବର୍ମାବାବୁ ଆଜି ମିଶିକି ହାଟକୁ ଯିବା । ଆଉ ଅଜା ଦୁଇଟା ବଡ଼ ବଡ଼ ବ୍ୟାଗ ଭର୍ତ୍ତି କରି ପରିବା ଆଣନ୍ତି । ଆଇ ଯେବେଭି କାଞ୍ଜି କରନ୍ତି ଅଜା ମୋତେ ଡାକି କାଞ୍ଜି ଦିଅନ୍ତି ମୋତେ କାଞ୍ଜି ଖୁବ ଭଲ ଲାଗେ । କାଞ୍ଜି ଖାଇବା ମୁଁ ଅଜାଠାରୁ ଶିଖିଥିଲି । ଯୋଉଟା ସବୁଠାରୁ ଭଲ କଥା ଆମେ ଅଜାଠାରୁ ଶିଖିଥିଲୁ ସେଇଟା ହେଲା ଗଛ ଲଗାଇବା । ସତରେ ଅଜା ପାଖରେ ଯିଏ ରହୁଥିଲା, ସେ ଗଛ ଲଗାଇବା ନିଶ୍ଚୟ ଶିଖିଯାଉଥିଲା । ଆଜି ଅଜା ତ ନାହାନ୍ତି କିନ୍ତୁ ତାଙ୍କ ଦ୍ୱାରା ପାଇଥିବା ଏଇ ଶିକ୍ଷାଟା ଜୀବନ ସାରା ଆମ ପାଖରେ ରହିବ ।

ଶେଷରେ ଏତିକି କହିବି ଯେ ମୋ ଅଜା ପରିକା କାହାରି ଅଜା ହେବେ ନାହିଁ ।

ଗୌରୀନଗର, ଭୁବନେଶ୍ୱର

## ମୋ ସ୍ମୃତିରେ ମାମୁଁଙ୍କ କେତୋଟି କଥା

ସବିତା

ପିଲାଦିନେ ଆମେ ଖରାଛୁଟିରେ ମାମୁଁ ଘରକୁ ଯାଇଥିଲୁ ଭାରି ମଜା କରୁଥିଲୁ । ମାମୁଁ ଗୁଣୁପୁରରୁ ଆସିବେ କାନ୍ଧରେ ଖଦଡ଼ ଝୁଲାମୁଣି, ଖରାପାଇଁ ଚଷମା, ମାମୁଁଙ୍କର ଏହି ଦୁଇଟି ପ୍ରଧାନ । ମାମୁଁଙ୍କୁ ଦେଖୁ ଦେଖୁ ପ୍ରଣାମ କଲି ସିଧା ବାରି ଘରକୁ ପଳେଇବୁ କାରଣ ମାମୁଁ କହିବେ ସମୟ ନଷ୍ଟ ନକରି ବହିପଢ଼, ହସ୍ତାକ୍ଷର ଲେଖ ଫୁଲଗଛରେ ପାଣିଦିଅ ।

ଶାଢ଼ୀ ପିନ୍ଧିବାକୁ ଭାରି ଭଲ ପାଉଥିଲି ଯେତେବେଳେ ହେଲେ ମା'ର ବଡ଼ ଶାଢ଼ୀଟେ ପିନ୍ଧୁଥିଲି । ମାମୁଁ ଏମିତି ମୋର ବେଶ ଦେଖିଲାପରେ ବ୍ରହ୍ମପୁରରୁ ଛୋଟ ଲାଲ ଶାଢ଼ୀଟେ ଆଣିଦେଲେ । ମୁଁ ପଢୁଥାଏ ଚତୁର୍ଥରେ ଦେଖି ବହୁତ ଖୁସି ହେଲି । ସେହି

ଶାଢ଼ୀକୁ ସବୁଦିନେ ପିନ୍ଧେ । ଆଉ ଗୋଟେ ମଜାକଥା ଖରାଛୁଟିରେ ମାମୁଁ ଆସିଥାନ୍ତି ମୋ ଝୁଅା, ଭାଇଙ୍କ ଝୁଅା ସବୁ ପଞ୍ଚମ, ସପ୍ତମରେ ପଢୁଥାନ୍ତି ସମସ୍ତଙ୍କୁ କୋଟୋଟି ବାକ୍ୟଗଠନ ଦେଲେ ସେଥିରେ ମୋତେ ବି ସପ୍ତମ ଝୁଅା ଭାବି ବାକ୍ୟଗଠନ ଦେଲେ ମୁଁ ମାଈଁକୁ ଡାକିଲି ମାମୁଁ ମୋତେ ଏବେବି ସପ୍ତମ ଶ୍ରେଣୀ ପିଲା ଭାବୁଛନ୍ତି । । ମାମୁଁ ସବୁବେଳେ କହିବେ କାମ କର ସବୁବେଳେ ପଢ଼ାପଢ଼ି କରୁଥାଅ । କାରଣ ସେ ସାରା ଜୀବନ କାମ ଆଉ ପଢ଼ାପଢ଼ି ଭିତରେ ହିଁ କାଟିଦେଇଥିଲେ । ମାମୁଁଙ୍କର ଆତ୍ମା ଶାନ୍ତି ରହୁ ।

(ଗୋବରା)ଗଞ୍ଜାମ

## ଜଣେ ନିଆରା ମଣିଷର ସ୍ମୃତିରେ

ପ୍ରଭାତୀ ବିଷୟୀ

ଅବଶ୍ୟ ପରିଚୟ ଥିଲା ପୁରୁଣା, କିନ୍ତୁ ଯେତେଥର ବି ଭେଟିଲେ ମନେହୁଏ ହୁଏତ ଚିହ୍ନିବାରେ ଆହୁରି ଅନେକ ବାକି ।

ଆମ କଲେଜ ପିଲାଙ୍କ ପ୍ରଦତ୍ତ ନାମ ଗୋପବନ୍ଧୁ ସାର୍ । ଅନୁଶାସନପ୍ରିୟ ସେଇ ଓଡ଼ିଆ ଅଧ୍ୟାପକଙ୍କର କଥାରେ ଆମେ ଛାତ୍ରଛାତ୍ରୀ ଥିଲୁ ନିହାତି ଅବାଧ୍ୟ । ସେଇଥିପାଇଁ ଅନେକଙ୍କର କଟୁଭାଷା ଶୁଣିବାକୁ ମିଳେ । ଆମେ ଥିଲୁ ତାଙ୍କୁ ଆପଣେଇବାରେ କୁନ୍ଠ କୁନ୍ଠ । କିନ୍ତୁ ତାଙ୍କ ଜୀବନର ଅନୁଭବ ଓ ଅନୁଭୂତିର ପରିପ୍ରକାଶରେ ହିଁ ତାଙ୍କ ସାହିତ୍ୟ ସାଧନା ବାରି ହୋଇଯାଏ । ପୁସ୍ତକ ହିଁ ଥିଲା ତାଙ୍କର ନିଶା । ସେ ପଢୁଥିଲେ ପ୍ରଚୁର ଓ ପଢ଼ାଉଥିଲେ ଅନେକଙ୍କୁ । ବିଭିନ୍ନ ସ୍ଥାନ ଭ୍ରମଣ କରି ସେ ସ୍ଥାନର ଅନନ୍ୟ ବସ୍ତୁ ସଂଗ୍ରହ ଥିଲା ତାଙ୍କର ଆକର୍ଷଣ । ନବରଂଗପୁର ଜିଲ୍ଲା ନିମନ୍ତେ ଅନେକ କ୍ଷୋଭ ବି ତାଙ୍କର ଥିଲା । ଅନେକ ସମ୍ଭାବନାରେ ଏ ମାଟି ଭରପୂର, ଅଥଚ କର୍ମମୟ ଜୀବନର ପ୍ରେରଣା ନାହିଁ । ଛାତ୍ରଛାତ୍ରୀଙ୍କ ମନରେ ତତ୍ପରତା ନାହିଁ କି 'ସ୍ଫୁଲିଙ୍ଗ' ନାହିଁ । ଏକଥା ଅନେକ ଥର ସେ କ୍ଲାସ୍ ରୁମ୍‌ରେ କହନ୍ତି/ ଲୁକ୍କାୟିତ ପ୍ରତିଭା ଚିହ୍ନିବାରେ ସେ ଧୁରନ୍ଧର ଥିଲେ, କିନ୍ତୁ ତାଙ୍କ ପ୍ରତିଭାକୁ ଚିହ୍ନିବାକୁ ଆମକୁ ସମୟ ଲାଗିଗଲା । ନବରଂଗପୁର କଲେଜ ଛାଡ଼ି ଅନ୍ୟ କଲେଜକୁ ଗଲେ ପ୍ରଶ୍ନ ଆସେ-ଶିବରାମ ପାତ୍ରଙ୍କୁ ଜାଣ ? ସେତେବେଳକୁ ଆଖି ତରାଟି ଚାହିଁ ମୁଣ୍ଡ ଟୁଙ୍ଗାରିବା ବ୍ୟତୀତ ଅନ୍ୟ ଉପାୟ ନଥାଏ । ମାନସିକ ଅସନ୍ତୁଳନ ଦେଖାଦିଏ, କିଛି ସମୟ ପାଇଁ । କ'ଣ ନବରଂଗପୁର କଲେଜର ପରିଚୟ ଶିବରାମ ପାତ୍ରଙ୍କୁ ନେଇ ? ଏଇ ପ୍ରଶ୍ନ ବାଣରେ ଜର୍ଜରିତ ହୁଏ ମନ । କିନ୍ତୁ ସତ ସବୁବେଳେ ସତ । ବୋଧହୁଏ ଗୁଣ ଚିହ୍ନେ ଗୁଣିଆ । ଆମର ନିକଟରେ ସେ ଥିଲେ ମଧ୍ୟ, ଆମେ ଥିଲୁ ତାଙ୍କ ସଂପର୍କରେ ଅଜ୍ଞ । ଅନେକ ସମୟରେ ଦେଖିଦେଲେ ଖାମଖିଆଲିରେ ଫିଙ୍ଗା ନମସ୍କାର ଛଡ଼ା ଆମେ ଆଉ କିଛି ଅଧିକ ଦେଇଥିବାର ମନେ ହେଉନାହିଁ । ଏ ଅକୁହା ବେଦନା, ଏ ଅକ୍ଷମଣୀୟ ଅପରାଧ ନିମନ୍ତେ ସେ ଅମର ଆତ୍ମା ନିକଟରେ କ୍ଷମା ପ୍ରାର୍ଥନା କରୁଛୁ । ସେ ଥିଲେ ନିରହଂକାର ମୁନିଜନ ସୁଲଭ ବିନମ୍ର ତଥା ଅଟଳ ଭଗବଦ୍ ବିଶ୍ୱାସୀ । ଯେଉଁ ସ୍ଥାନକୁ ଗଲେ ସେଠାରେ ଛୋଟବଡ଼ ଅନୁଷ୍ଠାନ ଗଢ଼ି ଛାପ ଛାଡ଼ିଯିବାର ଯିବାରେ ତାଙ୍କ ସାହିତ୍ୟ

ସାଧନାକୁ ହୃଦୟଙ୍ଗମ କରିହୁଏ । ଜଣେ ଉତ୍ତମ ପିତା, ସାହିତ୍ୟିକ, ଗବେଷକ, ପ୍ରକୃତିମିତ୍ର ବ୍ୟତୀତ ଆହୁରି ଅନେକ ପରିଚୟ ତାଙ୍କର ନିଶ୍ଚିତ ରୂପେ ରହିଥିଲା । କିନ୍ତୁ ଚିହ୍ନା ତ ଅନେକ ଥା'ନ୍ତି, ପରିଚିତଙ୍କ ସଂଖ୍ୟା ବି କମ୍ ନୁହଁ । କିନ୍ତୁ ଆପଣାର ଲାଗନ୍ତି କିଛିତ୍ । ସେଇ ଆପଣାର ମଣିଷକୁ ଦେଖିଲେ ମନେହେଉଥିଲା ସେ ଜଣେ ଓସ୍ତାଦ୍, ସବ୍‌ଜାନ୍ତା । ଲୋକଗହଳିରେ ବି ବାରି ହୋଇ ପଡୁଥିବା ଜଣେ କର୍ମଯୋଗୀ । ନିଜ ପ୍ରିୟ ମଣିଷକୁ ଦେଖିଲେ ଭାବବିହ୍ୱଳ ହୋଇ ପଡୁଥିବା ଅଦ୍ଭୁତ ଖିଆଲି ମଣିଷ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଜଣେ ସଜାଗ ପ୍ରହରୀ ।  ତାଙ୍କର ଅନ୍ତଦୃଷ୍ଟି ଓ ମୌଳିକ ଚିନ୍ତାଗୁଡ଼ିକ ତାଙ୍କ ଅଧ୍ୟାପନାରେ ସ୍ପଷ୍ଟ ପ୍ରତୀୟମାନ ହୁଏ । ତାଙ୍କ ଅଧ୍ୟାପନାର ଆକର୍ଷଣୀୟ ଭଙ୍ଗୀ ଓ ବ୍ୟକ୍ତବ୍ୟର ଉପସ୍ଥାପନାରୁ ଅନୁମେୟ ହୁଏ ସେ ଜଣେ ସୃଷ୍ଟି ସଚେତନ ସ୍ରଷ୍ଟା/ ସେଥି ନିମନ୍ତେ ତାଙ୍କର ଅଧ୍ୟାପନା ସୁଖଶ୍ରାବ୍ୟ । ଓଡ଼ିଆ ଅଧ୍ୟାପକ ଭାବରେ ସେ ଉଦାସୀନ ନ ଥିଲେ ବରଂ ଚଳଚଞ୍ଚଳ ସଦା ସର୍ବଦା । ମାଟି, ପଥର, ଗୋଡ଼ି, ମୂର୍ତ୍ତି, ମନ୍ଦିର, ଗଛପତ୍ର, ବହି, କାଗଜରେ ନିଜକୁ ହଜାଇ ଦେଉଥିବା ଲୋକକୁ କ'ଣ କୁହାଯାଏ, କହିଲେ ଦେଖି । ଆମେ ଜାଣିଥିଲୁ ପ୍ରଗଳ୍ଭ ଭାବେ କିନ୍ତୁ ଦୁନିଆ ଜାଣିଥିଲା ପ୍ରତିଭାଧର ଭାବେ ।

ବଣରେ ଅକାଳରେ ଝଡ଼ିପଡୁଥିବା ମାଳତୀକୁ ଗୋଟାଇ ତାର ସୁଗନ୍ଧ ବିତରଣ କରିବାରେ ଚେଷ୍ଟିତ ସେଇ ଅଧ୍ୟାପକଙ୍କ ନିମନ୍ତେ ଅଧ୍ୟାପନା ବ୍ୟତୀତ ସମାଜ ଓ ସାହିତ୍ୟ ସେବା ହିଁ ଥିଲା ଯେପରି ଏକମାତ୍ର ରୁଚି । ନବରଙ୍ଗପୁର ଛାଡ଼ିବାର ୪ ବା ୫ବର୍ଷ ପରେ ଘରେ ତାଙ୍କ ସହ ଦେଖାହେଲାବେଳେ ମନେହେଲା ସତେ ଯେପରି ସେ ନବରଂଗପୁରରେ ଏବେବି କର୍ମରତ । ଛୋଟିଆ ଟିକିଲିଟିଏ ଲଗାଇଲେ କପାଳରେ କିଛି ଦିନ ପାଇଁ ଦାଗ ରହିଯାଏ, ଆଉ ସେ ତ ଆପଣାର ମନେ ହୋଉଥିବା ପ୍ରିୟଜନ, ଭୁଲି ବା ହେବ କିପରି ?

ନବରଙ୍ଗପୁର

## ଝୁଲାମୁଣିରେ ସ୍ୱପ୍ନ

ଦେବପ୍ରସାଦ ଦାଶ

ସଡ଼କ ଉପରେ ସେ । କାନ୍ଧରେ ଝୁଲାମୁଣି । ଚାଲିଥିବେ ଏକ ଲୟରେ । ଗନ୍ତବ୍ୟ ଅନିର୍ଦ୍ଦିଷ୍ଟ ? ନା, ସେ ଜାଣିଥାଆନ୍ତି କୁଆଡ଼େ ଯିବେ ।

ଝୁଲାମୁଣିରୁ ବାହାରେ ଭଲ ପାଇବାର ଉଚ୍ଛ୍ୱାସ । ବହି କେତୋଟି । ବେଳେବେଳେ ଗଛଟିଏ । ସ୍ୱପ୍ନର ଫେରିବାଲା । ଆତ୍ମୀୟତାର ସୁପୁରୁଷ ।

''ଏବେ କି ପାଇଟି କରୁଛ ହେ ?'' ହସ ହସ ମୁହଁରେ ପ୍ରଶ୍ନଟିଏ । ''ଆମେ ଦକ୍ଷିଣିଆ ଲୋକ ହେ.. ଆମ ଭାଷା ଟିକେ ଅଲଗା ।'' ସେ ଭାଷା ନିଜ ସଂସ୍କୃତି, ଐତିହ୍ୟ, ଅଞ୍ଚଳ ଓ ଲୋକଙ୍କୁ ଭଲ ପାଉଥିବା ମଣିଷଟିର ଭାଷା ।

ସମସ୍ତେ ନିଜକୁ ସନ୍ତୁଷ୍ଟ କରିବା ପାଇଁ ଲେଖନ୍ତି । ସେ କିନ୍ତୁ ଅହରହ ଭାବପ୍ରବଣ । ଓଡ଼ିଆ ସାହିତ୍ୟକୁ ଚିହ୍ନା ଯାଇନି ଏପର୍ଯ୍ୟନ୍ତ । ଫକୀରମୋହନ, ସୁରେନ୍ଦ୍ର, ରମାକାନ୍ତଙ୍କ ଭାଷା, ସେମାନଙ୍କ ପ୍ରଜ୍ଞା, ସେମାନଙ୍କ ବିଚାର ଆଦର୍ଶ, ସେମାନଙ୍କ ଚିନ୍ତା ଓ ଚେତନାକୁ

କ'ଣ ନିର୍ଦ୍ଦିଷ୍ଟ ସ୍ୱରୂପ ମିଳିଛି ? କେତେ ପରିଚିତ ଆମେ ଏସବୁ ସାଙ୍ଗରେ ? 'ସୁରେନ୍ଦ୍ର ବିଚାର ମଂଜୁଷା' ଓ 'ଫକୀରମୋହନ ବିଚାର ମଂଜୁଷା' ସମ୍ପୂର୍ଣ୍ଣ । ଅପେକ୍ଷାରେ ସାରଳାଦାସ, ରମାକାନ୍ତ ରଥ ଓ ଆହୁରି ଅନେକ ।

ଜୀବନ ତମାମ୍ ପ୍ରୟାସ ସାହିତ୍ୟ ସ୍ରଷ୍ଟାମାନଙ୍କୁ ନିବିଡ଼ ଭାବରେ ଭଲପାଇବାର । ଅକ୍ଷୟ ମହାନ୍ତିଙ୍କ ଗପ ଓ ସେଥିରେ ବ୍ୟବହୃତ ବିଚିତ୍ର ରୂପ କଳ୍ପ । କେବଳ ସେ ହିଁ ଖୋଜି ପାଆନ୍ତି ।

ଗୁଣପୁରର ଭୂତକେଳି ନାଟ ସମ୍ପର୍କରେ ଗବେଷଣା ପାଇଁ ସେ ହିଁ ଆଗେଇ ପାରନ୍ତି । ପଦ୍ମନାଭ ରଙ୍ଗାଜାୟଙ୍କୁ ଇତିହାସ ପୃଷ୍ଠାରୁ ସେ ହିଁ ଖୋଜି ପାରନ୍ତି । ମନୋଜ ଦାସ, ବସନ୍ତ କୁମାରୀ ଦେବୀ, ଶିଳ୍ପୀ ଚନ୍ଦ୍ରଶେଖର, କଥାକାର କିଶୋରୀ ଚରଣଙ୍କୁ ଭିନ୍ନ ଦୃଷ୍ଟିରେ ବଖାଣନ୍ତି ।

ଊନବିଂଶ ଶତାବ୍ଦୀର ପୁସ୍ତକ ଖଲ୍ଲନାଟକ, ରାମାୟଣ, ଅଳଙ୍କାର ଚନ୍ଦ୍ରିକା, ଗୋପାଳ ସହସ୍ର ନାମ, ଶ୍ରୀ କିଶୋରୀ ଚମ୍ପୂକାବ୍ୟ ଓ ସକଳ ଅନିତ୍ୟକୁ ଖୋଜି ଲୋକ ସମ୍ମୁଖକୁ ଆଣନ୍ତି । ଅଧ୍ୟାପନା ତାଙ୍କର ବୃତ୍ତି, କିନ୍ତୁ ପ୍ରବୃତ୍ତି ମଣିଷକୁ ଭଲପାଇବା ।

ସରସ୍ୱତୀ ଗଢ଼ା ହୋଇଥିଲା ଆନ୍ତରିକତାର ସହିତ (ସରସ୍ୱତୀ ତାଙ୍କ ପ୍ରକାଶନ ସଂସ୍ଥାର ନାମ) । ଉଦ୍ଦେଶ୍ୟ ଭଲ ବହି ଛାପିବା- କେବଳ ତାଙ୍କର ନୁହେଁ, ଅନ୍ୟମାନଙ୍କର ମଧ୍ୟ । ଅନେକ ପୁସ୍ତକ ସମ୍ପୂର୍ଣ୍ଣ ହେବା ଅବସ୍ଥାରେ ବା ମୁଦ୍ରଣାଳୟରେ ।

ଏ ସମୟ ତ ଚାଲିଯିବାର ସମୟ ନୁହେଁ ଅଥଚ ବି. ଶିବରାମ ପାତ୍ର ହଠାତ୍ ବାହୁଡ଼ିଗଲେ ଏକ ବିଜୟ ଯାତ୍ରାରେ । ଦିନ ତମାମ୍ ମନସ୍ତତ୍ତ୍ୱ ଆଲୋଚନା ଚକ୍ରରେ ଅତିକ୍ରାନ୍ତ କଳାପରେ ଛାତିରେ ସାମାନ୍ୟ କଷ୍ଟ ଧରି ଫେରି ଶୋଇଥିଲେ କଷ୍ଟ ଲାଘବ ପାଇଁ । ସେହି ଅବସ୍ଥାରେ ସେ ସମାଧିସ୍ଥ ହୋଇଗଲେ । ଯେଉଁ ଗତି ଓଡ଼ିଶାର ସମସ୍ତ ଅଞ୍ଚଳକୁ ସ୍ପର୍ଶ କରି ଅହରହ ଭାଷା ସାହିତ୍ୟର ବିକାଶ ପାଇଁ କାର୍ଯ୍ୟ କରୁଥିଲା । ହଠାତ୍ ସେ ଗତି ବ୍ୟାହତ ହୋଇଗଲା ୨୦୦୫ ଫେବୃୟାରୀ ୨୬ ତାରିଖରେ ।

ଯେଉଁଠିକୁ ଯାଉଥିଲେ, ଗଛଟିଏ ଦେଖିଲେ ନେଇ ଆସୁଥିଲେ ଡାଳ ଖଣ୍ଡେ । ନିଜ ବଗିଚାରେ ସେ ଗଛ ବଢ଼ିବ ଓ ଛାଇ ବାଣ୍ଟିବ । ବାଟରେ ହାବୁଡ଼ିଗଲେ ଆପଣ । ସମ୍ଭବତଃ ସେ ଡାଳଖଣ୍ଡିକ ଆପଣଙ୍କୁ ମିଳିଯିବ । ନାଇଁ ଯଦି ସେ ଆପଣଙ୍କ ସାଙ୍ଗରେ ଗଲେ, ଆପଣଙ୍କ ଘରବାଡ଼ିରେ ପୋତି ଦେଇଆସିବେ ତାକୁ । ଶିବରାମ ପାତ୍ରଙ୍କ ଜୀବନର ଆଦର୍ଶ ହିଁ ଥିଲା ଏୟା । ଭଲପାଇବାର ସ୍ନେହ, ଶ୍ରଦ୍ଧା, ଆନ୍ତରିକତାକୁ ସାଦରେ ପାଛୋଟି ଆଣ । ଯଦି ପାର, କିଛି କିଛି ଅନ୍ୟକୁ ଦେଇ ଦେଇ ପାର । ସଂସାର ଆଉ କ'ଣ - ଆତ୍ମୀୟତା ଓ ଭଲପାଇବାର ଅଭୟାରଣ୍ୟଟିଏ ତ ! ତେବେ ସେଥିରେ ଆଉ ସ୍ୱପ୍ନ ଓ ପ୍ରେମର ଫେରିବାଲା ଶିବରାମ ପାତ୍ରଙ୍କୁ ଦେଖିବାକୁ ମିଳିବ ନାହିଁ । ଏହା ହିଁ ଅବଶୋଷ, ଏହା ହିଁ ଯାତନା ।

ଟଙ୍କପାଣି ରୋଡ୍, ଭୁବନେଶ୍ୱର

# ଅଜରମ୍ବରୁ ଲେଖା ଝରିବନି....

ବିଘ୍ନେଶ୍ୱର ସାହୁ

ଦର୍ଶନ ନୂଆ ନୂଆ ଆରମ୍ଭ ହୋଇଛି । ଅଫିସ୍‌କୁ ଆସି ଖବର କାଗଜର ବିଭିନ୍ନ ଦିଗ ସମ୍ପର୍କରେ ପଚାରି ବସିଲେ । ସାହିତ୍ୟ ପୃଷ୍ଠା 'ସାହିତ୍ୟ ଦର୍ଶନ' ଦେଖି ଖୁସି ହେଲେ । କହିଲେ ସଂସ୍କୃତି ପୃଷ୍ଠା ମଧ୍ୟ ଗୋଟିଏ ରହୁ । ମୁଁ ଗ୍ରହଣ କଲି ସାରଙ୍କ ଉପଦେଶକୁ । କଥାପ୍ରକାରେ ସେ ମଧ୍ୟ ପ୍ରତି ପନ୍ଦର ଦିନରେ ତାଙ୍କର ଗୋଟିଏ ସ୍ତମ୍ଭ ପାଇଁ ଲେଖା ଦେବା ଆରମ୍ଭ କଲେ । ସ୍ତମ୍ଭର ଶୀର୍ଷକ ରହିଲା 'ଅଜରମ୍ବରୁ ଲେଖୁଛି' । ସାହିତ୍ୟ ଓ ସଂସ୍କୃତି ସହ ପ୍ରଖ୍ୟାତ ଗାଳ୍ପିକା ତଥା ସର୍ବେଶ୍ୱର ଦାସଙ୍କ ସହଧର୍ମିଣୀ ବସନ୍ତ କୁମାରୀ ଦେବୀଙ୍କ ସ୍ମୃତିରେ ଲେଖିଲେ 'ଶତାବ୍ଦୀର ପ୍ରତିଧ୍ୱନି - ବସନ୍ତ କୁମାରୀ ଦେବୀ', ଧରିତ୍ରୀର ପ୍ରଥମ ସଂପାଦକ ତଥା ପଚାଶ ଦଶକରେ ଦକ୍ଷିଣ ଓଡ଼ିଶାରେ ଆରମ୍ଭ ହୋଇଥିବା ସାହିତ୍ୟ ସମାଚାରର ସଂପାଦକ ରାମନାଥ ପଣ୍ଡାଙ୍କ ବିୟୋଗରେ ସାହିତ୍ୟ ସମାଚାରରେ ସଂପାଦକଙ୍କ ଶେଷ ସମାଚାର, କଥାକାର କିଶୋରୀ ଚରଣ ଦାସ, ଗୁରୁ ମହାନ୍ତି, ସଚ୍ଚି ରାଉତରାୟ ଏବଂ ଅନେକ ସାହିତ୍ୟରଥୀଙ୍କ ସଂପର୍କରେ ସେ ଲେଖା ଦେଇ ଦର୍ଶନର ସଂପାଦକୀୟ ପୃଷ୍ଠାକୁ ଋଦ୍ଧିମନ୍ତ କରିଥିଲେ । ମୁଁ ଯେତେବାର ଘରକୁ ଯାଇଥାଏ ଲେଖା ଆଣିବାପାଇଁ କିମ୍ବା କୌଣସି ବିଷୟ ସଂପର୍କରେ ଆଲୋଚନା ପାଇଁ ପ୍ରଥମେ ମ୍ୟାଡାମଙ୍କୁ କହିବେ- ହେ ! ଶୁଣୁଚ, ବ୍ରାହ୍ମଣ ଆସିଛି । କ'ଣ ଖାଇବାକୁ ଦିଅ । ଅନେକ ବାର ଚା' ପିଇବା ପୂର୍ବରୁ ମୁଢ଼ି, ମୁଡ଼ୁକି, ଲେମ୍ବୁପଣା ଦେଇ ବସାଇବେ । ଘର କଥା ପଚାରିବେ । ଘରକୁ ଯେ ଆସିଥିବେ ସାଙ୍ଗରେ ଯିଏ ବି ଥିବେ ସମସ୍ତଙ୍କ ସହ ପରିଚୟ କରାଇବେ । ଏ ଗୁଣଟି ସାର୍‌ଙ୍କର ଥିଲା ଅପୂର୍ବ ।

ସମସ୍ତଙ୍କୁ ଭଲ ମଣିଷଟିଏ ହେବାକୁ ପରାମର୍ଶ ଦେଉଥାଆନ୍ତି ସେ । ଦର୍ଶନ କାର୍ଯ୍ୟାଳୟ ବହୁବାର ଆସନ୍ତି । ମୋତେ ବାରମ୍ବାର କହିଛନ୍ତି ଦର୍ଶନର ଅଫିସ୍ ଯେଉଁ ଜାଗାରେ ଅଛି, ବଢ଼ିଆ ଜାଗାରେ । ଏମିତି ପରିବେଶ ରହିବା ଦରକାର । ସବୁବେଳେ ଯେକୌଣସି ଗାଁର ଇତିହାସକୁ ସେ ପ୍ରଥମେ କହନ୍ତି । ଦର୍ଶନର ବାର୍ଷିକ ଉତ୍ସବ ହେଲେ ସ୍ୱତନ୍ତ୍ର ସ୍ମରଣିକାଟିଏ ପ୍ରକାଶ କରିବା ଏବଂ ପ୍ରଥମ ସଂଖ୍ୟାରେ ହିଁ ଭୁବନେଶ୍ୱରର ଇତିହାସକୁ ସ୍ଥାନିତ କରିବାକୁ ସେ ଯୋଜନା କରିଥିଲେ ମଧ୍ୟ । ଦୁର୍ଭାଗ୍ୟ ଆମର ଯେ ସାର୍ ନିଜ ଆଡୁ ଯେଉଁ ଦାୟିତ୍ୱ ନେବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଆମେ ସେଥିରୁ ବଞ୍ଚିତ ହେଲୁ । ମୁଁ ହରାଇଲି ମୋର ଜଣେ ଅତି ପ୍ରିୟ ଗୁରୁଜନଙ୍କୁ । କାର୍ଯ୍ୟାଳୟର ସମସ୍ତ ସହ ସଂପାଦକ ଓ ଅନ୍ୟ ଷ୍ଟାଫ୍ ଶିବରାମ ପାତ୍ର ସାର୍‌ଙ୍କ ବିୟୋଗରେ ମ୍ରିୟମାଣ ।

ସାର୍‌ଙ୍କ ସହ ଆହୁରି ଅନେକ ସ୍ମୃତି ବିଜଡ଼ିତ ଘଟଣାବଳୀ ରହିଛି । ସବୁଦିନ ଏମିତି ଛାଇପରି ବୋଧ ହେଉ ସାର୍‌ଙ୍କ ଉପସ୍ଥିତି ।

ଦର୍ଶନ, ପୁରୁଣା ଭୁବନେଶ୍ୱର

# ଶିବରାମ ପାତ୍ର ସାର୍‌ଙ୍କ ସଂପର୍କରେ ପଦେ....

ପ୍ରଦୀପ ଚୌଧୁରୀ

ସାଧାରଣତଃ ବ୍ୟକ୍ତିର ପରିଚୟ ନିଜର ବୃତ୍ତିଗତ କର୍ମରୁ ମିଳିଥାଏ ଏବଂ ଗୋଟିଏ ନିର୍ଦ୍ଦିଷ୍ଟ ପରିଧି ମଧ୍ୟରେ ହିଁ ସୀମିତ ରହିଥାଏ । କିନ୍ତୁ ଜଣେ ଅସାଧାରଣ ବ୍ୟକ୍ତିର କୌଣସି ନିର୍ଦ୍ଦିଷ୍ଟ କର୍ମ ମଧ୍ୟରେ ସୀମବେଦ୍ଧ ନ ହୋଇ ନିଜର ଅନ୍ତର୍ନିହିତ ବ୍ୟକ୍ତିତ୍ୱ ଗୁଣସତ୍ତା ବହୁମୁଖୀ ପ୍ରତିଭାରେ ରୂପାନ୍ତରିତ ହୋଇ ଭିନ୍ନ ଭିନ୍ନ କ୍ଷେତ୍ରରେ ଭିନ୍ନ ଭିନ୍ନ ପରିଚୟ ପ୍ରଦାନ କରେ । ସେହିପରି ଏକ ବିରଳ ବ୍ୟକ୍ତିତ୍ୱର ପରିଚୟ ଥିଲେ ମୋର ପ୍ରିୟ ଶିକ୍ଷକ ଶିବରାମ ପାତ୍ର ସାର୍ । ସେ ଜଣେ ଆଦର୍ଶ ଶିକ୍ଷକ ହିସାବରେ ଯେତିକି ପରିଚିତ ତାଠାରୁ ଶତଗୁଣ ଭାବରେ ସେ ପରିଚି ଜଣେ ସାହିତ୍ୟ ସାଧକ, ସଂଗଠନ, ଓଡ଼ିଆ ଭାଷା ସମୃଦ୍ଧିର ଶୁଭଚିନ୍ତକ ରୂପେ । ସେ ଆନ୍ଧ୍ରପ୍ରଦେଶ ସଂଲଗ୍ନ ଗୁଣପୁର ସହରର ମହାବିଦ୍ୟାଳୟରେ ପ୍ରଥମ ଓଡ଼ିଆ ଅଧ୍ୟାପକ । ସେ ସମୟରେ ଏହି ଅଞ୍ଚଳ ତେଲୁଗୁ ଭାଷା ଦ୍ୱାରା ଖୁବ୍ ପ୍ରଭାବିତ ଥିଲା । ଏହି ସମୟରେ ନିଜକୁ କେବଳ ଅଧ୍ୟାପନା କର୍ମ ମଧ୍ୟରେ ସୀମାବଦ୍ଧ ନରଖି ଓଡ଼ିଆ ଭାଷାକୁ ବଞ୍ଚାଇବା ନିମନ୍ତେ ନିଜର ଆପ୍ରାଣ ଉଦ୍ୟମ ଜାରି ରଖି ଗୁଣପୁର ଅଞ୍ଚଳର ସମସ୍ତ ଓଡ଼ିଆ ସାହିତ୍ୟିକମାନଙ୍କୁ ସଂଗଠିତ କରି ବଂଶଧାରା ସାହିତ୍ୟ ସମାଜ ଗଠନର ଅଗ୍ରଗଣ୍ୟ ଭୂମିକା ଗ୍ରହଣ କରିଥିଲେ । ସେ ସମୟରେ ମୁଁ ଗୁଣୁପର ହାଇସ୍କୁଲ୍‌ର  ଛାତ୍ର ଥିଲେ ମଧ୍ୟ ବିଭିନ୍ନ ସାହିତ୍ୟ ସଭା ସମିତିରେ ସାର୍‌ଙ୍କ ବ୍ୟକ୍ତିତ୍ୱର ପରିଚୟ ପାଇଥିଲି । ଗୁଣପୁର ମହାବିଦ୍ୟାଳୟରେ ପ୍ରବେଶ କଲି । ପରେ ମୁଁ ସାର୍‌ଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଲି । ଜଣେ ଏକନିଷ୍ଠ ଆଦର୍ଶ ଶିକ୍ଷକ ଭାବରେ ସେ ଯେତିକି ପରିଚିତ ସେହିପରି ଭାବେ ମହାବିଦ୍ୟାଳୟର ପରିପାର୍ଶ୍ୱକୁ କିପରି ସବୁଜ ସୁନ୍ଦର କରି ଗଢ଼ି ତୋଳିବେ ସେଥିପ୍ରତି ସେ ସେତିକି ଯତ୍ନବାନ୍ ଥିଲେ । ଗୁଣପୁର ମହାବିଦ୍ୟାଳୟକୁ ସବୁଜ ବନାନି ବୃକ୍ଷରାଜିରେ ମଣ୍ଡିତ କରିବାକୁ ବିଦ୍ୟାଳୟ ମଧ୍ୟରେ ବୃକ୍ଷରୋପଣ ଏବଂ ବୃକ୍ଷର ଯତ୍ନ ନେବାର ସାର୍‌ଙ୍କ ଯେଉଁ ଆଗ୍ରହ ଥିଲା ତାହା ତାଙ୍କର ଭଲପାଇବା ବଡ଼ପଣର ଏକ ସ୍ୱତନ୍ତତାର ପରିଚୟ । ଏହି ଅଞ୍ଚଳରେ ବିଭିନ୍ନ ସାହିତ୍ୟ ସଭା, ଆସର, ପାଠଚକ୍ର ଆୟୋଜନର ମୁଖ୍ୟ ଭୂମିକା ଗ୍ରହଣ କରି ଓଡ଼ିଆ ସାହିତ୍ୟିକ ତଥା ଛାତ୍ରଛାତ୍ରୀମାନଙ୍କୁ ଆଗକୁ ବଢ଼ିବା ପାଇଁ ପ୍ରେରଣା ଦେଇଯାଇଛନ୍ତି ତାହା ଆଜିବି ଆମମାନଙ୍କ ମନରେ ଉଜ୍ଜିବୀତ ଅଛି । ମୁଁ ଉଚ୍ଚଶିକ୍ଷା ନିମନ୍ତେ ଗୁଣପୁର ଛାଡ଼ିଲି । ସାର୍ ଏହି ମଧ୍ୟରେ ସାର୍ ମଧ୍ୟ ଗୁଣପୁର ଛାଡ଼ି ଭିନ୍ନ ଭିନ୍ନ ସହରକୁ ଗଲେ । ବହୁବର୍ଷ ଧରି ସାର୍‌ଙ୍କ ସହ  ଆଉ ଦେଖା ସାକ୍ଷାତ ହୋଇପାରି ନଥିଲା । ଦିନେ ହଠାତ୍ ମୁଁ ଏକ ପୋଷ୍ଟକାର୍ଡ଼ ଚିଠି ସାର୍‌ଙ୍କଠାରୁ ପାଇଲି । ଚିଠିଟି ଏହିପରି ଥିଲା-

'ପ୍ରିୟ ପ୍ରଦୀପ,

ମୋର ଶୁଭେଚ୍ଛା ନେବ । ହଁ, ତାହାହେଲେ ତୁମେ ଏଠାରେ ଅଛ । ମୁଁ ତୁମ ଲେଖା 'ଅନୁପମ ଭାରତ'ରୁ ପାଠ କଲି । ଖୁବ୍ ଭଲ ହୋଇଛି । ତୁମ ଠିକଣା ସେଥିରୁ

ପାଇଲି । ତୁମେ ଏମିତି ନିରବଚ୍ଛିନ୍ନ ଭାବେ ଲେଖି ଚାଲ । ତୁମ ସାଧନା ସଫଳ ହେଉ ଏହା ମୋର କାମନା ଓ ଆଶୀର୍ବାଦ । ମୁଁ ଗୌରୀନଗରରେ ରହୁଛି । ତୁମେ ମୋତେ ସାକ୍ଷାତ କରିବ ।'

ଏହି ଚିଠିଟି ମୋତେ ଲେଖନୀ ଧରିବାପାଇଁ ଖୁବ୍ ଅନୁପ୍ରାଣିତ କରିଥିଲା । ମୁଁ ଅନୁଭବ କଲି ବର୍ତ୍ତମାନ ସମୟରେ ସାର୍‌ଙ୍କ ଭଳି ଜଣେ ଆଦର୍ଶ ବ୍ୟକ୍ତିତ୍ୱ ବିରଳ । ଯିଏ କି ଆମେ ଛାତ୍ର ଥିଲାବେଳେ ସାହିତ୍ୟ ସାଧନା ପାଇଁ ସବୁବେଳେ ଉତ୍ସାହିତ କରୁଥିଲେ ଏବଂ ଛାତ୍ର ଜୀବନର ପରବର୍ତ୍ତୀ ସମୟରେ ମଧ୍ୟ ଠିକ୍ ସେହିଭଳି ପ୍ରେରଣା ଓ ଉତ୍ସାହ ଦେଇ ଆମକୁ ଆଗକୁ ବଢ଼ିବାପାଇଁ ଦିଗ୍‌ଦର୍ଶନ ଦେଉଥିଲେ । ଏଥି ମଧ୍ୟରେ ମୋର ତିନୋଟି ଜ୍ୟୋତିଷ ସଂକଳନ ପ୍ରକାଶିତ ହୋଇଥିଲା । ମୋର ଜ୍ୟୋତିଷ ସଂବଧୀୟ ତୃତୀୟ ସଂକଳନ 'ଶନି ମହାଗ୍ରହ ପ୍ରଭାବ ଓ ପ୍ରତିକାର'ର ଉନ୍ମୋଚନ ଉତ୍ସବରେ ଯୋଗଦେଇ ସାର୍ ମୋତେ ଖୁବ୍ ଉତ୍ସାହିତ କରିଥିଲେ । ମୋତେ ସାହିତ୍ୟ ସଭା ଓ ପାଠଚକ୍ରରେ ଯୋଗ ଦେବାପାଇଁ ମଧ୍ୟ ଆମନ୍ତ୍ରଣ କରିଥିଲେ । ସେହି ପ୍ରେରଣା ଓ ଉତ୍ସାହ ଯାହାକି ସାର୍ ମୋତେ ଯୋଗାଇଥିଲେ ତାହା ଚିର ସ୍ମରଣୀୟ ।

କ୍ୱାଟର ନଂ. ଭି.ଏ.୩୪/୪, ୟୁନିଟ୍-୨
ଭୁବନେଶ୍ୱର

## REMEMBERING SIBRAM PATRA

Deba Prasad Patnaik

Unkempt white hair on a balding head, whitish bushy moustache, unshaven stubbled face, he stops, gets down from his antique bicycle in front of the gate.

"Namaskar," a radiant smile flashes across his dark oval face. "I'm Priyambada's father. We are so fortunate and delighted that you're back for good."

I was surprised; apologised for not introducing myself earlier, though I have watched him curiously many times cycling back and forth with a khadi bag hung from his shoulder.

"No, please, no need for you to apologize. I feel I know you already, I've heard so much from so many people. After all, you are a worthy son of a great great father."

I was visibly touched. This is so typical of Sibram as I quickly discovered. It was instant bonding. Most distressingly though, time's treachery played a trick in a few months time, and mine has been the loss of a long lasting friendship.

Sibaram would stop by pretty regularly late in the evenings, when we sat outside and conversed for hours about people, places, literature, Oriya language and culture and the not so uplifting state of affairs in Orissa -- cultural, literary, socio-political. No back-biting, no petty chat, nor gossip. The more time we spent together, the more convinced I became how unusual a person Sibaram was. A man of scholarship and erudition, his was a keen, insightful mind. He was also a writer of note. Yet, he rarely talked about himself; self-effacing, he urged me to write about my experiences and about my father, Lal Mohan Patnaik, about whom he knew much and was genuinely proud and revering. Sibaram was a humble, modest, and compassionate soul; strong in his convictions and values -- not one to be pushed around or flattered to moral compromises.

On the other hand, he was a bridge-maker, a connector between and among individuals. No wonder, he is so highly esteemed as an organizer, initiator, and mobiliser with regard to various humane and meaningful causes, projects, and institutions. He was a dreamer, who was also a tireless doer.

He was a passionate man of deep and quiet feelings. On very appropriate occasions, he talked about his family he so proudly and fondly cherished -- his gentle, accomplished wife, his gifted children,and his talented, artist son-in-law, Ramakanta. And most of all, his little grandson Gugulu (Ramyak) -- parented by Priyambada

and Ramakanta. Essentially, he was a private man with a generous heart for others.

What equally impressed and amazed me was his profound commitment to all things Orissa and Oriya -- language, literature, history, art, landscape, and for Ganjam especially. His concern, dedication and goodwill included western Orissa, tribal life, living, culture, and language as well. As in the case of my father, so too for Sibaram, Ganjam occupied a unique place. I still can sense the quiver and depth in his voice.

I celebrate Sibaram Patra for the goodness and richness in his life all of us share.

D-38, Gouri Garden
Bhubaneswar

## Letter to Nana

Biswaksen Patra

Hope you are doing well. I am doing great as usual. It has now been almost 5 months since you told me you were going to watch the movie 'Black'. I was pretty sure you would go and watch the movie. I called you on 24th Feb, immediately after I had watched it with my friends. That was the last time we talked.

We had a habit of sharing good things with each other. I miss you so much. Let me share what I have been doing these days. Last week, I got promoted as software consultant at Office. It is a team lead role; but duties and responsibilities haven't yet assigned. I may get a salary revision in January. I have already started saving money as per advice. For last four years you had been after me to save money, to open an RD a/c. I remember you asking me to save at least Rs1000 a month; because you know how I am. You remember I even didn't have money to buy

my second hand Bajaj Chetak scooter. You gave me the whole amount to buy the scooter. I always wanted to give you a car, with a full-time driver so you could go where ever and when ever you needed. I knew you wanted to have a car so that you could travel to more places for your research, social, literary and institutional activities. How we talked about where we would park our car, whether to construct a portico on the garden side or at the house front.

These days I am reading The Master Key to riches by Napoleon Hill. This book is a masterpiece. It should be a compulsory reading for all of us. I am reading this book for the second time. I had read it 2 years back, and this book seems altogether a different exposition now. I think I have grown a lot as a person except my usual laziness. I have to get over it fast.

Last Sunday I watched 'Sarkar' with my roommates. Amitabh Bachhan and his son were at their best. I wish we had watched it together. Remember, you, Amma and I went to watch the movie 'Trishul' at Ravi Talkies. I was so happy that night.These days Amitabh is doing a variety of roles. You will love to watch him.

Reflecting back on my childhood, I have come across some touching incidents. These incidents have impacted me immensely. Remember, how we used to play cards (clearance). Remember the day, when you,Ruru and I were playing cards. I won the first two games and I made fun of both of you. I even put my hand on your beard, teasing you. You just smiled and enjoyed the moment. The next game I lost and Ruru won. This time he made fun of me; I got angry and slapped him. You suddenly threw me out of the bed; that whole day I didn't speak with you. Now I realize why you did that to me. If you don't have guts to face people making fun at you,

then don't make fun at somebody - that was your message.

One day you caught Ruru playing games/ betting money with the guys from the neighbouring lane. You punished Ruru and asked him to do 50 rounds of sit ups in front of the whole gang. I know who was the informer, the overseer uncle, who used to watch Ruru play with the "bauri sahi" guys from his balcony. But the overseer uncle didn't watch me playing. So I escaped from the punishment. I was the main culprit. From that day onwards Ruru stopped playing with those guys, but I continued for two more years. I was very fond of playing with money, betting. I used to take 50 paisa/ one rupee from Amma's purse, and play with those guys. I am sorry that I never told you about this.

One day, I was playing badminton in our garden with a friend, and our shuttle cork got worn out, so I immediately plucked one big beautiful *makhmali* flower. You were watching us play. You suddenly appeared, and slapped me, asked me to never play with flowers. That day, I learnt how caring you were of plants,trees and of nature. Since that time I too have become caring of nature's creation.

Once you came home losing your voice. You were not able to speak. That day a bear had come from the nearby jungle to Nabarangpur College. It attacked one passerby and injured the person severely. Nobody dared to help the victim. You were very sure this beast would attack other people, if nothing was done. You alone chased the bear shouting at it to the maximum decibel .It got frightened and ran back into the jungle. And you were very disappointed that nobody assisted you. You could not speak for several days. You were brave. I felt so proud of you. Thanks for being my father.

After my class 10 Board exams, I went to Gunupur with Balaji Abba. I visited our family friends and my teachers: Gopal Rao Sir, Mantu bhaina,Dhibar sir and all of them you knew. Everybody was so loving toward me and asked about you. How much they loved you I realised because you loved people unconditionally. I decided I would be like you one day. Towards the end of my stay in Gunupur, I visited Kanya Ashram. All of the old residents of the ashram were very happy to see me. They asked about you, Amma, Sovana, Chitra and Ruru. I felt, we were an integral part of the Ashram when we were in Gunupur. To my surprise one girl came and gave me something to eat and fresh cow's milk and took me to her room. I don't remember her name, Amma might know her name. She was Amma's student too. She told me how you rescued her from Bansadhara Flood in 1980. Water level was at around 18/19 feet. She was on the terrace, completely alone and frightened.To her surprise, you appeared there like an angel from nowhere and brought her to our home swimming one kilometer. She told me she would never forget you tears running down. I felt so proud of you that day for your humanity and courage.

I clearly remember the days of our summer vacations at Savitri Kutir in Bhubaneswar. Every year we used to enjoy our vacations there. We used to visit Prafulla Tripathys' every year. Their house was just opposite to the BJB College General Hostel. Every time, we used to visit them, you and Amma were telling all four of us, if you study well and score more than 80% in the HSC exam, you would study in this college. BJB College was (is) the best college in Orissa for +2.It was a tough competition to get into the college. I used to score 70-75% through out till std. 9. I scored 86% in 10th std final board examination, applied for BJB college and got

admission .In my +2 2nd year, I stayed in the same general hostel. And the best part was I was allocated a room which was directly opposite to Prafulla Mousa's house. Ruru too got a seat in BJB College. The way you and Amma inspired us and nurtured our dreams from the beginning.

I arrived in BJB College;it was completely a new experience for me. For the first time I was out of home and on my own. I missed you and Amma a lot. When I reached there, I was surprised the way people were studying. Some of my hostel mates were studying 12 hours a day. I was awe struck. My weekly study hours were equal to their daily study hours. I used to sleep 11/12 hours a day, coincidentally, whenever Rudra Mamu had come to visit me, I was sleeping. What he would have thought of me that time! I used to play cricket every evening, never missed a day of play. One fine day, I got your letter. I liked the letter, it was one of the best gifts that you had ever given me. I still have that letter. I read it for 8-10 times that day. Finally, I pasted that letter on the wall opposite to my study table. When ever I felt low, I used to go through your letter. It gave me strength. After the first letter from you, I think I have received 3-4 letters, one in a year on an average. But they are very dear and precious to me.They gave me strength.

I feel communication in letters is one of the best ways to express feelings. Sometimes it becomes very difficult to express face to face. You had mastered the skill of expressing yourself. When ever I used to call you over the phone after coming to Bangalore, you used to ask me to write letters to you, which I did once or twice. Now I feel guilty that I didn't write more often. That's why I decided to write this letter to you narrating my life all these year.

I finished +2 Science in BJB College. This period was the most important period of my life, which I squandered. I was not focused at all. I never thought what I will do after +2. No career plan. Sometimes I wanted to join defense, sometimes I wanted to study English literature, and sometime I wanted to go for MBA. Engineering was never there in my list. You never interfered. You never told me what to choose. I had complete independence. You never interfered in my decisions. I remember, when I said I would like to take English honors for my graduation studies, you were very happy. But God had a different plan for me. I appeared in the joint entrance exam, didn't perform well. Finally, I decided to study commerce. At that time you told me I could still pursue my interest in English literature and asked me to read good books.I on your suggestion read Tolstoy, R.K. Narayan.

I was in third year of my engineering. It was during my semester examination. I had severe tooth ache problem. That night I came home from hostel. You were alone at home, Amma was in Bologada. The whole night I couldn't sleep. You massaged my body with oil and gave me clove oil to put in my tooth time to time. You also didn't sleep the whole night. Thank you for taking care of me that night.

I remember vividly the days of our house construction at Gouri Nagar.You were restless, pondering about the construction all the time. You designed the whole house. I saw, how you were asking everybody for advice, gathering experiences from people, but sticking to your own choices, gut feelings. Those days , wherever you saw houses being constructed, you stopped and entered the house, chatted with the owner or the contractor who ever was available, gathering information. You were so much

involved in our house construction, which sometimes amazed me.

Last year, you had come to Bangalore to visit Balaji Abba after his operation. We spent some quality time together. We went for shopping to buy clothes for you. The shirts and trousers we selected were very expensive. But I wanted to buy for you. It took me almost an hour to convince you to accept my humble gift because you never bought anything expensive for yourself,when we went to buy Mysore Silk Saree for Amma, the story was different. I want you to know, you have instilled some of these qualities in me.

That night Balaji Abba called me, urged me to immediately come to Bhubaneswar. He told me you got admitted in a local hospital for high BP. I wondered, why it was so urgent. I called up Ramakanta Bhaina immediately. He too was not responding well on the phone. I got very angry and called home. Aawa answered the phone and she also couldn't give any clear picture.

I was actually panicking, guessing something really serious had happened. I underwent terrible moments of uncertainty till Biru Mamu called from Hyderabad and gave me the shocking news.I couldn't even cry. Through out my flight from Bangalore to Bhubaneswar I was not certain of things happening at home.I found Mahendra Mousa at the airport lounge, where we sat together for quite sometime as the flight to bhubaneswar was delayed. We could hardly converse, avoiding talking about what if anything was wrong with you.

I wish I was there with you when you left us.

Miss you,
Lulu
7th Aug 2005



ମା'ଓ ଭାଇମାନଙ୍କ ସହ



ଗୁଣୁପୁରରେ ଛାତ୍ରଛାତ୍ରୀଙ୍କ ସହ ବଣଭୋଜି



ଗୁଣୁପୁର ମହାବିଦ୍ୟାଳୟରେ ବନ୍ଧୁ ପ୍ରଫୁଲ୍ଲ ତ୍ରିପାଠୀ



ବଂଶଧର ସାହିତ୍ୟ ସମାଜ, ଗୁଣୁପୁର



ନବରଙ୍ଗପୁର ପ୍ରଜ୍ଞାମିଳନରେ ଜୈନ ସାଧୁ ଗୁଲାବ୍‌ଚନ୍ଦ୍ ନିର୍ମୋହିଙ୍କ ସହ



ସର୍ବେଶ୍ୱର ଦାସଙ୍କ ସାଙ୍ଗରେ



କଟୁରୁରେ ଏକ ବିଶେଷ ମୁହୂର୍ତ୍ତ



ନାତି ଗୁଲୁଙ୍କ ସାଙ୍ଗରେ

ଓଡ଼ିଶାର ଦୈନିକ ନିରପେକ୍ଷ ସମ୍ବାଦପତ୍ର

# କଳିଙ୍ଗ ଭାରତୀ

# ଶାସନ ଖବର

ସାହିତ୍ୟ ଓ ସଂସ୍କୃତି ପତ୍ରିକା

# ପଲ୍ଲିବାଳା

ଏକସଙ୍ଗେ ଭୁବନେଶ୍ୱର ଓ ରାୟଗଡ଼ାରୁ ପ୍ରକାଶିତ

ଓଡ଼ିଶାର ଦୈନିକ ନିରପେକ୍ଷ ସମ୍ବାଦପତ୍ର

# ଧ୍ୱନି ପ୍ରତିଧ୍ୱନି

ସାହିତ୍ୟ ଓ ସଂସ୍କୃତି ପତ୍ରିକା

# ସାଗରିକା

ମୁଖ୍ୟ ସଂପାଦକ
ସୃଷ୍ଟିଧର ପରିଡା

ସଂପାଦିକା
ସୌରିନ୍ଦ୍ରୀ ସାହୁ

